ଶିକ୍ଷା ସନ୍ଦେଶ........୪

# ଶିକ୍ଷକ

## ସିଲ୍‌ଭିଆ ଏଷ୍ଟନ୍-ୱାର୍ଣ୍ଣର

---

ଜଣେ ସମର୍ପିତା ଶିକ୍ଷିକାଙ୍କର ଜୀବନ୍ତ ଆବିଷ୍କାର

ମାନବିକ

# ଶିକ୍ଷକ



ପ୍ରକାଶକ :


## ମାନବିକ

ତୋଟାସାହି, ମାଷ୍ଟରପଡ଼ା, ଫୁଲବାଣୀ-୭୬୨ ୦୦୧,

ଫୋନ୍-(୦୬୮୪୨) ୫୩୨୬୬

ଶିକ୍ଷା ସନ୍ଦେଶ......୪

# ଶିକ୍ଷକ (ଟିଚର)

ଲେଖିକା : ସିଲ୍‌ଭିଆ ଏଷ୍ଟନ୍-ୱାର୍ଣର୍ (ନିଉଜିଲାଣ୍ଡ)

ଓଡ଼ିଆ ରୂପାନ୍ତର : ବିପ୍ରଚରଣ ପଟ୍ଟନାୟକ,
ବିନୟକୃଷ୍ଣ ପଟ୍ଟନାୟକ

ପ୍ରକାଶକ : ମାନବିକ
ତୋଟା ସାହି, ମାଷ୍ଟର ପଡ଼ା
ଫୁଲବାଣୀ-୭୬୨୦୦୧
ଫୋନ୍- (୦୬୮୪୨) ୫୩୨୬୬



ଅଙ୍ଗସଜ୍ଜା କୋଣାର୍କ ଡାଟା ପ୍ରୋସେସିଂ

ମୁଦ୍ରଣ- : ପଦ୍ମା କମର୍ସିଆଲ, ଭୁବନେଶ୍ୱର

ପ୍ରକାଶ କାଳ : ଜୁଲାଇ ପହିଲା, ୧୯୯୯

ମୂଲ୍ୟ- ୭୫.୦୦ ଟଙ୍କା (ପଞ୍ଚସ୍ତରୀ ମାତ୍ର)

**TEACHER**

*Author*
Sylvia Ashton-Warner
*Oriya Translation*
Bipra Charan Pattanayak
Binaya Krushna Pattanayak
*Publisher* **Manavik**
***Price- Rs.75.00***

# ଟିଚର୍ (ଶିକ୍ଷକ)

## ସିଲ୍‌ଭିଆ ଏଷ୍ଟନ୍-ଓ୍ୱାର୍ଣର୍

*ସିଲ୍‌ଭିଆ ଏଷ୍ଟନ୍-ଓ୍ୱାର୍ଣର୍ ୧୯୦୮ ମସିହାରେ ନିଉଜିଲାଣ୍ଡରେ ଜନ୍ମ ହୋଇଥିଲେ । ସେ ଥିଲେ ଦଶଜଣ ଭାଇଭଉଣୀଙ୍କ ଭିତରୁ ଜଣେ । ବାପା ଅକର୍ମଣ୍ୟ । କିନ୍ତୁ ମାଆ ଥିଲେ ଅଦମନୀୟ କର୍ମ-ପ୍ରେରଣାର ଉତ୍ସ । ତାଙ୍କୁ ଏଗାରବର୍ଷ ଯାଏଁ ମାଆ ତାଙ୍କୁ ଘରେ ପଢ଼େଇଥିଲେ । ତା'ପରେ ସେ ସ୍କୁଲ ଆଉ କଲେଜରେ ପଢ଼ିଲେ । ଅକ୍‌ଲାଣ୍ଡ ଟିଚର୍ସ୍ କଲେଜରେ ପଢ଼ି ସେ ଜଣେ ଗ୍ରାଜୁଏଟ୍ ଶିକ୍ଷକ ହେଲେ । ଏହାପରେ ସେ କି'ଥ୍ ହେଣ୍ଡରସନ୍ ନାମକ ଆଉ ଜଣେ ଶିକ୍ଷକଙ୍କୁ ବିବାହ କରିଥିଲେ । ସ୍ୱାମୀ ଓ ତିନୋଟି ସନ୍ତାନଙ୍କୁ ନେଇ ସେ ଅନେକ ବର୍ଷ ଧରି ଦୂର ଦୂରାନ୍ତର ମାଓରି ବିଦ୍ୟାଳୟରେ ଶିଶୁ ଶ୍ରେଣୀର ଶିକ୍ଷୟିତ୍ରୀ ରୂପେ କାମ କରିଥିଲେ । ସେହି ସମୟରେ ସେ ତାଙ୍କର ବୈପ୍ଲବିକ ରଚନାତ୍ମକ ଶିକ୍ଷାପଦ୍ଧତିର ରୂପ-ରେଖ ସ୍ଥିର କରିଥିଲେ ଏବଂ ତାଙ୍କର ଏଇ ବିଖ୍ୟାତ ପୁସ୍ତକ 'ଟିଚର୍'ରେ ଉପସ୍ଥାପିତ କରିଥିଲେ । ୧୯୬୩ରେ ଏହା ପ୍ରଥମେ ପ୍ରକାଶିତ ହେଲା । ଏଇ ଚିନ୍ତାଧାରା ପାଇଁ ସେ ଚଳିତ ଶତାବ୍ଦୀର ଜଣେ ବିଖ୍ୟାତ ଓ ପ୍ରଭାବଶାଳୀ ଶିକ୍ଷାବିତ୍ ରୂପେ ପରିଗଣିତ ହୁଅନ୍ତି ।*

*ତାଙ୍କର ପ୍ରଥମ ଉପନ୍ୟାସ 'ସ୍ପିନ୍‌ଷ୍ଟର୍' ମଧ 'ଭିରାଗୋ' ପ୍ରକାଶନ ଦ୍ୱାରା ପ୍ରକାଶିତ ହୋଇଥିଲା । ଆନ୍ତର୍ଜାତିକ ସ୍ତରରେ ଏହା ଉଚ୍ଚ ପ୍ରଶଂସିତ । ତାଙ୍କର ଦୀର୍ଘ ସମୟର ଶିକ୍ଷୟିତ୍ରୀ କାର୍ଯ୍ୟକାଳର ଆକର୍ଷଣୀୟ ଘଟଣାଗୁଡ଼ିକୁ ରୋମାଞ୍ଚକର ଭାବରେ ଏଥିରେ ବର୍ଣନା କରାଯାଇଛି । 'ଆନ୍ନା' ନାମରେ ସାର୍ଲେ ମାକ୍‌ଲେଁଙ୍କ ସହିତ ଏହି ଉପନ୍ୟାସଟି ଚଳଚ୍ଚିତ୍ରର ରୂପ ବି ପାଇଛି । ତାଙ୍କର ଅନ୍ୟାନ୍ୟ ଉପନ୍ୟାସ ହେଉଛି : Incense to Idols (୧୯୬୦), Bell Call(୧୯୬୪), Greenstone (୧୯୬୬), Three (୧୯୭୦) ।*

*ତାଙ୍କର ଆଉ ଏକ ଶିକ୍ଷା-ନୀତି ସମ୍ପର୍କୀୟ ଲେଖା 'Spear point' (୧୯୭୨ରେ), ତାଙ୍କ ଜୀବନର ୧୯୪୧ରୁ ୧୯୪୫ର 'ବିନ-ଲିପି', 'ମୁଁ'(୧୯୬୭ରେ) ଏବଂ ତାଙ୍କର ଆତ୍ମଜୀବନୀ , 'I Passed This way' (୧୯୭୯ରେ) ଭିରାଗୋ(ପ୍ରକାଶନ)ଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା । ୧୯୬୯ରେ ସ୍ୱାମୀଙ୍କ ମୃତ୍ୟୁ ପରେ ସେ ପ୍ରାୟ ଦଶ ବର୍ଷ ଦେଶ ବାହାରେ ଥିଲେ । ସେ ସମୟରେ ସିଲ୍‌ଭିଆ ଏଷ୍ଟନ୍ ଓ୍ୱାର୍ଣର୍ ଭାରତ, ଇସ୍ରାଏଲ, ଇଂଲଣ୍ଡ, ଯୁକ୍ତରାଷ୍ଟ୍ର ଆମେରିକା ଓ କାନାଡ଼ାରେ ରହି ଶିକ୍ଷା ଦାନରେ ବ୍ରତୀ ଥିଲେ । ପରିଶେଷରେ ୧୯୭୯ରେ ସେ ତାଙ୍କର ନିଜର ପ୍ରିୟ ନିଉଜିଲାଣ୍ଡକୁ ଫେରି ଆସିଥିଲେ ।*

# ସୂଚୀ ପତ୍ର

# ଏ ବହିଟି କାହିଁକି ?

ଏହି ବହିଟି କରିବାର ଏକ ମୂଳ କାରଣ ହେଉଛି: ଶିକ୍ଷା ବିଷୟରେ ଏଥିରେ ଥିବା ଏକ ନୂଆ ମତ । ସିଲ୍‌ଭିଆ ଏଷ୍ଟନ୍-ୱାର୍ଣର ଓ ତାଙ୍କ ସ୍ୱାମୀ କି'ଥ୍ ହେଣ୍ଡରସନ୍ ନିଉଜିଲାଣ୍ଡର ମାଓରି ଆଦିବାସୀ ଶିଶୁଙ୍କୁ ଲମ୍ବା ସମୟ ଧରି (ପ୍ରାୟ ୨୪ ବର୍ଷ) ଶିଶୁ ଶ୍ରେଣୀରେ ପାଠ ପଢ଼ାଇଥିଲେ । ଭାରତରେ ଏପରି ଲମ୍ବା ସମୟ ଧରି ଆଦିବାସୀ ଶିଶୁଙ୍କୁ ପାଠ ପଢ଼ାଇଥିବା ଶିକ୍ଷକ, ଶିକ୍ଷିକାଙ୍କ ସଂଖ୍ୟା କିଛି କମ୍ ନୁହେଁ । ଏମାନଙ୍କ ଭିତରୁ ଅଧିକାଂଶ କେବଳ 'ଚାକିରି' କରିଥାନ୍ତି, ଯେଉଁଥିରେ 'ଶିକ୍ଷା' କିମ୍ବା 'ଶିକ୍ଷକତା' ନ ଥାଏ । ବିଦେଶର ବହି ଓ ପାଠ୍ୟକ୍ରମକୁ ଆଧାର କରି ଲେଖା ଯାଇଥିବା ଆମର ବହିଗୁଡ଼ିକୁ କେବଳ ଯାନ୍ତ୍ରିକ ଭାବରେ ଗଡ଼ାଇ ଦେଲେ ଆମ ଦେଶରେ ପାଠପଢ଼ା ସରିଯାଏ । ଶିକ୍ଷା କ୍ଷେତ୍ରରେ ଆଉ ଏକ ବଡ଼ ଅସୁବିଧା ହେଉଛି, ଏଥିରେ ଶିକ୍ଷାର୍ଥୀର ବିକାଶ ସ୍ତରକୁ ଯାନ୍ତ୍ରିକ ମାପକାଠିରେ ଦର୍ଶାଇ ହୁଏନାହିଁ । ଅସଲ 'ଶିକ୍ଷା' ଏପରି ଏକ ଗଭୀର ଅନୁଭୂତି, ଯାହା ଶିକ୍ଷାର୍ଥୀକୁ ଭିତରୁ ଆନନ୍ଦ ଓ ବିଶ୍ୱାସ ଯୋଗାଏ ଓ ତା'ର ଆଖିକୁ ଖୋଲିଦିଏ । କିନ୍ତୁ ଆମ ଦେଶରେ ଶିକ୍ଷାର ଧାରା ଏପରି ଭାବରେ ଚାଲେ ଯେ, ଶିକ୍ଷାର୍ଥୀ ଏହାର ଓଲଟା ପ୍ରଭାବଟି ପାଏ । ସ୍କୁଲ କହେ 'କୋର୍ସ' ସରିଲା, ପିଲାକୁ ମାପ, ଆଗେଇ ଚାଲ । କିନ୍ତୁ ପିଲା କିଛି ବୁଝିବା ଆଗରୁ ପଛରୁ ଠେଲା ଖାଇ ଖାଇ ସ୍କୁଲର ଶେଷ ସୋପାନରେ ପହଞ୍ଚିଯାଏ ବା ମଝିରୁ ତଡ଼ା ଖାଏ । ନା ଶିକ୍ଷକ, ନା ବାପା, ମା' ନା ସମାଜ କେହି ବି ପିଲାକୁ ଜଣେ ଜୀବନ୍ତ, ଉଦ୍ଦାମ, ସୃଜନଶୀଳ କଳାକାର ଭାବେ ଦେଖନ୍ତି ନାହିଁ । ଏଠାରେ ଶିକ୍ଷକ, ଶିକ୍ଷାର୍ଥୀ, ଶିକ୍ଷାଳୟ ଓ ଶିକ୍ଷଣ ସାମଗ୍ରୀର ସଂଖ୍ୟା ବଢ଼ି ଚାଲେ; କିନ୍ତୁ ଶିକ୍ଷା ଅପମାନିତ ହୁଏ ।

କିନ୍ତୁ ଏହି ପରିପ୍ରେକ୍ଷୀରେ ସିଲ୍‌ଭିଆଙ୍କ ଚିନ୍ତା ଓ କାମରେ ଏପରି କିଛି ନୂତନ ଆଶା ଓ ସମ୍ଭାବନା ରହିଛି, ଯାହା ପୃଥିବୀ ସାରା ଏକ ନୂଆ ଆଲୋଡ଼ନ ଆଣି ଦେଇଛି ଓ ଏହି କାମ ସିଲ୍‌ଭିଆଙ୍କୁ ଜଣେ ସୃଜନଶୀଳା ଓ ଯୁଗୋପଯୋଗୀ ଶିକ୍ଷାବିତ୍‌ର ଆଦର ଯୋଗାଇଛି । ତାଙ୍କ ଶିକ୍ଷାଦାନ ପଦ୍ଧତି ସ୍ୱତନ୍ତ୍ର ଧରଣର ଥିଲା । ସେ ପିଲାଙ୍କୁ ଶବ୍ଦଟିଏ ମଧ୍ୟ ବାଧ୍ୟ କରି ଶିଖାଉ ନ ଥିଲେ । ପିଲା ମୁହଁରୁ ବାହାରି ଆସୁଥିବା ଘରୁଆ ଶବ୍ଦରୁ ଆରମ୍ଭ କରି ସେ ତା'ର ଜୀବନ, ପୃଷ୍ଠଭୂମିକୁ ବୁଝିବାକୁ ଚେଷ୍ଟା କରୁଥିଲେ ଓ ତା' ପାଇଁ ଭବିଷ୍ୟତର ସମ୍ଭାବନାକୁ ଆଙ୍କିବାକୁ ଉଦ୍ୟମ ଚଳାଉଥିଲେ । ସେ ଅନୁଭବ

କରିଥିଲେ ଯେ, ପ୍ରତ୍ୟେକ ଶିଶୁ ଗୋଟିଏ ଲେଖାଏଁ ଜୀବନ୍ତ ଆଗ୍ନେୟଗିରି, ଯାହା ଭିତରୁ ଅନବରତ ଉତୁରି ଆସେ ଅଜସ୍ର ଜୀଅନ୍ତା ଭାବନା ଓ ବଳିଷ୍ଠ ନୂଆ ସୃଜନୀଧାରା । ଏହାକୁ ବୁଝି ପ୍ରକୃତି ଓ ସମାଜର ଜୀଅନ୍ତାଧାରା ସହ ସମ୍ପର୍କ ଯୋଡ଼ିବାରେ ଶିକ୍ଷକ, ଶିକ୍ଷିକାଙ୍କ ଭୂମିକା ବେଶ୍ ଗୁରୁତ୍ୱପୂର୍ଣ । ଏହି ପ୍ରକ୍ରିୟାଟି ବେଶ୍ ସୃଜନଶୀଳ ଓ ଉତ୍ପାଦନକ୍ଷମ । ଏହି ଧାରାରେ ପ୍ରତ୍ୟେକ ଶିଶୁ ପ୍ରକୃତିର ବିଭିନ୍ନ ସୃଷ୍ଟି ଭଳି ସ୍ୱାଭାବିକ ଓ ସାବଲୀଳ ଭାବେ ବଢ଼ି ପାରିବ ଓ ପୃଥିବୀ ପାଇଁ ସକାରାତ୍ମକ ଭାବରେ ଉତ୍ପାଦନକ୍ଷମ ହୋଇପାରିବ । ଏହି ଶିକ୍ଷା ହିଁ ପୃଥିବୀକୁ ସୁନ୍ଦରତର କରି ଗଢ଼ି ତୋଳିବା ପାଇଁ ଏକ ମୂଳ ଆୟୁଧ ବନିପାରିବ ।

ଜଣେ ମଣିଷ ସେତିକି ସୃଷ୍ଟିପ୍ରେମୀ, ଆଶାବାଦୀ ଓ ଦକ୍ଷ ଗବେଷକ ହେଲେ ହିଁ ଏପରି ସ୍ୱପ୍ନ ଦେଖିପାରେ ଓ ସମ୍ଭାବନା ଦେଖାଇପାରେ । ଶିକ୍ଷାବିତ୍ ସିଲ୍‌ଭିଆ ନିଜର ଲମ୍ବା ଓ ଗଭୀର ପରଖଧାରାରେ ଏହି ସତ୍ୟଟିକୁ ପ୍ରତିପାଦିତ କରିପାରିଥିଲେ। ଏହା ଏକ ଯୁଗାନ୍ତକାରୀ ଆବିଷ୍କାର । ଶିକ୍ଷାରେ ଏହି ସଫଳତା ପାଇବାକୁ ହେଲେ ଆଜିର ଶିକ୍ଷା ପଦ୍ଧତିକୁ ମୂଳରୁ ଓଲଟାଇ ବଦଳାଇବାକୁ ପଡ଼ିବ । ଶିକ୍ଷକ 'ଜ୍ଞାନର କେନ୍ଦ୍ରବିନ୍ଦୁ' ନ ହୋଇ ଶିକ୍ଷାର୍ଥୀ ହିଁ 'ଶିକ୍ଷଣର କେନ୍ଦ୍ରବିନ୍ଦୁ' ହେବାକୁ ପଡ଼ିବ । ପିଲାଙ୍କୁ 'ପିଲା' ହିସାବରେ ନ ଦେଖି ଜଣେ ଜଣେ ଜୀବନ୍ତ, ବଳିଷ୍ଠ, ସୃଜନଶୀଳ, ଭାବି ନିର୍ମାତା ରୂପେ ଦେଖିବାକୁ ପଡ଼ିବ । ଗଛ ପରି ଛନ ଛନ ହୋଇ ଉଧେଇ ଉଠୁଥିବା ଏହି ତାଜା ଚାରାଙ୍କ ପାଇଁ ଆମ ବୟସ୍କ (ଶିକ୍ଷକ, ଅଭିଭାବକ) ମାନଙ୍କୁ 'ମାଳୀ'ର ଭୂମିକା ତୁଲାଇବାକୁ ପଡ଼ିବ । ମାଳୀ କେବେ ମଞ୍ଜି ବା ଚାରାକୁ କୌଣସି ଭାବରେ ବି ତଳୁଆ କରି ଦେଖିପାରେନା । ତା'ର ପ୍ରିୟ ବିହନ ଓ ଚାରାକୁ ନେଇ ସେ କେତେ ବଡ଼ ସ୍ୱପ୍ନ ଦେଖେ, ତା' ସାଙ୍ଗରେ ନିବିଡ଼ ଭାବରେ ଲାଗି ତାକୁ ଯଥାସମ୍ଭବ ଉଧେଇବାରେ ସେ ଅଫୁରନ୍ତ ଆନନ୍ଦ ପାଏ ଓ ତା'ର ସବୁଜ ପ୍ରୟୋଗଶାଳା ସମାଜର ଜୀବନରେ ସବୁଜିମା ଭରିଦିଏ । ସିଲ୍‌ଭିଆଙ୍କ କାମ ଏହି ଆଶା ଓ ସମ୍ଭାବନାର ବାର୍ତ୍ତାବହ ।

ଏହି ବହିଟି ସେଇ ମାଳୀମାନଙ୍କ ପାଇଁ, ଯେଉଁମାନେ 'ଶିକ୍ଷା'କୁ ଏହି ସମ୍ଭାବନା ରୂପରେ ଦେଖିପାରନ୍ତି । କଳୁଷିତ ଶିକ୍ଷାଧାରାରେ ଭାରତ ପରି ଅନେକ ଦେଶରେ ଅସଂଖ୍ୟ ଉତ୍କୃଷ୍ଟ ମଞ୍ଜି ଓ ଚାରା (ପିଲାଏ) ଆଜି 'ଗଜାମରୁଡ଼ି'ର ଶିକାର ହୋଇଛନ୍ତି । ସବୁଠାରେ ସମାଜର ସୃଜନଶୀଳ ଉତ୍ପାଦନ ହାର ସାଂଘାତିକ ଭାବରେ ତଳକୁ ଖସି ଚାଲିଛି । କିନ୍ତୁ ଏଥିରେ ଆମେ ନିରାଶ ହେବାର କିଛି କାରଣ ନାହିଁ।

ଆମେ ଏତିକି ବୁଝିବା ଯେ, ଆମ ଦାୟିତ୍ୱ ବେଳକୁ ବେଳ ବଢ଼ି ଚାଲୁଛି । ଗୋଟିଏ ଦିଗରୁ ଆମକୁ ଗଜାମରୁଡ଼ିକୁ ରୋକିବାକୁ ପଡ଼ିବ । ଦ୍ୱିତୀୟରେ, ଆମକୁ ଉତ୍କୃଷ୍ଟ ମାନର ଚାରା ବଢ଼ାଇ ଉତ୍ପାଦନକୁ ବି ବଢ଼ାଇବାକୁ ପଡ଼ିବ । ଏଥିପାଇଁ ଆମ ସମାଜ ପ୍ରସ୍ତୁତ ହୋଇନାହିଁ । ଏ ଦିଗରେ ଚିନ୍ତା କରିନାହିଁ ବା ସ୍ୱପ୍ନ ବି ଦେଖିନାହିଁ । ଆମକୁ ସମାଜକୁ ଏହି ବିରାଟ ବିପ୍ଳବ ପାଇଁ ପ୍ରସ୍ତୁତ କରିବାକୁ ପଡ଼ିବ । ମାଳୀ ବା ଶିକ୍ଷାପ୍ରେମୀ/ ଶିକ୍ଷାକର୍ମୀଙ୍କ ସଂଖ୍ୟାକୁ ଖୁବ୍ ବଢ଼ାଇବାକୁ ପଡ଼ିବ ।

ଆମ ଭିତରେ ଏହି ବିଶ୍ୱାସ ଜନ୍ମାଇବାରେ ସିଲ୍‌ଭିଆଙ୍କ କାମ ବା ପାଉଲୋ ଫ୍ରାଏରେଙ୍କ ପରି ଶିକ୍ଷାବିତ୍‌ଙ୍କ କାମ ହିଁ ମୂଳାଧାର । ସିଲ୍‌ଭିଆଙ୍କ ପରି ପାଉଲୋ ଫ୍ରାଏରେ ମଧ୍ୟ ଏପରି 'ଜୀବନ୍ତ ଶିକ୍ଷାଦାନ' ପଦ୍ଧତିର ପ୍ରବର୍ତ୍ତକ ଥିଲେ । ଅପାଠୁଆ ଚାଷୀମାନଙ୍କ ମୁହଁରୁ ଉତୁରି ଆସୁଥିବା ଭାଷାକୁ ଆଧାର କରି ସେ ବ୍ରାଜିଲରେ ଏକ ଅକ୍ଷର ଜାଗରଣ ଠିଆ କରିବାକୁ ଚେଷ୍ଟା ଚଳାଇଥିଲେ । ଏଥିପାଇଁ ଦେଶରୁ ତାଙ୍କୁ ତଡ଼ା ଖାଇବା ପରି ପରିସ୍ଥିତି ବି ସୃଷ୍ଟି ହେଲା । ସିଲ୍‌ଭିଆଙ୍କ କାମରେ ବି ଏହି ବିପ୍ଳବୀ ଝଲକଟି ରହିଥିଲା, ଯାହା ଶିକ୍ଷା ଆକାଶରେ ବିଜୁଳି ପରି ଝଟକି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲା ଓ କରି ଚାଲିଥିବ ।

ଆମେମାନେ ଏହି ବହିଟିରୁ ସେହି ଝଲକଟିକୁ ଦେଖିପାରିବା । ବହିଟିକୁ ଯେତେ ଅଧିକ ସାଥି ପଢ଼ିବେ, ଆଲୋଚନା କରିବେ ଓ ପାଖପଡ଼ୋଶୀଙ୍କୁ ପଢ଼ାଇବେ, ମାଳୀଙ୍କ ସଂଖ୍ୟା ସେତେ ଅଧିକ ବଢ଼ିବାର ସମ୍ଭାବନା ଅଛି । ତେଣୁ *ମାନବିକ*ର ଶିକ୍ଷା ସନ୍ଦେଶ ଧାରାରେ ଆମେ ଏହି ବହିଟିକୁ ପ୍ରକାଶ କରୁଛୁ । ଓଡ଼ିଶାର ବିଭିନ୍ନ ଜାଗାରେ ଆମେ ଏହି ଶିକ୍ଷା ସନ୍ଦେଶ ପହଞ୍ଚାଇ ଶିକ୍ଷା ବିତର୍କ ଚଳାଇ ଚାଲିଛୁ । ଆଶା ରଖୁଛୁ *ଆପଣ* ଏହି ଧାରାଟିକୁ ଆପଣାଇବେ ଏବଂ ଅତିକମ୍‌ରେ ଘରେ ଓ ଯଥାସମ୍ଭବ ବାହାରେ ଜଣେ ଶିକ୍ଷାମାଳୀର ଭୂମିକା ତୁଲାଇବାକୁ ତିଆର ହେବେ । ଏ ରକମର **ଶିକ୍ଷା ଚାଷ**, ପରଖ ପାଇଁ ପ୍ରତ୍ୟେକ ମାଳୀଙ୍କ ଆଗରେ *ମାନବିକ* ଏକ *ଖୋଲା ପ୍ରୟୋଗଶାଳା* । କିନ୍ତୁ ଡାକରା ସେମାନଙ୍କର, ଯେଉଁମାନେ ପୃଥିବୀ ସ୍ୱର୍ଗରେ ସବୁଜିମା ଭରି ଦେବାର ଉପାଦାନରେ ପରିପୃକ୍ତ ହୋଇ ରହିଛନ୍ତି (ପିଲାମାନେ), କିନ୍ତୁ ଗଜା ମରୁଡ଼ି......!!

***ଶିକ୍ଷା ସନ୍ଦେଶ ସହ***
***ମାନବିକ ପରିବାର***

# ପ୍ରାକ୍‌କଥନ

ପ୍ରଥମ ବିଶ୍ୱଯୁଦ୍ଧ ପରେ ଏପରି ଏକ ସମୟ ଆସିଲା, ଯେତେବେଳେ ମଣିଷ ଭୟଭୀତ ହୋଇ ଉଠିଲା ଏବଂ ଆତ୍ମସମୀକ୍ଷା ସହିତ ଗଭୀର ଭାବେ ବିଚାର-ବିମର୍ଷ ଚଳାଇଲା । ୧୯୧୪ ବେଳକୁ ଅବସ୍ଥା ଅଲଗା ଥିଲା । ଲୋକେ ନିଜ ନିଜ ସାମାଜିକ ସ୍ତରରେ ବେଶ୍ ଆତ୍ମ-ସନ୍ତୋଷ ଲାଭ କରୁଥିଲେ । ସବୁ କିଛି ଅଧିକରୁ ଅଧିକ ଉନ୍ନତି ଲାଭ କରୁଛି ବୋଲି ଧରି ନେଇଥିଲେ । କିନ୍ତୁ ପ୍ରଥମ ବିଶ୍ୱଯୁଦ୍ଧ ସବୁ କିଛି ଓଲଟ ପାଲଟ କରିଦେଲା । ବିପୁଳ ନର-ସଂହାରର ଭୟାବହତା ମଣିଷକୁ ଚିନ୍ତା କରିବାକୁ ବାଧ କଲା - ଭୁଲ୍ କେଉଁଠି ? ଏହାର କାରଣ କ'ଣ ? 'ବୀରଭୋଗ୍ୟା ବସୁନ୍ଧରା' ଭାବଧାରାରେ ବିଭୋର ସମାଜର ସୁନେଲି ସ୍ୱପ୍ନ ଧୂଳିସାତ୍ ହୋଇଗଲା । ଗଭୀର ପଶ୍ଚାତ୍ତାପ ସହିତ ଦୁଃଖାଭିଭୂତ ମଣିଷର ସେ ଥିଲା ଏକ ପ୍ରକାଣ୍ଡ ଚିନ୍ତନର ସମୟ ।

ସ୍ୱାଭାବିକ ଭାବରେ ବିଚାରବନ୍ତ ଲୋକେ ଯେତେ ସବୁ ବିଚାର-ବିମର୍ଷ ଚଳାଇଲେ, ସେ ଭିତରେ ପାରମ୍ପରିକ ଶିକ୍ଷାରେ ଥିବା ତ୍ରୁଟି-ବିଚ୍ୟୁତି ଦୃଷ୍ଟି ଆକର୍ଷଣ କଲା । ଯୁଦ୍ଧ ଲାଗିଥିବା ସମୟରେ ବି ବିଭିନ୍ନ ଦେଶର ସରକାର, ନିଜ ନିଜ ଦୃଷ୍ଟିକୋଣର ଗଭୀରତା ଅନୁସାରେ ଶିକ୍ଷା ପ୍ରସାର ପାଇଁ ଯେଉଁ ଅର୍ଥ ମଞ୍ଜୁର କରୁଥିଲେ, ତାହାଦ୍ୱାରା ନୂତନ ଶିକ୍ଷାନୀତି ପାଇଁ ଚେଷ୍ଟା ମଧ୍ୟ ଲାଗି ରହିଥିଲା । ଯୁଦ୍ଧ ପରେ ସେ ଦିଗରେ ସକ୍ରିୟ ଥିବା ଚିନ୍ତାଶୀଳ ବ୍ୟକ୍ତିମାନେ ସରକାରଗୁଡ଼ିକର ବିଶେଷ ଭାବେ ଦୃଷ୍ଟି ଆକର୍ଷଣ କଲେ । ଆର୍ଥିକ ତଥା ଅନ୍ୟାନ୍ୟ ସୁବିଧା ସୁଯୋଗ ବଳରେ ଅନୁକରଣ ପରିବର୍ତ୍ତେ ନୂତନ ଦିଗ୍‌ଦର୍ଶନ ଦେବାରେ ଅଧିକ ସଂଖ୍ୟାରେ ସେଇ ଗବେଷକମାନେ ନୂତନ ଶିକ୍ଷାନୀତିର ସଫଳ ଅଗ୍ରଦୂତ ହୋଇପାରିଲେ । ସେଇ ବିଦ୍ୱାନ୍‌ମଣ୍ଡଳୀ ଭିତରେ ନିଉଜିଲାଣ୍ଡର ସିଲ୍‌ଭିଆ ଏଷ୍ଟନ—ୱାର୍ଣର ଜଣେ ସଫଳ, ଏକାକିନୀ ଗବେଷିକା ରୂପେ ଉଚ୍ଚ ମର୍ଯ୍ୟାଦାର ଅଧିକାରିଣୀ । ଏହା ବିଂଶ ଶତାବ୍ଦୀର ତୃତୀୟ ଦଶକର ଘଟଣା । ବିଶ୍ୱ-ବ୍ୟାପୀ ଆଲୋଚନା ଓ ଭାବ ବିନିମୟ ସତ୍ତ୍ୱେ ସମୁଚିତ ସଂପର୍କର ଅଭାବ ଯୋଗୁଁ ବହୁ ସଫଳ ଶିକ୍ଷାବିତ୍ ପରସ୍ପରର ଗବେଷଣାଲବ୍ଧ ନୂତନ ଭାବଧାରା ସହ ପରିଚିତ ନ ଥିଲେ । ସେତେବେଳେ ଆନ୍ତର୍ଜାତିକ ସ୍ତରରେ ଶିକ୍ଷା କ୍ଷେତ୍ରରେ ସଂସ୍କାର

ନିମିତ୍ତ ଅଭିଯାନ ଆରମ୍ଭ ହୋଇଥିଲା ଏବଂ ଗବେଷଣା ପାଇଁ ନୂଆ ଅନୁଦାନର ବ୍ୟବସ୍ଥା ଥିଲା । ସେଥିରେ ନିଉଜିଲାଣ୍ଡ୍ ସରକାର ତାଙ୍କର ଶିକ୍ଷା ଯୋଜନାରେ ମାଓରି ସଂପ୍ରଦାୟ ପାଇଁ ବିଦ୍ୟାଳୟ ସ୍ଥାପନର ପ୍ରସ୍ତାବ ରଖିଥିଲେ । ସେଇ ପୃଷ୍ଠଭୂମିରେ ସିଲଭିଆ ଏବଂ ତାଙ୍କର ସ୍ୱାମୀ କିଥ୍ ହେଣ୍ଡରସନ୍ ୧୯୩୭ରେ ତାଙ୍କର ସୃଜନାତ୍ମକ ଶିକ୍ଷା ଗବେଷଣା ଆରମ୍ଭ କରିଥିଲେ ବୋଲି ମୁଁ ଅନୁମାନ କରୁଛି । ମାଓରି ଶିଶୁମାନଙ୍କୁ ନେଇ ପ୍ରାୟ ୨୪ ବର୍ଷ ଧରି ସିଲ୍‌ଭିଆ ତାଙ୍କର ପରୀକ୍ଷା ନିରୀକ୍ଷା ଚଳେଇଥିଲେ ବୋଲି କହନ୍ତି । କିନ୍ତୁ ସେ ସମସ୍ତ ଗବେଷଣାର ବିବରଣୀ ନେଇ ଲେଖିଥିବା ଏହି ଟିଚର୍ (ଶିକ୍ଷକ) ପୁସ୍ତକକୁ ୧୯୬୩ ମସିହାଯାଏଁ ପ୍ରକାଶକ ମିଳିଲେ ନାହିଁ । ତା' ପୁଣି ନିଜ ଦେଶ ନିଉଜିଲାଣ୍ଡରେ ନୁହେଁ, ମିଳିଲେ ଯୁକ୍ତରାଷ୍ଟ୍ର ଆମେରିକାରେ । ଉନ୍ନତ ଓ ନୂତନ ଭାବଧାରାର ଶିକ୍ଷା ଗବେଷକମାନଙ୍କ ପକ୍ଷରେ ଆନ୍ତର୍ଜାତିକ ସ୍ତରରେ ସଂପର୍କ ସ୍ଥାପନ ଓ ଭଲ ବୁଝାମଣାର ବିକାଶ କିପରି କଷ୍ଟକର; ତାହା ଏଥିରୁ ଅନୁମେୟ । ନିଜ ନିଜର ସ୍ଥାନୀୟ ସଂସ୍କୃତି ହିଁ ସେମାନଙ୍କୁ ଉଚିତ ସମ୍ମାନ ଦେବାରେ ପ୍ରତିବନ୍ଧକ ହୁଏ ।

ସିଲ୍‌ଭିଆ ଏଷ୍ଟନ-ୱାର୍ଣରଙ୍କର ବାଲ୍ୟକାଳ ଦାରିଦ୍ର୍ୟ ଭିତରେ ବିତିଥିଲା । ବାପା ଥିଲେ ଜଣେ ଅକ୍ଷମ ଲୋକ । ସେ ସବୁବେଳେ ଚକ-ଲଗା ଚୌକିରେ, କିମ୍ବା ଶେଯରେ ପଡ଼ି ରହୁଥିଲେ । ଆଉ ମାଆ ନଅଟି ପୁଅଝିଅଙ୍କୁ କ୍ରମାଗତ ଭାବେ ଲାଳନପାଳନ କରିଥିଲେ, ସ୍କୁଲକୁ ପଠାଇଥିଲେ । ବଡ଼ ପିଲାଙ୍କ ପଛରେ ସାନ ପିଲାଏ ଧାଡ଼ି ବାନ୍ଧି ଚାଲୁଥିଲେ । ଗରିବ ଏକାନ୍ନବର୍ତ୍ତୀ ପରିବାରଟି ନିଜ ନିଜ ଭିତରେ ଦୁଃଖ-କଷ୍ଟକୁ ବାଣ୍ଟି ମିଳିମିଶି କାମ କରି ଚଳୁଥିଲେ, କାହାରି ପ୍ରତି କାହାର ଈର୍ଷା ନ ଥିଲା । ଘରେ ଗୋଟିଏ ପିଆନୋ ଥିଲା । ଯେତେବେଳେ ଇଚ୍ଛା ହେଲେ ମା' ଏହାକୁ ବଜାଉଥିଲେ । ଏହା ମାଆଙ୍କର ଏକ ସ୍ୱତନ୍ତ୍ର କଳା ଥିଲା । ସେ ଏଥିପ୍ରତି ଗୁରୁତ୍ୱ ଦେଉଥିଲେ । ଏପରି ଭାବେ ସଙ୍ଗୀତ, ଚିତ୍ରକଳା, ଆଉ ଲେଖାଲେଖି ସିଲ୍‌ଭିଆଙ୍କର ପ୍ରିୟ କାମ ଥିଲା । ସେ ଦୃଷ୍ଟିରୁ ଶିକ୍ଷକତା କରିବା ତାଙ୍କ ପକ୍ଷରେ ଅଭିଶାପ ମନେହୁଏ । ତଥାପି ସାମାଜିକ ଅବସ୍ଥା ଓ ନିଜର ଶିକ୍ଷା ଦୃଷ୍ଟିରୁ ଶିକ୍ଷକତାକୁ ବୃତ୍ତି ରୂପେ ଗ୍ରହଣ କରିବା ତାଙ୍କ ପାଇଁ ବିଧିର ବିଧାନ ଥିଲା ।

୧୯ ବର୍ଷ ବୟସରେ ଶିକ୍ଷକ ତାଲିମ ଗ୍ରହଣ କରିସାରିବା ବେଳକୁ

ଶକ୍ତି ତଥା ଉଚ୍ଚ ଆଶା ନେଇ ସେ ବେଶ୍ ସକ୍ରିୟ ଥିଲେ । ନିଜର ସେ ସମୟର ଖରାପ ଅବସ୍ଥାରୁ ମୁକ୍ତି ପାଇବା ପାଇଁ ବିବାହ ଅନୁକୂଳ ହେବ ଭାବି ସେ ପୁରୁଷ ବନ୍ଧୁମାନଙ୍କ ସହ ଘନିଷ୍ଠତା ବଢ଼େଇଲେ । କିନ୍ତୁ ସେ ମୋହ ଖୁବ୍ ଶୀଘ୍ର ଦୂର ହେଲା । ସେ ବୁଝିପାରିଲେ ଯେ, ବିବାହ ତାଙ୍କ ଆଶା ପୂରଣ କରିପାରିବ ନାହିଁ । ଅପରପକ୍ଷରେ ଜଣେ ଶିକ୍ଷୟିତ୍ରୀ ଭାବେ କାମ କରୁଥିବା ମହିଳାଙ୍କୁ ବିଭା ହେବା ସୌଭାଗ୍ୟଜନକ ବୋଲି ଯୁବକମାନେ ଭାବୁଥିଲେ । ପରିଶେଷରେ, ସେ ଏଇ ଶିକ୍ଷା-ଦାନ ବୃତ୍ତିକୁ ହିଁ ବିଭା ହୋଇପଡ଼ିଲେ ।

ପ୍ରାଣ-ପ୍ରାଚୁର୍ଯ୍ୟଭରା ତାଙ୍କର ସକ୍ରିୟ ବ୍ୟକ୍ତିତ୍ୱ ଆତ୍ମ-କୈନ୍ଦ୍ରିକ ଥିଲା ଏବଂ ଅନ୍ୟାନ୍ୟ ବହୁ ବ୍ୟକ୍ତିଙ୍କ ପରି ଯୁଦ୍ଧକାଳୀନ (ପ୍ରଥମ ବିଶ୍ୱଯୁଦ୍ଧ) ଅବ୍ୟବସ୍ଥା ଭିତରେ ସିଲ୍‌ଭିଆ ମଧ୍ୟ ବହୁତ କିଛି ଦିଗରୁ ବିବ୍ରତ ଥିଲେ । ବହୁ ଲୋକଙ୍କ ଅସନ୍ତୋଷ ବାରି ହୋଇପଡୁଥିଲା । ସମାଜରେ ତାଙ୍କରି ପରି ଦୁରବସ୍ଥା ବିରୁଦ୍ଧରେ ମହିଳାମାନଙ୍କ ବିଦ୍ରୋହ ବଢ଼ି ଚାଲିଥିଲା । ଯେଉଁମାନେ ନିଜେ କିଛି କରି ଦେଖାଇବାକୁ ଲାଗି ପଡ଼ିଥିଲେ, ସେମାନେ ସେଥିପାଇଁ କୌଣସି ସୁବିଧା-ସୁଯୋଗ ପାଇ ନ ଥିବାରୁ ବିଶେଷ ଭାବେ ବ୍ୟାକୁଳ ହୋଇ ଉଠୁଥିଲେ । ପ୍ରଶାସନ ଓ ପରମ୍ପରାର ସବୁ ଦିଗ ପ୍ରତି ବିତୃଷ୍ଣା ଜାତ ହେଉଥିଲା । ଏସବୁ ଦୃଷ୍ଟିରୁ ସିଲ୍‌ଭିଆ ତାଙ୍କର ଏଇ ସୃଜାନତ୍ମକ (ରଚନାତ୍ମକ) ଶିକ୍ଷାପଦ୍ଧତି ବାଛିନେବାରେ, ଠିକ୍ କାହାଦ୍ୱାରା ପ୍ରଭାବିତ ହୋଇଥିବେ- ତା' ଏବେ କହିବା କଷ୍ଟକର । କିନ୍ତୁ ସେ ତାଙ୍କର ବିପୁଳ ଶକ୍ତି ସାମର୍ଥ୍ୟ ପ୍ରୟୋଗ କରି ଗବେଷଣା କରିଥିଲେ । ତାଙ୍କର ନିଜ ସନ୍ତାନସନ୍ତତି ନିଶ୍ଚିତ ଭାବରେ ତାଙ୍କ ପାଇଁ ସର୍ବପ୍ରଥମେ ପରୀକ୍ଷାର ଆଧାର ହୋଇଥିବେ । କିନ୍ତୁ ତାଙ୍କର ବର୍ଣ୍ଣନା ଅନୁସାରେ, ଶିଶୁମାନେ କଳକାରଖାନାରେ ତିଆରି ଖେଳନା ଧରି ଶିଖିବା, ରେଡ଼ିଓ ଓ ସିନେମାରୁ 'ଡବା ଭିତରେ ବନ୍ଦୀ ଜୀବନ' ପରି ଯାହା ସବୁ ଶିକ୍ଷାଲାଭ କରନ୍ତି, ତାହାରି ଫଳରେ ଯୁବ ଅବସ୍ଥା ବେଳକୁ ତାଙ୍କର ବିକାଶ ଖର୍ବ ହୋଇଯାଇଥାଏ - ବଢ଼ି ଉଠି ଗଢ଼ି ତୋଳିବା ଭିତରର ପ୍ରାଣଶକ୍ତି ମରିଯାଇଥାଏ । ଏହା ଯୁକ୍ତରାଷ୍ଟ୍ରରେ ହେଉ କି ନିଉଜିଲାଣ୍ଡରେ ହେଉ- ଏ ତାତ୍ତ୍ୱିକ ସଫଳତା ବିଂଶ ଶତାବ୍ଦୀର ତୃତୀୟ ଦଶକ ଅପେକ୍ଷା ଷଷ୍ଠ ଦଶକ ସମୟ ପାଇଁ ଅଧିକ ପ୍ରାସଙ୍ଗିକ । ଶିକ୍ଷାପଦ୍ଧତିରେ ଶିଶୁର ସ୍ୱାଧୀନତା ପାଇଁ ମୁଁ ଏବଂ ଏପରି ଅନେକ ଶିକ୍ଷାବିତ୍ ଲାଗି ପଡ଼ିଥିଲେ ହେଁ ସିଲ୍‌ଭିଆ ଯେ

ଆରମ୍ଭରୁ ଏହାର ଗୁରୁତ୍ୱ ସ୍ପଷ୍ଟ ଭାବେ ଅନୁଭବ କରି ପାରିଥିଲେ ସେଥିରେ ମୋର ସନ୍ଦେହ ନାହିଁ ।

ସେ ଟଲଷ୍ଟୟଙ୍କ ବିଦ୍ୟାଳୟ ବିଷୟ ଉଲ୍ଲେଖ କରିଛନ୍ତି । ରୁଷୋଙ୍କୁ ଆବିଷ୍କାର କରିଛନ୍ତି - ଯେଉଁ ରୁଷୋ ଆମର ସମସ୍ତ ଶିକ୍ଷା ଗବେଷକଙ୍କ ପ୍ରଧାନ ପ୍ରେରଣାଦାତା ଫ୍ରୟେଡ୍‌ଙ୍କମାନସିକ ଚିକିତ୍ସା ଓ ଅବଚେତନ ମନର ତତ୍ତ୍ୱ ସେଇ ଯୁଦ୍ଧକାଳୀନ ବର୍ଷ କେତୋଟିରେ ସମସ୍ତ ପ୍ରଗତିଶୀଳ ବୁଦ୍ଧିଜୀବୀଙ୍କୁ ପ୍ରଭାବିତ କରିଥିଲା । ସେ ଫ୍ରୟେଡ୍‌ଙ୍କ ବିଷୟ ବି ଉଲ୍ଲେଖ କରିଛନ୍ତି ଏବଂ ଡଃ ଏରିକ୍ ଫ୍ରୋମ୍ ଓ ବର୍ଟ୍ରାଣ୍ଡ୍ ରସେଲ୍‌ଙ୍କ କଥା କହିଛନ୍ତି । ଏ.ଏସ୍. ନେ'ଲଙ୍କ ବିଦ୍ୟାଳୟ ସମ୍ବନ୍ଧରେ ସେ ସାମାନ୍ୟ କିଛି ଶୁଣିଥିଲେ । ହରବର୍ଟ୍ ରି'ଡ୍ ତାଙ୍କର ଏଇ ପୁସ୍ତକର ମୁଖବନ୍ଧ ଲେଖିଛନ୍ତି । ତାଙ୍କର "କଳା ମାଧ୍ୟମରେ ଶିକ୍ଷା" (Education Through Art) ପୁସ୍ତକଟି ୧୯୪୩ରେ ପ୍ରକାଶିତ ହୋଇଥିଲା ।

୧୯୨୭ରୁ ୧୯୪୩ ଯାଏଁ ମୁଁ ଛୋଟ ଛୋଟ ପିଲାଙ୍କୁ ଯେଉଁ ଢାଞ୍ଚାରେ ପଢ଼େଇବା କାମରେ ଲାଗିଥିଲି ତାହାକୁ ଅର୍ଗାନିକ୍ (Organic : ସହଜ ବା ରଚନାତ୍ମକ) ନାଆଁ ଦିଆଯାଇପାରେ- ଶିଶୁମାନଙ୍କୁ ଶିକ୍ଷା ଦେବା ନେଇ ସିଲ୍‌ଭିଆ ଏଷ୍ଟନ୍ ୱାର୍ଣର୍ ତାଙ୍କ ନିଜ ଦୃଷ୍ଟିକୋଣର ଯେଉଁ ବର୍ଣନା ଦେଇଛନ୍ତି, ସେ ଦୃଷ୍ଟିରୁ । ମୁଁ ସେ ସମୟର ପ୍ରଥମ ପାଞ୍ଚବର୍ଷ ବର୍ଟ୍ରାଣ୍ଡ୍ ରସେଲ୍‌ଙ୍କ ସାଥିରେ ଥିଲି । ଆମ ଶିକ୍ଷାଦାନ ପ୍ରଣାଳୀ ଭିତରେ ଯେଉଁ ସାମଞ୍ଜସ୍ୟ ରହିଛି, ତାହା ଅନୁକରଣ କିମ୍ବା ଆକସ୍ମିକ ନୁହେଁ । ସେ ଭିତରେ ମୌଳିକ ତଥା ଆଗ୍ରହମୂଳକ ଗୁରୁତ୍ୱ ରହିଛି। ସମାନ ଲକ୍ଷ୍ୟ ଓ ଆଦର୍ଶ ନେଇ ଆମେ ଯେଉଁମାନେ ଇଂଲଣ୍ଡରେ ଏଇ ପରୀକ୍ଷା ନିରୀକ୍ଷା କରୁଥିଲୁ, ତା' ଅପେକ୍ଷା ସିଲ୍‌ଭିଆ ଏଷ୍ଟନ୍ ୱାର୍ଣର ପରିସ୍ଥିତି ଦୃଷ୍ଟିରୁ କିଛି ଅଧିକ ସୁବିଧା ଲାଭ କରିଥିଲେ । ମାଓରି ବିଦ୍ୟାଳୟରେ ଶିକ୍ଷା ଦେବାକୁ ସିଲ୍‌ଭିଆ ଓ ତାଙ୍କ ସ୍ୱାମୀ ନିଯୁକ୍ତି ପାଇଥିବାରୁ ସେମାନେ ସରକାରଙ୍କ ଠାରୁ ଦରମା ପାଉଥିଲେ । କିନ୍ତୁ ଇଂଲଣ୍ଡରେ ପ୍ରଗତିଶୀଳ ଶିକ୍ଷାଦାତାମାନଙ୍କୁ ନିଜ ପାଇଁ ନିଜେ ପଇସା ଯୋଗାଡ଼ କରିବାକୁ ପଡୁଥିଲା । ତଥାପି ଦୂରଦୂରାନ୍ତ ତଥା ବିପଜ୍ଜନକ ସ୍ଥାନରେ ସ୍ଥାପିତ ମାଓରି ବିଦ୍ୟାଳୟରେ ଏବଂ ଏକ ରକ୍ଷଣଶୀଳ ଗୋରା ପ୍ରଶାସନ ଭିତରେ ଏ ପ୍ରକାର ଅନୁସନ୍ଧିତ୍ସୁ ଲକ୍ଷ୍ୟ ନେଇ ଶିକ୍ଷା ଦେବା ନିଶ୍ଚିତ ଭାବେ ଏକ ଗୁରୁତର ଆହ୍ୱାନ। କାରଣ ସେଇ ସ୍ଥିତିରେ ସାଂସ୍କୃତିକ ସଂଘର୍ଷ ଅନିବାର୍ଯ୍ୟ ଥିଲା ।

କ୍ଷମତାରେ ପ୍ରତିଷ୍ଠିତ ଗୋରା ସମାଜ କଳା ଲୋକ ଅର୍ଥାତ୍ ଆଦିବାସୀ ସଂପ୍ରଦାୟକୁ ପୂର୍ଣତଃ ନିଃଶେଷ ଓ ଆତ୍ମୀକରଣ କରିନେବାରେ ଲାଗିଥିଲା। ନିଜର ଧର୍ମ ଓ ଚଳଣି ସେମାନଙ୍କ ଉପରେ ଲଦି ଦେଇଥିଲା, ନିଜର ଇତିହାସ ପଢ଼ାଉଥିଲା- ଦମ୍ଭର ସହିତ ବିଶ୍ୱାସ କରିନେଇଥିଲା ଯେ, "ଆଇନକାନୁନ ନ ଥିବା ଅନୁନ୍ନତ ସଂପ୍ରଦାୟ ତାଙ୍କର ଅତୀତ ସଭ୍ୟତାକୁ ନେଇ ଗୋରା ସଭ୍ୟତା ସହିତ ତୁଳନୀୟ ନୁହନ୍ତି; ସଭ୍ୟତାକୁ ତାଙ୍କର କିଛି ଅବଦାନ ନାହିଁ। ତେବେ ସିଲଭିଆ ଏଷ୍ଟନ-ୱ୍ୱାର୍ଣର୍ ଏହାର ଏକ ବ୍ୟତିକ୍ରମ ଥିଲେ, ଏ ମତର ବିରୋଧି ଲୋକଙ୍କ ଭିତରୁ ଜଣେ ଥିଲେ। କିନ୍ତୁ ନିଜ ସଭ୍ୟତାର ଆଧୁନିକ ମୂଲ୍ୟବୋଧ ପୂର୍ଣତଃ ତାଙ୍କ ହୃଦ୍‌ବୋଧ ହୋଇନଥିଲା।

ନିଜ କାର୍ଯ୍ୟକଳାପ ଉପରେ ତାଙ୍କର ମନ୍ତବ୍ୟ ହେଉଛି:

*ପ୍ରକୃତରେ ମାଟିଆ ଆଉ ଗୋରା ମିଶିଯାଆନ୍ତୁ ବୋଲି ମୁଁ କେବେହେଲେ ଆଶା କରେନାହିଁ। ପରସ୍ପର ଭିତରେ କେବଳ ଭଲ ବୁଝାମଣା ପାଇଁ ମୁଁ ପ୍ରାର୍ଥନା କରୁଛି। ସେମାନେ ତାଙ୍କର ଆଧାତ୍ମିକ, ବୌଦ୍ଧିକ ଓ ଶାରୀରିକ ଅବସ୍ଥା ଦୃଷ୍ଟିରୁ ମିଶିପାରିବେନି ବୋଲି ନୁହେଁ। ମୁଁ ନିଜେ ସେଇଆ କରିଛି। କେବଳ ନିଜ ନିଜର ସ୍ୱାର୍ଥ ସେମାନଙ୍କୁ ଭାଗ କରି ରଖିଛି। ସାଧାରଣ ଭାବେ କହିଲେ, ମାଓରିମାନେ ନିଜ ସଂପ୍ରଦାୟର ସମାବେଶକୁ ଖୁବ୍ ଭଲ ପାଆନ୍ତି ଏବଂ ଭୋଜନ ଓ ଆଧାତ୍ମିକ ବିଷୟ ଉପରେ ଗୁରୁତ୍ୱ ଦିଅନ୍ତି। ଅପରପକ୍ଷରେ ଆମେ (ଗୋରା ଲୋକେ) ଆମର ବୌଦ୍ଧିକ ବୈଶିଷ୍ଟ୍ୟ ନେଇ ଅପରିବର୍ତ୍ତନୀୟ ମାନସିକତାରେ ଏକତ୍ରିତ ହୋଇଥାଉଁ। ଏସବୁ ଅବଶ୍ୟ ମୁଁ ସାଧାରଣ ଦୃଷ୍ଟିରୁ କହୁଛି। ନିର୍ଦ୍ଦିଷ୍ଟ ଭାବେ କହିବାକୁ ଗଲେ, ମୁଁ ଅତି ଘନିଷ୍ଠ ଭାବେ ଯାହା ସଂଗେ ମିଶିଥିଲି, ସିଏ ତ ଜଣେ ମାଟିଆ ଲୋକ ଥିଲା। (ପୃଷ୍ଠା ୧୬୫ ଦେଖନ୍ତୁ)*

ଶିଶୁ ଶ୍ରେଣୀକୁ ନୂଆ ଆସିଥିବା ମାଓରି ଛୁଆମାନେ ପ୍ରକୃତରେ କିପରି, ସେ ବିଷୟରେ ସେ କହନ୍ତି-

*ଦଳେ ପାଞ୍ଚବର୍ଷିଆ ମାଓରି ଛୁଆ ଯେତେବେଳେ ପ୍ରଥମ କରି ସ୍କୁଲରେ ପ୍ରବେଶ କରନ୍ତି, ସେତେବେଳର ଅବସ୍ଥା କେବଳ ନିଜେ ସେହି ଶିଶୁ*

*ଶ୍ରେଣୀ ଚଳେଇଥିବା ଜଣେ ଶିକ୍ଷୟିତ୍ରୀ ହିଁ ଜାଣନ୍ତି । ସେ ବୁଝିପାରନ୍ତି, କାହିଁକି ମୁଁ ଆଜିକାଲି ଉପରବେଳା ବେଳକୁ ପୂରାପୂରି ହାଲିଆ ହୋଇପଡୁଛି । ତାଙ୍କର ଜୋତାର ଓଜନ ଏକ ଏକ ଟନ୍, ଗୋଟିଏ ବିଷୟ ଉପରେ ତାଙ୍କର ମନ (ଧ୍ୟାନ) ଅତି ବେଶିରେ ଦଶ ମିନିଟ୍ ଲାଗି ରହେ, ତାଙ୍କର ସ୍ୱର ଜଙ୍ଗଲର ମଇଁଷି ପରି; ଆଉ ସେମାନଙ୍କୁ ପଢ଼େଇବା ଏକ ରଙ୍ଗୀନ୍ କଳ୍ପନାର କାମ । ସପ୍ତାହ ସପ୍ତାହ ଧରି ଆପଣ ତାଙ୍କୁ କେବଳ ନୀତିନିୟମ ମାନିବାକୁ ପଢ଼ାଇବେ; ତେଣୁ ପ୍ରକୃତ ଶିକ୍ଷାଦାନ ଅତି କମ୍ । ୟୁରୋପୀୟ ସଭ୍ୟତା ମାଓରିମାନଙ୍କ ଉପରେ ଲଦି ଦିଆଯିବା ଆଗରୁ ଅତୀତରେ ସେମାନେ ପ୍ରକୃତରେ କି ପ୍ରକାର ଯୋଦ୍ଧା ଥିଲେ ଆମ ପାଇଁ ତା' ଜାଣିବାର ଏକମାତ୍ର ମାଧ୍ୟମ ହେଉଛନ୍ତି ଏଇ ମାଓରି ବାଳକମାନେ । ଅବଶ୍ୟ ସେମାନେ ସମସ୍ତେ ଏଇ ଗୋଟିଏ ଶ୍ରେଣୀଭୁକ୍ତ ନୁହଁନ୍ତି ।* *(ପୃଷ୍ଠା ୨୩୧ ଦେଖନ୍ତୁ)*

ସେ କିପରି ନିଜକୁ ଖାପ ଖୁଆଇ ନେଇଛନ୍ତି ଜାଣିବାକୁ ହେଲେ ଆଗ ତାଙ୍କର ଲେଖା ସବୁକୁ ପୂରାପୂରି ପଢ଼ିବା ଦରକାର । ସମସ୍ତ ପ୍ରଗତିଶୀଳ ଶିକ୍ଷକଙ୍କ ପରି ସିଲ୍‌ଭିଆ ମଧ୍ୟ ଜାଣନ୍ତି ଯେ, ସବୁ ମଣିଷଛୁଆ ଅନ୍ୟାନ୍ୟ ଜୀବଙ୍କ ଛୁଆ ପରି । ସେମାନଙ୍କ ଦେହ ଓ ପ୍ରାଣର ଶକ୍ତି ଉଛୁଳି ଉଠୁଥାଏ, ପାଞ୍ଚୋଟି ଜ୍ଞାନେନ୍ଦ୍ରିୟ ସବୁ ଜିନିଷକୁ ବୁଝିବା ପାଇଁ କୌତୂହଳୀ ହୋଇ ଉଠୁଥାନ୍ତି; ଛୁଇଁବା ପାଇଁ, ଜାଣିବା ପାଇଁ, ଆଉ ଜଣେଇବା ପାଇଁ । ସିଲ୍‌ଭିଆ ଜଣେଇ ଦେଇଛନ୍ତି ଯେ: ''ପାଞ୍ଚ ବର୍ଷ ବୟସରେ ମନ କୌଣସି ନିର୍ଦ୍ଦିଷ୍ଟ ରୂପ ପାଇ ପାରି ନଥାଏ, ଆଉ ଏଇଟା ହେଉଛି ଏକ ରୋମାଞ୍ଚକର ଭାବନା ।'' ତେଣୁ ସେ ସେଇ ଉଛୁଳି ଉଠୁଥିବା ଟିକି ଟିକି ଯୋଦ୍ଧାମାନଙ୍କୁ ଧରେଇ ଦେଇଛନ୍ତି କାଦୁଆ ମାଟି, କଳାପଟା ଆଉ ଚକ୍‌ଖଡ଼ି- ନିଜ ନିଜର ମନର କଳ୍ପନା ବିଳାସକୁ ରୂପଦେଇ ଖେଳିବାକୁ । ତାଙ୍କରି ଭାଷାରେ:

*ଶିଶୁ ଶ୍ରେଣୀରେ ଯୁଦ୍ଧ ଆଉ ଶାନ୍ତି ଅବିଚ୍ଛିନ୍ନ ଭାବେ ଲାଗି ରହିଥାଏ । ସେମାନେ ସବୁବେଳେ ଲଢ଼ିବାକୁ ଜଗି ବସିଥାନ୍ତି । ଏଇ ବାଳକମାନଙ୍କ ହାତରେ ଧରେଇ ଦେବାକୁ ଦୋକାନରେ ବନ୍ଧୁକ, ଟେଙ୍କ୍ ଓ ଯୁଦ୍ଧ ବିମାନ ଭରି ହୋଇ ରହିଛି ସତ; ହେଲେ କଳାପଟା, ମାଟି ନେଇ ହାତକାମ*

*ଆଉ ଚିତ୍ରପଟରେ ତ ଏଇ ଖେଳନା ଯୁଦ୍ଧସାମଗ୍ରୀ ଭଳ୍ପି ଭଠୁଛି। କିନ୍ତୁ ମୁଁ ଭୟଶୂନ୍ୟ। ମୋର ଉଦ୍ଦେଶ୍ୟ ହେଉଛି ସେମାନଙ୍କ ସୃଜନ ଚେତନାକୁ ତେଜି ଦେବା, -ଏଇ ଶିଶୁ ଶ୍ରେଣୀରୁ ଗଠନାତ୍ମକ ମନୋଭାବ ଗଢ଼ି ଉଠିଲେ ମଣିଷ ମନ ଅନ୍ତତଃ ବଦଳିଯିବ- ଧ୍ୱଂସ ସାଧନର କ୍ଷମତା ଓ ମାନସିକତାକୁ ହରେଇ ନ ପାରିଲେ ମଧ୍ୟ ତାର ପ୍ରତିରୋଧ କରିବା।*

ତାଙ୍କର ଛାତ୍ରଛାତ୍ରୀମାନେ ନାନା ଜିନିଷ ତିଆରି କରୁଥିଲେ। ସିଲେଇ, ବୁଣେଇ ସହ ଲୁଗା ସଫେଇ ଓ ଇସ୍ତ୍ରୀ କରୁଥିଲେ। ଗୀତ ଗାଉଥିଲେ, ନାଚୁଥିଲେ, ବାସ୍କେଟ୍‌ବଲ୍ ଖେଳୁଥିଲେ, ନକ୍ସା ଓ ଛବି ଆଙ୍କୁଥିଲେ, କେତେ ଜିନିଷର ନମୁନା ଗଢୁଥିଲେ, ରଙ୍ଗ ଦେଉଥିଲେ, ଆଉ ପିଆନୋ ବଜାଉଥିଲେ। ହେଲେ ପ୍ରତ୍ୟେକ ବିଷୟ ପାଇଁ ଅତି ଅଳ୍ପ ସମୟ ଦେଉଥିଲେ। ସବୁ କିଛି କାମ ଏକାଠି ହୋଇ ଯାଉଥିଲା ପରି ମନେହୁଏ।

ତେବେ ସେମାନେ ଉଚିତ ମାନର (Organic) ଲିଖନ ଓ ପଠନ୍ଦ୍ ଶିଖି ପାରିଥିଲେ କି ? ଏଥିରେ ତାଙ୍କର ରଚନାତ୍ମକ (Organic) ପ୍ରଣାଳୀ ସଂପୂର୍ଣ ଭାବରେ ଏକ ମୌଳିକ ଚିନ୍ତା। *ଜଣେ ସକ୍ରିୟ ଶିଶୁ* କାହିଁକି ପଢ଼ିବାକୁ ଚାହେଁ। ସାଧାରଣତଃ ଶିକ୍ଷକ କିମ୍ବା ଅଭିଭାବକମାନେ କାର୍ଡ୍ ଉପରେ ଛବି ସହିତ ଏକ ଅକ୍ଷରର ପଦ କିମ୍ବା ସରଳ ସହଜ ପଦ କିମ୍ବା ସହଜରେ ପଢ଼ିବାପାଇଁ ରଙ୍ଗୀନ୍ ପୁସ୍ତକ ପିଲାଙ୍କୁ ଦିଅନ୍ତି। ପ୍ରକୃତରେ ପିଲାର ମନରେ ଥିବା ଭାବନା ସହିତ ଏଗୁଡ଼ିକର ସମ୍ପର୍କ ରହିଛି କି ନାହିଁ, ସେମାନେ ଜାଣି ନ ଥାନ୍ତି। କିନ୍ତୁ ସିଲ୍‌ଭିଆ ତାଙ୍କର ପ୍ରଣାଳୀ ଅନୁସାରେ ପ୍ରତିଦିନ ପ୍ରତ୍ୟେକ ପିଲାକୁ ତା' କାର୍ଡ଼ରେ କି ପଦ ଲେଖିବେ, ତାହା ପଚାରି ବୁଝୁଥିଲେ। ଏଇ ପଦଗୁଡ଼ିକର ପିଲାର ମନର ଆଖିରୁ (ମନଶ୍ଚକ୍ଷୁ) ତା' ନିଜ ରଚି ଓ ଅବସ୍ଥା ସହିତ ମେଳ ଖାଉଥିବା ପଦ ଥିଲା। ତା' ନିଜ ଘରେ ମାଆ ଓ ବାପାଙ୍କ ସହିତ ଘଟୁଥିବା ଘଟଣା ତଥା ତା' ମନର ଭାବନାର କଥା ଥିଲା। ଏଗୁଡ଼ିକ ଆନନ୍ଦରେ ହେଉ କି ଦୁଃଖର ହେଉ ପଛେ, ଏଇପରି ବଛାଯାଉଥିବା ପଦଗୁଡ଼ିକ ସବୁବେଳେ ପଢ଼ା ଯାଉଥିଲା। ଫଳରେ ପିଲା ସହଜରେ ମନେ ରଖୁଥିଲେ। ଆହୁରି ମଧ୍ୟ ପିଲାର ଅନୁଭୂତିକୁ ଜାଣିବାରେ ଏଇ ପଦଗୁଡ଼ିକ ସାହାଯ୍ୟ କରୁଥିଲା। ସେ ଭିତରେ 'ଭୟ' ଆଉ 'ଯୌନ' ବିଶେଷ ଭାବେ ରହିଥିବା ସେ ଲକ୍ଷ୍ୟ କରିଥିଲେ। 'ଭୂତ' ଓ 'ଚୁମା'

ପଦ ଅନେକଥର ଆସୁଥିଲା । 'ମାତାଲ' ପଦ ଅନେକ ସମୟରେ ପରିବାରର ସ୍ୱଭାବଗତ ଅବସ୍ଥାକୁ ସୂଚାଉଥିଲା । ଏଇ ପଦଗୁଡ଼ିକର ସଂଖ୍ୟା ବଢ଼ି ଉଠୁଥିବାରୁ ବାକ୍ୟ ଗଢ଼ିବା ସହଜ ଥିଲା ଏବଂ ଲେଖିବା ଆରମ୍ଭ ହେଉଥିଲା । ବାହାରୁ ପଢ଼ିବାପାଇଁ ଲଦି ଦିଆଗଲେ ତାହା ଗଠନମୂଳକ ହୁଏ ନାହିଁ ବୋଲି ସେ ଭାବୁଥିଲେ । ତାଙ୍କ ମତରେ ପିଲାର ବ୍ୟକ୍ତିତ୍ୱ ଗଠନରେ ଏ ପ୍ରକାର ପଦଶିକ୍ଷା ପ୍ରତିକୂଳ ପ୍ରଭାବ ପକାଏ । ସୁସଂହତ ବ୍ୟକ୍ତିତ୍ୱ ଗଠନରେ ତା' ମନ ସହ ମେଳ ଖାଉଥିବା ପଦ ସହାୟକ ହୁଏ ଏବଂ ସବୁ କିଛି ଗଢ଼ି ଉଠେ । ଆମେ କିନ୍ତୁ ଭିତରୁ ବାହାରକୁ ପ୍ରକାଶ ପାଇବାର ଏଇ ସରଳ, ସୁନ୍ଦର ପ୍ରକ୍ରିୟାଟିକୁ ହରେଇ ଦେଇଛୁ । ପିଲାଟିଏ ଯେ କୌଣସି ସଂପ୍ରଦାୟର ହେଉନା କାହିଁକି, ଭିତରୁ ବାହାରକୁ ପ୍ରକାଶିତ ହେବାରେ ତା'ପାଇଁ ଏକ ସାଧାରଣ ମାଧ୍ୟମ ବା ସେତୁ ( Bridge) ରହିଛି । ମଣିଷର ମାନସିକ ପ୍ରକ୍ରିୟା ଏଇ ବାଟରେ ଅଧିକ ସମୟ କାମ କରିଥାଏ । ଭିତରୁ ବାହାରକୁ ପ୍ରକାଶ ପାଇବାରେ ନିଜ ପଦଗୁଡ଼ିକ ସୁନ୍ଦର ସେତୁ ଭାବେ ସାହାଯ୍ୟ କରେ । ଆଉ ଏଇଟା ହିଁ ରଚନାତ୍ମକ ଶିକ୍ଷାପଦ୍ଧତି । ଏହାର ଅଭାବରେ ଆମେ ଛାଞ୍ଚରେ ଗଢ଼ା ହେଲା ପରି ଏକାପ୍ରକାରର ମନ ପାଇଥାଉ । ସେ ଏଇ ମାନସିକତା ନିଉଜିଲାଣ୍ଡ ଓ ଆମେରିକାରେ ବହୁଳ ଭାବରେ ଦେଖି ପାରିଛନ୍ତି । ତାଙ୍କର ମାଓରି ପାଠ୍ୟ ପୁସ୍ତକଗୁଡ଼ିକୁ ସରକାରଙ୍କ ଦ୍ୱାରା ଗୃହୀତ ଓ ପ୍ରକାଶିତ କରିବା ପାଇଁ ସେ କରିଥିବା ଯୋଜନା ସଫଳ ହୋଇନଥିଲା । ଅବାସ୍ତବ ହେଲେ ହେଁ ଏବେ ବି ସେହି ପାଠ୍ୟ ବହି 'ଜେନେଟ୍ ଏଣ୍ଡ ଜନ୍' ପଢ଼ା ଚାଲିଛି ଏବଂ ଉଭୟ ସଂପ୍ରଦାୟର ଛୁଆମାନଙ୍କୁ ସହଜ ଆତ୍ମପ୍ରକାଶରେ ବାଧା ଦେଇ ସନ୍ତୁଳିତ କରୁଛି ।

ତାଙ୍କର ଶିଶୁଶ୍ରେଣୀ ପରି ତାଙ୍କର ପୁସ୍ତକ ମଧ୍ୟ ଆବେଗପୂର୍ଣ୍ଣ ଓ ବହୁବିଧ ଭାବଧାରାରେ ବିଚ୍ଛିନ୍ନ ଘଟଣା କ୍ରମରେ ସେ ଦେଇଥିବା ମନ୍ତବ୍ୟଗୁଡ଼ିକ ମଧ୍ୟ ବିଷୟଗତ ଭାବେ ଅନ୍ତର ଭେଦ କରିଥାଏ । ଉଦାହରଣ ସ୍ୱରୂପ, ପିଲାଏ ବ୍ୟବହାର କରୁଥିବା କଳାପଟା ଓ ଚକ୍, ତାଙ୍କର ଚିତ୍ର ଓ ଲେଖାଲେଖି ସବୁକୁ ଅଧିକ ଦିନ ରଖିବା ପାଇଁ ସେ ଯେପରି ଯୁକ୍ତି ବାଢ଼ିଛନ୍ତି, ଠିକ୍ ସେପରି ଶ୍ରେଣୀର ଦରକାରୀ ଓ ବହୁଯତ୍ନରେ ତିଆରି ବିପୁଳ ପାଠ୍ୟ ଉପକରଣ ସବୁକୁ ଜମା କରି ରଖିବାକୁ ମଧ୍ୟ ବିରୋଧ କରିଛନ୍ତି । ସେ ସବୁକୁ ନଷ୍ଟ କରି ପୁଣି ନୂଆ କରି ତିଆରି କରିବାକୁ ପରାମର୍ଶ ଦେଇଛନ୍ତି ।

କେବଳ ଶୃଙ୍ଖଳା ଜ୍ଞାନ ଅର୍ଜନ କରିବା ଅପେକ୍ଷା ବଂଚିଲା ପରି ବଂଚିବାର ଶିଖିବାଟା ନିଶ୍ଚୟ ଅଧିକ ଗୁରୁତ୍ୱପୂର୍ଣ୍ଣ ।

ସାର୍ ହର୍‌ବର୍ଟ ରିଡ୍‌ଙ୍କ ମୁଖବନ୍ଧ ଅନୁସାରେ, ସେ ସିଲ୍‌ଭିଆ ଏଷ୍ଟନ୍-ଓ୍ୱାର୍ଣ୍ଣର୍‌ଙ୍କ ସହିତ ସଂପୂର୍ଣ୍ଣ ଏକମତ । ସେ କହିଛନ୍ତି ଯେ ଜଣେ ପିଲାର ମାନସିକତାକୁ ଯୁଦ୍ଧ କିମ୍ବା ଶାନ୍ତି ଦ୍ୱାରା ଅନୁପ୍ରାଣିତ କରି ଗଢ଼ିବାରେ ତାଙ୍କ ଶିକ୍ଷା ପଦ୍ଧତି ଗଭୀର ପ୍ରଭାବ ପକାଇବ । ବର୍ଟ୍ରାଣ୍ଡ ରସେଲ୍ ମଧ୍ୟ ଏକମତ ହୋଇଛନ୍ତି ଯେ, ପିଲାଏ ଆନନ୍ଦପୂର୍ଣ୍ଣ କାର୍ଯ୍ୟ ଓ ଖୋଲା ମନ ନେଇ ସ୍ୱାଧୀନ ଭାବେ ଶିକ୍ଷା ଲାଭ କଲେ ସଫଳତା ଲାଭ କରିବେ । ସେ ଆଶା କରନ୍ତି ଯେ, "ଆମ ସମାଜର ଯୁଦ୍ଧଖୋର ପ୍ରବୃତ୍ତି, ଅତ୍ୟାଚାର, ଅର୍ଥନୀତିକ ଅନ୍ୟାୟ, ସ୍ୱାଧୀନ ମତ ବ୍ୟକ୍ତ କରିବାରେ ଭୟ, ସତ୍ୟ ସନ୍ଧାନରେ କୁଣ୍ଠା ଏବଂ ଅନ୍ଧବିଶ୍ୱାସ ଭରା ନୈତିକତା ବିରୁଦ୍ଧରେ ଆବେଗପୂର୍ଣ୍ଣ ଭାବେ ସ୍ୱର ଉତ୍ତୋଳନ କରିବାରେ" ଏ ପଦ୍ଧତିରେ ଶିକ୍ଷା ଲାଭ କରିଥିବା ଲୋକେ ଅଗ୍ରସର ହେବ ।

ଉପରୋକ୍ତ ଦୁଇ ଜଣ ପ୍ରଖ୍ୟାତ ସମର୍ଥକଙ୍କ ଭାଷା ସେମାନଙ୍କର ହୃଦୟର ଆବେଗ ଓ ବୌଦ୍ଧିକ ଚେତନାର ଉଛୁଳି ଉଠିଛି । ମୋ ବିଚାରରେ, ସିଲ୍‌ଭିଆ ଏଷ୍ଟନ୍-ଓ୍ୱାର୍ଣ୍ଣର ଆଉ ମୁଁ- ଉଭୟେ ଜୀବଜଗତର ବହୁ ଶ୍ରେଣୀୟ ପ୍ରାଣୀଙ୍କ ସେପରି କିଛି ଆଦିମ ତଥା ମୌଳିକ ପ୍ରବୃତ୍ତି ଦ୍ୱାରା ପରିଚାଳିତ- ଯେଉଁ ପ୍ରବୃତ୍ତି ଯୋଗୁଁ ମାତୃତ୍ୱର ସୃଜନାତ୍ମକ କାର୍ଯ୍ୟ- ସାଧିତ ହୁଏ- ଜନ୍ମଦାତ୍ରୀ ତା' ଶିଶୁ ବଂଶଧରର ସହଜ ବିକାଶ ଓ ଉନ୍ନତି ପାଇଁ ଲାଳନପାଳନ କରିଥାଏ । ଆମେ ଉଭୟେ ବିଚଳିତ ହୋଇ ଉଠିଛୁ- ଅତି ଅପରିପକ୍ୱ ଅବସ୍ଥାରୁ ବାହ୍ୟ ଶୃଙ୍ଖଳାର ବୌଦ୍ଧିକ ଚାପ ଦ୍ୱାରା ଶିଶୁର ସହଜ ସରଳ ରଚନାତ୍ମକ ବିକାଶକୁ ପ୍ରତିହତ କରାଯାଉଥିବାକୁ ଲକ୍ଷ୍ୟ କରି । ଆମର ଏଇ ପର୍ଯ୍ୟବେକ୍ଷଣ ବୁଦ୍ଧି (ମେଧା) ବିରୁଦ୍ଧରେ ଆକ୍ରମଣ ନୁହେଁ- ବରଂ ତା'ର ଅପ-ବ୍ୟବହାର ବିରୁଦ୍ଧରେ । ମଣିଷ (ତଥାକଥିତ ସଭ୍ୟ ମଣିଷ) ଯେପରି ଦୃଢ଼- ପ୍ରତିଜ୍ଞ ହୋଇ ଉଠିଛି ତା'ର ଜୈବିକ ପ୍ରବୃତ୍ତିର ବଂଧନରୁ ମୁକ୍ତ କରିବାକୁ ଏବଂ ସେଇ ମୌଳିକ ପ୍ରବୃତ୍ତିଗୁଡ଼ିକର ବିପରୀତ-ଧର୍ମୀ ସାଧନରେ ବ୍ରତୀ ହୋଇ ସେଇ ଜୈବିକ ଧର୍ମରୁ ନିଜକୁ ଦୂରରୁ ଦୂରତର କରିବାକୁ । (ପୁରୁଷପ୍ରଧାନ ସମାଜରେ ପୁରୁଷ ପ୍ରତି ଏହା ପ୍ରଯୁଜ୍ୟ । ତେବେ ନାରୀ ମଧ୍ୟ ସହମତ ହୋଇ କିମ୍ବା ବାଧ୍ୟ ହୋଇ ସେଇ ପନ୍ଥାରେ

ପରିଚାଳିତ ।) ଜୈବିକ ଚେତନାର ମାଧମ-ଦେହଠାରୁ ଦୁର୍ଭାଗ୍ୟବଶତଃ ମଣିଷ ଯେତେବେଳେ ପଳାୟନ କରିଛି, ସେତେବେଳେ ତା' ଭିତରେ ଅନ୍ତର୍ଦ୍ୱନ୍ଦ ସୃଷ୍ଟି ହୋଇଛି । ଫଳରେ ତା' ନିଜ ମଣିଷ ପ୍ରଜାତି ମଧ୍ୟରେ ମଧ୍ୟ ସେଇ ଦ୍ୱନ୍ଦ ବଢ଼ିଉଠିଛି । ଅଥଚ ମଣିଷ ସହିତ ଏଇ ପୃଥିବୀରେ ବାସ କରୁଥିବା ବହୁ ଶ୍ରେଣୀର ଜୀବ ତାଙ୍କର ତୀବ୍ର ପ୍ରବୃତ୍ତିଜନିତ ଆଲୋଡ଼ନ ସତ୍ତ୍ୱେ ଏ ଭୁଲ କରନ୍ତି ନାହିଁ । ବିଶେଷ ଭାବେ ଦୁଃଖଦାୟକ ହେଉଛି ଯେ ମଣିଷ ତାହାର ସୃଜନାତ୍ମକ ପ୍ରବୃତ୍ତିଜନିତ ମମତା ନେଇ ଯେପରି ନିଜର ବଂଶଧରମାନଙ୍କ ଲାଳନ ପାଳନ କରିବା କଥା, ସେପରି କରୁ ନାହିଁ !! ଜୈବିକ ପ୍ରବୃତ୍ତିର ସାଧାରଣ ଚରନାତ୍ମକ ପ୍ରତିପାଳନରେ ଜୀବଜଗତରୁ ସେ ନିଜକୁ ଅଲଗା କରିନେଇଛି ।

ଆମର ଜୈବିକ ପ୍ରକୃତି ସବୁ କିଛି ଦୁଃଖର କାରଣକୁ ଠଉରେଇ ପାରେ ଏବଂ ସବୁବେଳେ ସଠିକ୍ ଭାବେ ଆମକୁ ସଚେତନ କରିଦେଉଥାଏ । ଅନ୍ୟ ଦିଗରୁ ଦେଖିଲେ, ଆମର ସବୁ ହିତକର ଗୁଣଧର୍ମ ଏଇ ଜୈବିକ ପ୍ରକୃତିରୁ ହିଁ ଆମକୁ ମିଳିଛି । ପରୋପକାର, ସାମାଜିକ ନିବନ୍ଧନ ତଥା ନାନା ଗଠନାତ୍ମକ ମନୋବୃତ୍ତି ଏଇ ପ୍ରବୃତ୍ତିରୁ ଜାତ ହୋଇଛି । ଅଧିକନ୍ତୁ ସେଥିରେ କୌଣସି ଧ୍ୱଂସାତ୍ମକ ଚେତନା ନଥାଏ । ସିଲ୍‌ଭିଆ ଏଷ୍ଟନ୍-ଓ୍ୱାର୍ଣର୍ ମଣିଷକୁ ସେପରି ଶିକ୍ଷା ଦେବାକୁ ଚାହାନ୍ତି, ଯାହାଦ୍ୱାରା ମଣିଷ ଯନ୍ତ୍ର-ମାନବ (Robots)ନ ହୋଇ ରଚନାତ୍ମକ ଭାବେ ପରସ୍ପରର ସହଯୋଗୀ ହୋଇ ଗଢ଼ିଉଠିବ । ଯେଉଁଲୋକେ ତାଙ୍କର ଏଇ ଲକ୍ଷ୍ୟ ଓ ସିଦ୍ଧାନ୍ତକୁ ଅନୁଭବ କରିପାରନ୍ତି, ସେମାନେ ନିଶ୍ଚିତ ଭାବେ ଏହାର ଦର୍ଶନ-ତତ୍ତ୍ୱ ବୁଝିପାରୁଥିବେ ଯେ : ଏଇ ପୃଥିବୀ ସବୁ ଜୀବଜନ୍ତୁଙ୍କ ସହିତ ମଣିଷ ପାଇଁ ଯୋଗେଇଦେଇଛି ରହିବାପାଇଁ ଘର ଆଉ ବଞ୍ଚିବାପାଇଁ ଉପାୟ- ସବୁରି ପାଇଁ ।

ଡୋରା ରସେଲ୍

(କର୍ଣ୍ଣଓ୍ୱାଲ୍, ୧୯୮୦)

# ଭୂମିକା

ଏହା ଏକ ଗୁରୁତ୍ୱପୂର୍ଣ୍ଣ ପୁସ୍ତକ-ଇତିହାସର ବର୍ତ୍ତମାନ ସମୟରେ ଗୁରୁତ୍ୱ ଲାଭ କରିଥିବା ଯେ କୌଣସି ପୁସ୍ତକ ପରି ଏହା ଗୁରୁତ୍ୱପୂର୍ଣ୍ଣ । ସୁଶ୍ରୀ ଏଷ୍ଟନ୍-ୱାର୍ଣର୍ ବିଶ୍ୱାସ କରନ୍ତି ଯେ, ସେ ସନ୍ଧାନ ପାଇଥିବା ଶିକ୍ଷା ପଦ୍ଧତି ଦ୍ୱାରା ମଣିଷ ପ୍ରାକୃତିକ ତଥା ସ୍ୱତଃସ୍ଫୂର୍ତ୍ତ ଭାବରେ ବିକାଶ ଲାଭ କରି ଶାନ୍ତିକାମୀ ହେବ । 'ଆକ୍ରମଣ କରିବା' ହେଉଛି ମଣିଷ ଏକ ''ପ୍ରବୃତ୍ତି'' । ଏହା ବିନା ଯୁଦ୍ଧ କରିବା କିମ୍ବା କରେଇବା ସମ୍ଭବ ନୁହେଁ । ଶିଶୁର ସହଜାତ ପ୍ରବୃତ୍ତି- ଗୌରବ ଏବଂ ଯୌନ ଲିପ୍ସା ଉଚିତ ମାର୍ଗରେ ପରିଚାଳିତ ନ ହେଲେ ମାନସିକ କିମ୍ବା ଆବେଗ ସ୍ତରରେ ଏହା ପ୍ରତିକ୍ରିୟା ସୃଷ୍ଟି କରେ । ଏହାକୁ ଆମେ ଆକ୍ରମଣାତ୍ମକ କିମ୍ବା ଯୁଦ୍ଧ କରିବା ପ୍ରବୃତ୍ତି ବୋଲି କହିଥାଉଁ । ସମଗ୍ର ପୃଥିବୀରେ ସାଧାରଣତଃ ଯେଉଁ ଶିକ୍ଷାପଦ୍ଧତି ଅନୁସରଣ କରାଯାଉଛି, ସେଥିରେ ଏଇ ମୁଖ୍ୟ ବିଭାବଗୁଡ଼ିକ ପ୍ରତି ଅବହେଳା ପ୍ରଦର୍ଶନ କରାଯାଇଛି । ଶିଶୁର ପ୍ରବୃତ୍ତିକୁ ସ୍ୱୀକାର କରି ଏବଂ ଆବଶ୍ୟକ ସ୍ଥଳେ ସ୍ୱାଗତ ଜଣେଇ ତାହାକୁ ଶିକ୍ଷାଦାନରେ ମୂଳଦୂଆ ରୂପେ ବ୍ୟବହାର କରିବା ହେଉଛି ରଚନାତ୍ମକ ବା ସୃଜନାତ୍ମକ (Organic) ଶିକ୍ଷା ପଦ୍ଧତି । ଏଥିରେ ସହଜାତ ପ୍ରବୃତ୍ତି ପ୍ରକାଶକୁ ଅନୁମତି ଦିଆଯାଏ ଏବଂ ସେହି ସମୟରେ ତାହାକୁ ରଚନାତ୍ମକ (ଗଠନମୂଳକ) ଭାବେ ନିୟନ୍ତ୍ରଣ କରି ଗଠନମୂଳକ କାମରେ ଉତ୍ସାହିତ କଲେ ତାହା ଆନନ୍ଦଦାୟକ ତଥା ସହଯୋଗମୂଳକ କାର୍ଯ୍ୟରେ ପ୍ରକାଶିତ ହୁଏ । ଧ୍ୱଂସାତ୍ମକ ଓ ଗଠନାତ୍ମକ ମନୋବୃତ୍ତି ମାନସିକ ଶକ୍ତିର ଦୁଇଟି ପରସ୍ପର ବିରୋଧି ପରିପ୍ରକାଶ । କିଛି ସୃଷ୍ଟି କରିବା ଅର୍ଥ ହେଉଛି କିଛି ଗଢ଼ିବା ଏବଂ ମିଳିମିଶି ଗଢ଼ିବା କାମ ହେଉଛି ଶାନ୍ତିପୂର୍ଣ୍ଣ ସାମାଜିକତାର ମୂଳଦୂଆ ।

ଆମ ସମାଜର ସବୁ କିଛି ରୋଗ (କୁସଂସ୍କାର ଆଦି ଅମଣିଷ ମାନସିକତା)ର କାରଣ ଅନୁଧ୍ୟାନ କଲେ, ରଚନାତ୍ମକ ପଦ୍ଧତି ନୂଆ ବୋଲି ମନେ ହୁଏ ନାହିଁ । ଫ୍ରଏେଡ୍ (Freud) ଓ ଜୁଙ୍ଗ୍ (Jung)ଙ୍କ ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ ଏ ଚିନ୍ତାଧାରା ନିହିତ ଅଛି ଏବଂ ତାଙ୍କର ଅନୁଗାମୀମାନେ ବହୁ ପରୀକ୍ଷା ନିରୀକ୍ଷା କରି ଯେତେ ସବୁ ପ୍ରମାଣ ଉପସ୍ଥାପିତ କରିଛନ୍ତି, ସେ ସବୁକୁ

ଆମ ସଭ୍ୟତା ଅକାଟ୍ୟ ଯୁକ୍ତିସମ୍ମତ ବୋଲି ବାନିବାକୁ ବାଧ୍ୟ । କିନ୍ତୁ ସମଗ୍ର ମାନବ ସମାଜକୁ ଏଇ ରୁଗ୍‌ଣ ମାନସିକତାରୁ ମୁକ୍ତ କରିବାପାଇଁ ଆମେ କିପରି କାମ ଆରମ୍ଭ କରିବା ? ଏଇ ପୁସ୍ତିକାର ଲେଖିକା ତା'ର ଉତ୍ତର ଦେଇଛନ୍ତି, 'ଶିଶୁ ଶ୍ରେଣୀରୁ ଆରମ୍ଭ କରନ୍ତୁ ।' (ମୁଁ ବରଂ କହିବି, ଆହୁରି ଆଗରୁ ଆରମ୍ଭ କରନ୍ତୁ - ଶିଶୁର ମନ କୌଣସି ଭାବଧାରାରେ ଆବଦ୍ଧ ହେବା ଆଗରୁ ଏବଂ ତରଳ ଥିବା ଅବସ୍ଥାରୁ ଆରମ୍ଭ ହେବା ଦରକାର; ନଚେତ୍ ବିଳମ୍ବ ଯୋଗୁଁ ନେଡ଼ି ଗୁଡ଼ କହୁଣୀକୁ ବୋହି ଯାଇଥିବ ।)

ରଚନାତ୍ମକ ଶିକ୍ଷାପଦ୍ଧତିରେ ଶିକ୍ଷା ଦେବାପାଇଁ ଅନେକ ପ୍ରଣାଳୀ ରହିଛି । କିନ୍ତୁ କାର୍ଯ୍ୟତଃ ସେ ସବୁ ବିଫଳ ହୋଇଛି । କାରଣ : ସେ ସବୁ ବିଶେଷ ଭାବେ ଉଦ୍ଦେଶ୍ୟମୂଳକ ଏବଂ ଅତିରିକ୍ତ ଭାବରେ ଆତ୍ମ-କୈନ୍ଦ୍ରିକ ପ୍ରଣାଳୀରେ ପ୍ରୟୋଗ କରାଯାଇଛି । (ଆତ୍ମ-କୈନ୍ଦ୍ରିକର ଏଇ 'ଆତ୍ମ' ହେଉଛନ୍ତି ଶିକ୍ଷକ ।) ସୁଶ୍ରୀ ଏଷ୍ଟନ୍-ୱାର୍ଣର ବୁଝିପାରିଛନ୍ତି ଯେ, ଶିକ୍ଷାଦାନ ହେଉଛି ଏକ ରଚନାତ୍ମକ ପ୍ରକ୍ରିୟା । ସେ ଶିକ୍ଷକଙ୍କର ଆଚାର- ବ୍ୟବହାରର ଢାଞ୍ଚା ସ୍ଥିର କରିଛନ୍ତି ଏବଂ କାର୍ଯ୍ୟକ୍ଷେତ୍ରରେ ସଫଳ ଶିକ୍ଷାଦାନ ପ୍ରଣାଳୀ ପ୍ରଦର୍ଶନ କରିଛନ୍ତି । ଶିକ୍ଷକଙ୍କ ନିକଟରେ 'ନକାରାତ୍ମକ' ଭାବଧାରା ଥିବା ଉଚିତ୍, ନଚେତ୍ ତାହା ସେ ନିଜେ ଶିଖି ନେବା ଦରକାର । ଏଇ ଚେତନା କବି ପାଇଁ ଦରକାର ବୋଲି କିଟ୍‌ସ୍ (Keats)କହିଛନ୍ତି । ଶିଶୁଶ୍ରେଣୀରେ ଶିକ୍ଷକ/ଶିକ୍ଷୟିତ୍ରୀ ପ୍ରତି ପିଲାର ନିଜ ଭିତରର ଚେତନାକୁ କେବଳ ଜାଗ୍ରତ କରିବା ପାଇଁ ରହିଥାନ୍ତି । କାର୍ଯ୍ୟ କ୍ଷେତ୍ରରେ ଏଥିପାଇଁ ତାଙ୍କର ଯଥେଷ୍ଟ ଧୈର୍ଯ୍ୟ ଓ ଜ୍ଞାନ ଥିବା ଦରକାର । ତାଙ୍କୁ ଶୁଣିବାକୁ ହେବ, ଲକ୍ଷ୍ୟ କରିବାକୁ ହେବ ଏବଂ ଅପେକ୍ଷା କରିବାକୁ ପଡ଼ିବ- ସେତେବେଳ ପର୍ଯ୍ୟନ୍ତ- ଯେତେବେଳେ ପ୍ରତିଟି ବ୍ୟକ୍ତିଗତ ଭାବଧାରା ଭିତରୁ ବାହାରି ପ୍ରକାଶ ପାଇବ । ପ୍ରଥମ ଅବସ୍ଥାରେ ଏଇ ଚିନ୍ତାଧାରା କୁଟିଳ ହୋଇ ଥାଇପାରେ । କାରଣ ସ୍ୱାଭାବିକ ଭାବରେ ଶିଶୁ ତା'ର ପିତା- ମାତାଙ୍କ ଶାରୀରିକ ଗୁଣଧର୍ମ ଗ୍ରହଣ କରି ପ୍ରଥମ କେତୋଟି ବର୍ଷରେ ଅପରାଧ ପ୍ରବଣତା ପ୍ରକାଶ କରିପାରେ । କିନ୍ତୁ ଅବଚେତନ ମନର ଏଇ ତୀବ୍ରତାରୁ ଶିଶୁଟିର ମାନସିକ ଶକ୍ତି ଓ ଆଗ୍ରହର ଗଭୀରତା ଜାଣି ହୁଏ । କିନ୍ତୁ ସେଇ ସକ୍ରିୟ ଭାବଧାରା ଉପରେ ନିର୍ଭର କରି ସଚେତନ ଭାବରେ ଶିକ୍ଷା ଦେଲେ ଶିଶୁ ପକ୍ଷରେ ଶିକ୍ଷା ଲାଭ କରିବା ସହଜ ହୋଇଉଠେ । ପ୍ରକୃତରେ

ଶିଶୁର ଅପ୍ରକାଶିତ ଭାବଧାରା ପ୍ରକାଶିତ ହୋଇ ତା'ର ବ୍ୟକ୍ତିତ୍ୱ ଗଠନରେ ସାହାଯ୍ୟ କରେ, ଶିକ୍ଷା ଦ୍ୱାରା ତା'ର ନିଜସ୍ୱ ଭାବଧାରା ବ୍ୟକ୍ତିତ୍ୱରେ ମିଶିଯାଏ । ଲେଖିକାଙ୍କ ମତରେ ଏହା 'ଭୌତିକ ଶାସ୍ତ୍ରର ଏକ ସିଦ୍ଧାନ୍ତ' ଏବଂ ଅପରିହାର୍ଯ୍ୟ ।

ଏସବୁ ଦୃଷ୍ଟିରୁ ଶିକ୍ଷକଙ୍କ କର୍ତ୍ତବ୍ୟ ହେଉଛି, ଶିଶୁର ଶକ୍ତି ଯେପରି ସ୍ୱାଭାବିକ ଭାବେ ସୃଜନାତ୍ମକ କାର୍ଯ୍ୟକଳାପରେ ନିୟୋଜିତ ହୁଏ- ତାହାର ବ୍ୟବସ୍ଥା କରିବା । ଏଇଟା ଅବଶ୍ୟ ନୂଆ ଚିନ୍ତାଧାରା ନୁହେଁ । କିନ୍ତୁ ମଣିଷ ସମାଜ ଏଇ ଅନ୍ତର୍ଦୃଷ୍ଟି ପ୍ରୟୋଗ କରି ଶିକ୍ଷାଦାନ ଦେବାରେ କେବେହେଲେ ଗୁରୁତ୍ୱ ଦେଇନାହିଁ, କିମ୍ବା ଲକ୍ଷ୍ୟ ସାଧନ ପାଇଁ ବୁଦ୍ଧି ଖଟେଇ ନାହିଁ । ତାହାର ପ୍ରୟୋଗ କରାଯାଇ ପାରିବ । ଏଇ ପୁସ୍ତକରେ ତାହା କିପରି ପାହାଚ ପରେ ପାହାଚ ଚଢ଼ିଲା ପରି ଏକ ନିର୍ଦ୍ଦିଷ୍ଟ ସଂପ୍ରଦାୟ ପ୍ରତି ସଫଳ ଭାବେ ପ୍ରୟୋଗ କରାଯାଇଛି, ତାହା ପ୍ରଦର୍ଶିତ ହୋଇଛି ।

ସୁଶ୍ରୀ ସିଲ୍‌ଭିଆ ଏଷ୍ଟନ-ୱ୍ୱାର୍ଣର ପାଠ ପଢ଼େଇଥିବା ମାଓରି ପିଲାମାନଙ୍କ ଭିତରୁ କାହାରିକୁ ଭେଟିବାର ସୌଭାଗ୍ୟ ମୋତେ ମିଳିନାହିଁ । କିନ୍ତୁ ଏଇ ପୁସ୍ତକର ଦ୍ୱିତୀୟ ଭାବରେ ସେ ଦେଇଥିବା ସେ କାହାଣୀଗୁଡ଼ିକ ଆମ ଆଗରେ ତାହାର ଏକ ବିସ୍ତୃତ ଚିତ୍ର ସ୍ପଷ୍ଟ ଭାବରେ ଉପସ୍ଥାପିତ କରିଛି । ଲେଖିକାଙ୍କ ପାଖରେ ବର୍ଣନା ଶୈଳୀର ଏକ ଚମତ୍କାର କଳା ରହିଛି । ଏହାର ପ୍ରମାଣ ସେ ତାଙ୍କର ସଫଳ ଉପନ୍ୟାସ ସ୍ପିନ୍‌ଷ୍ଟେର୍ (Spinster ଅବିବାହିତା)ରେ ଆଗରୁ ଦେଇଛନ୍ତି । ସେଇ ଚମତ୍କାର ଶୈଳୀର ଉଦାହରଣ ଏଇ ପୁସ୍ତକରେ ମଧ୍ୟ ରହିଛି । କିନ୍ତୁ....

କିନ୍ତୁ, ତାଙ୍କର ବିବରଣୀ ସତ୍ୟ ଘଟଣାରେ ପୂର୍ଣ, ହୋଇ ରହିଛି । ଏଇ ନୂଆ ପୁସ୍ତକଟି କେବଳ ଶିକ୍ଷା- ତତ୍ତ୍ୱ ସମ୍ବଳିତ ଏକ ପ୍ରବନ୍ଧ ନୁହେଁ, ବରଂ ସମାଜ- ତତ୍ତ୍ୱର ଏକ ନିର୍ଦ୍ଦେଶାବଳୀ । କହିବା ବାହୁଲ୍ୟ, ଏହା ପ୍ରାଣ ପ୍ରାଚୁର୍ଯ୍ୟଭରା ଏବଂ ଏହାର ସକ୍ରିୟ ଚିନ୍ତାଧାରା ସର୍ବତ୍ର ଶିକ୍ଷାଦାନରେ ବିଶେଷ ଉପକାର ଦେଇ ପାରିବ । ମୁଁ 'ଶିକ୍ଷା' (Education) ବଦଳରେ 'ଶିକ୍ଷା-ଦାନ'(Teaching) ଶବ୍ଦ ବ୍ୟବହାର କରିଛି । କାରଣ ଅନେକ ଦିନ ଆଗରୁ 'ଶିକ୍ଷା' ତା'ର ପ୍ରକୃତ ଅର୍ଥ ହରେଇ ବସିଛି । (ତାହା ପ୍ରକୃତରେ ସୁଶ୍ରୀ ଏଷ୍ଟନ୍-ୱ୍ୱାର୍ଣର୍‌ଙ୍କ ପ୍ରାମାଣିକ ଯୁକ୍ତି ଅନୁସାରେ ଅନ୍ୟ ଜଣଙ୍କ ମନ ଭିତରୁ ତା'ର ଭାବନାକୁ ପଦାକୁ ବାଟ କଢ଼େଇ ଆଣିବା) ବିଦ୍ୟାଳୟ ସେଇ ଲକ୍ଷ୍ୟରେ ଚାଳିତ ହେବା ଦରକାର ।

ଲେଖିକାଙ୍କ ଭାଷାରେ, ''ଏହା ଜୀବନ୍ତମାନଙ୍କର ଏକ ପାଠ, ଯେଉଁଠି ଲୋକମାନଙ୍କୁ ଏବେ ବି ବଦଳେଇ ଦିଆଯାଇପାରିବ ।'' ଏବଂ ସୃଜନାତ୍ମକ (ରଚନାତ୍ମକ) କାର୍ଯ୍ୟକଳାପ ମାଧ୍ୟମରେ ଏ ପରିବର୍ତ୍ତନ ସମ୍ଭବ ହେବ । ଆମେ ଯଦି ମଣିଷ ସମାଜର ଭବିଷ୍ୟତ ଆଶା କରୁଁ, ସେ ଭବିଷ୍ୟତ ଯେ କୌଣସି ଆକାର-ପ୍ରକାରର ହେଉନା କାହିଁକି- *ତାହା ଏଇ ବାଟରେ ହିଁ ହୋଇ ପାରିବ ।* ଏ ସବୁ କାରଣରୁ ମୁଁ କହିବାକୁ ଚାହେଁ ଯେ : ଏ ପୁସ୍ତକଟି ବୃତ୍ତିଗତ କିମ୍ବା ଅନୁଷ୍ଠାନଜନିତ ଆବଶ୍ୟକତା ପୂର୍ଣତଃ ପୂରଣ କରି ନପାରେ; କିନ୍ତୁ ମୌଳିକ ଭାବଧାରା ପାଇଁ ନିଶ୍ଚିତ ଭାବେ ଅତିଶୟ ଗୁରୁତ୍ୱପୂର୍ଣ ପୁସ୍ତକ ହୋଇ ରହିବ । ଅତିରଂଜିତ ନ କରି ଏତିକି କୁହାଯାଇପାରେ ଯେ, ମଣିଷ ସମାଜକୁ ଆତ୍ମହତ୍ୟା (ଆତ୍ମ-ବିଧ୍ୱଂସ)ରୁ ବଞ୍ଚାଇବା ପାଇଁ ଲେଖିକା ଏକ ପନ୍ଥା ଆବିଷ୍କାର କରିଛନ୍ତି । ତାଙ୍କର ପ୍ରଣାଳୀ ସରଳ-ସୁନ୍ଦର ଏବଂ ପ୍ରଚାରହୀନ ଭାବେ ମୌଳିକ ସତ୍ୟ ହୋଇଥିବାରୁ ତାହାକୁ ଏଡ଼ିଦେବା ଅନୁଚିତ । କେବଳ ଶିଶୁମାନଙ୍କ ମାନସିକତା ପ୍ରଭାବରେ ମଣିଷ ସମାଜର ଭାଗ୍ୟରେ ବିଶେଷ ପରିବର୍ତ୍ତନ ଆଣିବା ସମ୍ଭବ ହେବ ।

*ହର୍‌ବର୍ଟ୍ ରିଡ୍*

"କି ଏକ ବିପଦ-ଜନକ କାମ ସତେ ଏଇ ପଢ଼ିବା ! ଆଉ ପଢ଼େଇବା ମଧ୍ୟ ! ଏସବୁ ଖାଲି ଲେସାଲେସି ଆଉ ଲିପା-ପୋଛା- ବାହାରୁ, ଆଉ ବିଦେଶୀ ମାଲ୍ ମସଲାରେ । ଆଗରୁ ଭିତରେ ଯଦି ଏତେ କିଛି ରହିଛି, ତେବେ ଖାଲିଟାରେ ଏ ଲେସାଲେସି କାହିଁକି ? ଏତେ ଗୁଡ଼ାଏ ଭିତରେ ଥିଲାବେଳେ ବାହାରେ ତାଲାପକା କାହିଁକି ? ମୁଁ ଯଦି କେବଳ ଭିତରୁ ସେ ସବୁ ପଦାକୁ ଆଣି ପାରନ୍ତି ! ଆଉ କଞ୍ଚାମାଲ ଓ ମୂଳ ପାଣ୍ଠି ରୂପେ ସେ ସବୁ କାମରେ ଲଗେଇ ପାରନ୍ତି !! ନଚେତ୍ ଆଦୌ ସେ ସବୁ ପଦାକୁ କାଢ଼ନ୍ତି ନାହିଁ । ମୋ ପରଶରେ ଯଦି ସେତିକି ଖାଲି ଥାଆନ୍ତା, ତେବେ ତ ସେ ସବୁ ତା' ନିଜର ଆଗ୍ନେୟ ଉଦ୍‌ଗୀରଣରେ ପଦାକୁ ଉଛୁଳି ଆସନ୍ତା; ଆଉ ମାନସିକ ଶକ୍ତି-ଆଜି ସକାଳେ ଶେଯରେ ବସି ପଢୁଥିଲି- ପୃଥିବୀର ସବୁ ଶକ୍ତିଠାରୁ ଅଧିକ ଶକ୍ତିଶାଳୀ । ଯାହା କିଛି, ସାମାନ୍ୟ ଟିକିଏ ଝରି ଆସୁଛି, ସେତିକି ମଧ୍ୟ ଏବେ ଆଶ୍ଚର୍ଯ୍ୟଜନକ ଭାବେ ପର୍ଯ୍ୟାପ୍ତ-କେଡ଼େ ଉତ୍ତେଜନା-ପୂର୍ଣ୍ଣ ଆଉ ଭୟଙ୍କର ସତେ ତା'ର କାର୍ଯ୍ୟକଳାପ ! ମୋ ଦୃଷ୍ଟି ଶକ୍ତିର ବାହାରେ ମନ ଭିତରେ ବେଶ୍ ଏକ ନିରାପଦ ଜଗତ, ପରିଦର୍ଶକର ଛାଇ ସେ'ଠି ପଡ଼େ ନାହିଁ, - ସେଇଠି ମୋ ଶିଶୁଶ୍ରେଣୀର ଛବି ମୁଁ ଦେଖେ- ସତତ ବର୍ଦ୍ଧନଶୀଳ, ଆଉ ସୃଜନଶୀଳତାର ଗର୍ଜନଶୀଳ ଉଦ୍‌ଗୀରଣ । ସବୁ କିଛି ବିଷୟ କେଜାଣି କିପରି ହୋଇ ଉଠେ ରଚନାତ୍ମକ, ଗଠନ-ମୂଳକ । ସ୍ଥିତି ଆଉ ମତି ଆଉ ଗତିର କି ଏକ ଅପୂର୍ବ ବିସ୍ମୟକର ରୂପାୟନ ! ସେଇ ରେଶମୀ ମେଳ ପଟଳର କି ସହଜ ସୁନ୍ଦର ଚାଲି ଚଳଣି ।

ଏକ ସୃଜନଶୀଳ ରୂପ-ରେଖ । ବଢ଼ି ଚାଲିଥିବା, ଜିଇଁଲା ଭଳି ଜିଇଁଥିବା, ବଦଳି ଚାଲିଥିବା ରୂପ-ରେଖ ! ସୁସ୍ଥ, ସରଳ ଆଉ ସୁନ୍ଦର ରୂପାୟନ । ଉତ୍ତେଜନାହୀନ ଅଥଚ କ୍ଷମାହୀନ, କିନ୍ତୁ ଚମକପ୍ରଦ ଭାବେ ସୌନ୍ଦର୍ଯ୍ୟଶାଳୀ ।"

★ ଏହି ପୃଷ୍ଠାର ଲେଖାଟିକୁ ଲେଖିକାଙ୍କର SPINSTER (ଅବିବାହିତା) ପୁସ୍ତକରୁ ଉଦ୍ଧାର କରାଯାଇଛି । ଶିକ୍ଷାରେ ଆଗ୍ରହୀ ପାଠକ, ଶିକ୍ଷକ ଅଭିଭାବକଙ୍କ ପାଇଁ ଏହା ଏକ ବଳିଷ୍ଠ ଓ ରୋମାଞ୍ଚକାରୀ ଉଦ୍‌ଘୋଷଣା। ଏହାକୁ ବୁଝି ପାରିଲେ ଆମେ ଶିକ୍ଷାର ଅସଲ ମର୍ମଟିକୁ ବୁଝିପାରିବା..........

**ଅନୁବାଦକ**

# ସାତ ବର୍ଷ ପରେ.....

# ଏକ ଉପକ୍ରମଣିକା

ସାତ ବର୍ଷ ପରେ, 'ଶାନ୍ତ ଆଉ ଧୀରସ୍ଥିର ମନରେ ବି' ମୁଁ ସବୁ ମନେ ପକେଇ ପାରୁନି ।

ପଛ କଥାଗୁଡ଼ିକୁ ମନେ ପକେଇଲେ, ମୁଁ ଭାବିଥିଲି, ସେଇ କର୍ମମୁଖର ଆଉ ଆଗ୍ନେୟ ଉଦ୍‌ଗୀରଣ ପରି ଚଇ-ଚଞ୍ଚଳ ଶିଶୁ କର୍ମଶାଳାର ପରିବର୍ଦ୍ଧିତ ରୂପ ମୋ ଆଖି ଆଗରେ ନାଚି ଉଠିବ କିମ୍ୱା ଅପର ପକ୍ଷରେ ନିଜର ସବୁକିଛି ଭୁଲ୍ ଭଟକା ମନେପଡ଼ିଲେ ସବୁ କିଛି କାମକୁ ପୁଣି ପୂରାପୂରି ସୁଧାରି ନେବାର ଇଚ୍ଛା ଜାଗି ଉଠିବ । କିନ୍ତୁ ସେପରି କିଛି ହେଉନି । ମୁଁ ନିଜକୁ ଧୀରସ୍ଥିର ରଖି ପାରୁନି; ତେଣେ ସେଇ କର୍ମକ୍ଷେତ୍ର ବି ମୋର ନାହିଁ । ମୁଁ କେବଳ ପୁଣି ସେଇ ପୁରୁଣା ଉନ୍ମାଦନାରେ ଘାରି ହେଉଛି । ସେଇ ରକତ ମାଉଁସର, ସତ ମଣିଷଙ୍କର ନିତିଦିନିଆ ନାଟକ ଭିତରକୁ ଟାଣି ହୋଇଯାଉଛି । ସେ ଭିତରୁ କେତେ ଏବେ ବଢ଼ି ଉଠିଲେଣି; କେତେ ଛୁଆ ବି ଅଛନ୍ତି ।

ଏଇ ଲେଖା ଭିତରେ ବହୁତ କିଛି ଅକୁହା ରହିଯିବ । ମୁଁ ଶୃଙ୍ଖଳା ବିଷୟ କହୁନି । ମୋଟାମୋଟି ଭାବେ ମନେ ପକେଇ କର୍ମଶାଳାର ବିବରଣୀ ଯାହା ଲେଖୁଛି, ତାହା ପଢ଼ିଲେ ଶିକ୍ଷକ, ଶିକ୍ଷୟିତ୍ରୀଙ୍କ ମନରେ କେବଳ ସନ୍ଦେହ ଜାଗି ଉଠିବ - ଚଲାବୁଲା ଓ କଥାଭାଷାର ସ୍ୱାଧୀନତା ଭିତରେ କୋଳାହଳ ହିଁ ଭରି ଉଠିଥିବ । କିନ୍ତୁ ଏଇ କୋଳାହଳର ମଧ୍ୟ ଉପକାରୀ ପ୍ରଭାବ ରହିଛି । ହେଲେ ଶିକ୍ଷାଦାନରେ ଆମେ ତାହାକୁ କେବେ ପ୍ରଶ୍ରୟ ଦେଇ ନ ଥାନ୍ତି । ଆମେ ସାଧାରଣତଃ ଏଇ ହୋ-ହଲ୍ଲାକୁ ଆମର ନିୟନ୍ତ୍ରଣ-କ୍ଷମତାର ଅଭାବ ବୋଲି ଭାବିଥାନ୍ତି । ପ୍ରଥମେ ମୁଁ ମଧ୍ୟ ଏଇ ଶୃଙ୍ଖଳା ଚାହିଁଥିଲି । ସେ ସମୟରେ ମୋର ଜଣେ ପରିଦର୍ଶକ ତାଙ୍କର ମତ ଦେଇଥିଲେ, "ଆପଣ ଦରକାର ବେଳେ-ନିଜ ପ୍ରତି ପିଲାଙ୍କର ଧ୍ୟାନ ଆକର୍ଷଣ ପାରିବା ହେଉଛି, ଶ୍ରେଣୀର ଶୃଙ୍ଖଳା ।"

ମୁଁ ମଧ୍ୟ ଅନେକ ସମୟରେ ପିଲାଙ୍କ ଧ୍ୟାନ ଆକର୍ଷଣ କରିବାରେ ଲାଗିଥିଲି- ବେଶ୍ ସକ୍ରିୟ ଭାବରେ । ମୁଁ ଗୋଟିଏ ପ୍ରଣାଳୀରେ ପିଲାଙ୍କୁ ଅଭ୍ୟସ୍ତ କରିଥିଲି । ସେ ପ୍ରଣାଳୀଟା ଏକାବେଳକେ ନୂଆ ନୁହେଁ; କିନ୍ତୁ କିଛି ପରିମାଣରେ ଅଲଗା । ଅଧିକାଂଶ ଶିକ୍ଷାଦାତା ପିଲାଙ୍କୁ ଆକର୍ଷଣ କରିବାକୁ କିଛି ନା କିଛି ସରଳ ଉପାୟ ଗ୍ରହଣ କରିଥାନ୍ତି । କେତେ ଜଣ ଘଣ୍ଟି ବଜେଇ, କେତେ ଜଣ ମେଜରେ ବେତ ବାଡ଼େଇ, ଏବଂ ମୋ ବିଚାରରେ, ଅଧିକାଂଶ ନିଜର ଉଚ୍ଚ ସ୍ୱର ଦ୍ୱାରା ପିଲାଙ୍କୁ ନିଜ ଆଡ଼କୁ ଆଣିଥାନ୍ତି । କିନ୍ତୁ ଯେତେବେଳେ ଗୋଟିଏ ଶ୍ରେଣୀରେ ପିଲାଙ୍କୁ ଶିଖିବାକୁ ଏବଂ ବଂଚିବାର ଉପାୟ ଜାଣିବାକୁ ସ୍ୱାଧୀନତା ଦିଆଯାଇଥାଏ, ସେତେବେଳେ ଜଣେ ଭଦ୍ର ଶିକ୍ଷାଦାତାର ସ୍ୱର କେତେ ଉଚ୍ଚ ଓ ତୀକ୍ଷ୍ଣ ହୋଇ ପିଲାଙ୍କୁ ଆକୃଷ୍ଟ କରି ପାରିବ ? ତେଣୁ ଏସବୁ ଭାବିଚିନ୍ତି ମୁଁ ପିଆନୋ ବଜେଇ ପିଲାଙ୍କୁ ଆଗ୍ରହୀ କରୁଥିଲି । ଅତି ଉଚ୍ଚ ରୁକ୍ଷ ସ୍ୱର କିମ୍ବା ଭୟ କଲା ପରି ସ୍ୱର (ବାଜା) ନୁହେଁ, ବରଂ ବିଖ୍ୟାତ ସଙ୍ଗୀତଜ୍ଞ ବିଥୋଭେନ୍‌ଙ୍କ (Beethoven) ପଞ୍ଚମ ବାଦ୍ୟବୃନ୍ଦ (Fifth Symphony) ସ୍ୱରର ପ୍ରଥମ ଆଠଟି ତାଳ ବଜେଇ ପିଲାଙ୍କ ଧ୍ୟାନ ଆକର୍ଷଣ କରୁଥିଲି । ସେହି ପ୍ରଖ୍ୟାତ ସଙ୍ଗୀତଜ୍ଞ ଏଇ ମିଳିତ ସ୍ୱରରେ ହଜାର ହଜାର ଶ୍ରୋତାଙ୍କୁ ମନ୍ତ୍ରମୁଗ୍ଧ କରି ଆକୃଷ୍ଟ କରୁଥିଲେ । ମୁଁ ତ କେବଳ ଅଳ୍ପ କେତେଜଣ ପିଲାଙ୍କ ଧ୍ୟାନ ଚାହୁଁଥିଲି । ସେ ସେଥିରେ ସଫଳ ହୋଇଥିଲେ । ସେଇ ବାଟରେ ମୋତେ ସଫଳତା ମିଳିଥିଲା । ତାହାର କେବଳ ଗୋଟିଏ ଧାଡ଼ି ମୁଁ ବଜେଇଥିଲି । ସେଇ ସ୍ମରଣୀୟ ସ୍ୱର ଲିପିଟି ହେଉଛି :



ମୁଁ ଏଇ ପିଆନୋ ସ୍ୱରରେ ମୋ ଛୋଟ ପିଲାଙ୍କୁ ଅଭ୍ୟସ୍ତ କରି ଦେଇଥିଲି । ସେମାନେ ଯାହା କିଛି କରୁଥିଲେ ମଧ୍ୟ ସବୁ ଛାଡ଼ି ମୋ ଆଡ଼କୁ ଚାହୁଁଥିଲେ । ଆବଶ୍ୟକତା ଦୃଷ୍ଟିରୁ ମୁଁ ପିଲାଙ୍କୁ ଏଇ ଅଭ୍ୟାସରେ ପକେଇଥିଲି । ପରେ ପରେ ମୁଁ ମନୋରଂଜନ ପାଇଁ ପିଆନୋ ବଜେଇଲି । ଆନନ୍ଦ ପାଇଁ । ମୋର ସେଇ କୋଳାହଳପୂର୍ଣ୍ଣ ଶିଶୁ କର୍ମଶାଳାରେ ପିଆନୋର ସେଇ ସ୍ୱର ଲହରୀ ବାଜି ଉଠିବା କ୍ଷଣି ସ୍ତବ୍ଧତା ଆସି ଯାଉଥିଲା । ଏତେ ସବୁ ହୋ-ହଲ୍ଲା

ସଙ୍ଗୀତ ଧ୍ୱନୀରେ କୋଠରୀ ବାହାକୁ ଉଡ଼ି ଯାଉଥିଲା- ସତେ ଯେମିତି ମୁହଁରୁ ସବୁ ରକ୍ତ ନିଗିଡ଼ିଯାଇ ମୁହଁ ଶେତା ପଡ଼ିଯାଏ । କୋଠରୀଟି ନୀରବତାର ନୁହେଁ, ସ୍ତବ୍ଧତାରେ ଭରି ଉଠୁଥିଲା : ପ୍ରତ୍ୟେକଟି ଆଖି ମୋତେଇ ଅନେଇ ରହୁଥିଲା, ପ୍ରତିଟି ହାତ କାମ ପାଇଁ ମୋ ଠାରୁ ସଂକେତ ପାଇବାକୁ ତିଆର ହୋଇ ରହୁଥିଲା- ସଙ୍ଗୀତର ସେଇ ସ୍ୱର-ଲହରୀରୁ ଚରମ ନୀରବ-ନିସ୍ତବ୍ଧ ପରିବେଶ । ମୋର ସେଇ କେତୋଟି ବର୍ଷର ଗୁରୁତ୍ୱପୂର୍ଣ ସାଧନ ଭିତରେ ଏଇ ପିଆନୋର ସଙ୍ଗୀତ ଧ୍ୱନୀ ବଂଦ ହୋଇ ନଥିଲା ।

ସେଇ ପରିବେଶରେ ମୁଁ କେବଳ କହୁଥିଲି; ଆଉ ସଭିଏଁ ଶୁଣୁଥିଲେ ।

କେତେକ ସରଳ ନିର୍ଦ୍ଦେଶ, କିଛି ଦରକାରୀ ଉପଦେଶ, ନିର୍ବିବାଦରେ ସମସ୍ତେ ଶୁଣୁଥିଲେ ।

ଧ୍ୟାନ ଆକର୍ଷଣର ଏଇ ଯନ୍ତ୍ରଟିକୁ କେଡ଼େ ଯତ୍ନରେ ମୁଁ ଘଷି ମାଜି ରଖିଥିଲି ! ମୋ ସବୁଠାରୁ ମୂଲ୍ୟବାନ ଉପକରଣ ଥିଲା ସେଇଟା; ଆଉ ତା'କୁ ଛାଡ଼ି ହେଉ ନଥିଲା ।

ଜଣେ ଯାହା କହେ, ତା' କଥାରେ ବିଷୟବସ୍ତୁ ସବୁ କିଛି ନୁହେଁ । ଅସଲ କଥା ହେଉଛି, କହିବାର ଶୈଳୀ । ଆପଣ କହୁଥିବା କଥା ଯେତେ ଗୁରୁତ୍ୱପୂର୍ଣ ହେଲେ ମଧ୍ୟ, ସେ କଥା ଯଦି କେହି ନ ଶୁଣନ୍ତି, ଶୁଣିବାକୁ ଆଗ୍ରହୀ ନ ହୁଅନ୍ତି ଏବଂ ଅନୁଭବ କରି ନ ପାରନ୍ତି, ତେବେ ତଦ୍ୱାରା କି ଉପକାର ହେବ ? ଜଣେ କହୁଥିବା ବିଷୟକୁ ମନଦେଇ ଶୁଣିବା ଏବଂ ଅନୁଭବ କରିବାପାଇଁ ପୂରା ଧ୍ୟାନ ଦେବା ଦରକାର ବିଷୟକୁ ମନଦେଇ ଶୁଣିବା ଏବଂ ଅନୁଭବ କରିବାପାଇଁ ଧ୍ୟାନ ( Attention) ଦରକାର । ସେଇ ମହାନ୍ ସଙ୍ଗୀତଜ୍ଞଙ୍କ ସେଇ ସ୍ୱର ବିନ୍ୟାସ ମୋତେ ସେଇ ମହାନ କ୍ଷମତାର ଅଧିକାରିଣୀ କରିଥିଲା ଏକାଗ୍ର ଧ୍ୟାନ ଆଣିବାରେ । ଆପଣ ହୁଏତ ଯୁକ୍ତି କରିପାରନ୍ତି, 'ଖେଳିବୁଲି, କଥାଭାଷା ଓ ନାଚଗୀତରେ ବୁଡ଼ି ରହିଥିବା ପିଲାଙ୍କ ଭିତରୁ ଦୂରିଆ ପିଲାଟି କିପରି ଏକ ଧୀର ମଧୁର ସଙ୍ଗୀତର ଆଠଟି ସ୍ୱରରେ ଟାଣି ହେଉଥିଲା ? ଯେ କୌଣସି ଶିକ୍ଷାଦାତା ଏହାର ଉତ୍ତର ଦେଇପାରିବେ । ସେମାନେ ପିଆନୋ ପାଖକୁ ଲାଗି ଆସୁଥିଲେ । ସେମାନେ ପରସ୍ପରକୁ ସ୍ପର୍ଶ କରୁଥିବେ ଏବଂ କିଛି କହୁଥିବେ; କିନ୍ତୁ ନୀରବତା କିପରି ବ୍ୟାପି ଯାଉଥିଲା, ତାହା ନୀରବତା ହିଁ କହିପାରିବ ।

ସେପରି ସଙ୍ଗୀତର ମୂର୍ଚ୍ଛନା ଶେଷ ହେଲେ ପିଲାଙ୍କର ସ୍ତବ୍ଧତା ମଧ୍ୟ ତୁଟିଯାଏ । ସେଇ ନୀରବତା ଆଉ ସେଇ ନିସ୍ତବ୍ଧତା ମୁଁ ସେସବୁ ମନେ ପକେଇବି-ଏଇ ସାତ ବର୍ଷର ବ୍ୟବଧାନ ଅପେକ୍ଷା ଆହୁରି ଅଧିକ ସମୟ ପରେ ମଧ୍ୟ ।

ନିଉଜିଲାଣ୍ଡର ଶିକ୍ଷକମାନେ ସେଇ କାର୍ଯ୍ୟକାଳ ଭିତରେ ଯେତେ ସବୁ ବୁଲି ଆସିଛନ୍ତି ଏବଂ ଚିଠି ଦେଇଛନ୍ତି, ସେ ସବୁର ସ୍ୱୀକୃତି ଜଣାଇବାର ଏଇଟା ହେଉଛି ପ୍ରକୃଷ୍ଟ ସ୍ଥାନ, ଆଉ ସମୟ । ତା' ସହିତ, ଦରିଆପାରି ବିଶ୍ୱ-ବିଦ୍ୟାଳୟଗୁଡ଼ିକର ଆଗ୍ରହ ଓ କାର୍ଯ୍ୟାନୁଷ୍ଠାନ ପାଇଁ ମଧ୍ୟ ମୁଁ କୃତଜ୍ଞ । ମୁଁ ସମସ୍ତଙ୍କୁ ବିଶେଷ ଭାବେ ଧନ୍ୟବାଦ ଜଣାଉଛି । ମୋ ଶିଶୁ କର୍ମଶାଳାଟି ମୋର ଗବେଷଣା କେନ୍ଦ୍ର ଥିଲା । ତେଣୁ ସେ ସମୟରେ ସେଇ ସ୍ଥାନରେ ମୋ ଗବେଷଣା ସମ୍ବନ୍ଧରେ ଆପଣମାନଙ୍କୁ ଅବଗତ କରିବା ପାଇଁ ମୁଁ ଗଭୀର ଶ୍ରଦ୍ଧା ସହ ଇଚ୍ଛା ପୋଷଣ କରିଥିଲି ମୁଁ ସବୁବେଳେ ଆଶା କରୁଥିଲି ମୋର ଲଗାମଛଡ଼ା କଳ୍ପନାର ବଣୁଆ ଢାଞ୍ଚାରେ ଆପଣମାନେ ଛୋଟ ଛୋଟ ଦଳରେ ଆମ ଜିଲ୍ଲାକୁ ଆସି ରହନ୍ତେ ଏବଂ ସବୁଦିନ ମୋ କର୍ମଶାଳାକୁ ଆସୁଥାନ୍ତେ ! ତେବେ, ଏଇ ଇଚ୍ଛାଗୁଡ଼ିକ ବଣୁଆ ହେଲେ ବି ସଂଯତ ଥିଲେ ଏବଂ ଘଟଣାକ୍ରମେ ଆଶାନୁରୂପ ଭାବେ ତାହା କାର୍ଯ୍ୟକାରୀ ହେଲା ନାହିଁ । ଯାହା ହେଲେ ବି ଇଚ୍ଛାଗୁଡ଼ିକ ମଧ୍ୟ ଆଶ୍ଚର୍ଯ୍ୟଜନକ ଭାବରେ ବଂଚିରହନ୍ତି ଏବଂ ଦୀର୍ଘ ସାତବର୍ଷ ପରେ ସୁଦ୍ଧା ସେମାନେ ମୋ ସହିତ ରହିଛନ୍ତି ।

ମୁଁ ଏଇ ସୃଜନାତ୍ମକ ଶିକ୍ଷାଦାନ ପ୍ରଣାଳୀ (Creative Teaching Scheme) ପୁସ୍ତିକାଟିକୁ ପୁଣି ଥରେ ପଢ଼ି ପାରିନାହିଁ । ଦ୍ୱିତୀୟ ଥର ପଢ଼ିଥିଲେ, ମୋତେ ହୁଏତ ଏହାର ପୁନଃ-ଗଠନ, ପୁନଃ-ସଂସ୍ଥାପନ, ପୁନଃ-ଲିଖନ, ଆଉ ମଧ୍ୟ ପୁନଃ-ଚିନ୍ତନର ଆବଶ୍ୟକତା ନିଃସନ୍ଦେହରେ ଗ୍ରହଣ କରିବାକୁ ପଡ଼ିଥାନ୍ତା । ତେଣୁ ମୁଁ ସେ ସମସ୍ୟାକୁ ଏଡ଼େଇ ଦେଇଛି । କାରଣ, ମୁଁ ଏସବୁ କିଛି ନ କରିବାକୁ ସ୍ଥିର କରିଛି । ଏଇଟା ହେଉଛି : ଏହାକୁ ଲେଖିଲାବେଳେ ଏହା ଯେପରି ଥିଲା ଏବଂ ମୁଁ କାର୍ଯ୍ୟରେ ଏହାକୁ ପରିଣତ କରିବା ସମୟରେ ଏହା ଯେପରି ରହିଥିଲା ତାହା ହିଁ ମୋ ପକ୍ଷରେ ସଠିକ ।

ଅଧିକନ୍ତୁ କିଏ ଭଲ ସ୍ମୃତିକୁ ବିକ୍ଷୁବ୍ଧ କରେ... ସମୟର ଗୋଟି ଗୋଟି ମୁହୂର୍ତ୍ତର ମାଦକତାକୁ ? କିଏ ଭଲା ଅତୀତର ସେଇ ଆବେଗକୁ ପୁଣି ତେଜିବାକୁ

ଖାତିର କରେ ? ମୁଁ ଯାହା କିଛି ପାଇଚି, ତା'ର ସ୍ମୃତି-ଚାରଣ କେବଳ ଯଥେଷ୍ଟ। ପ୍ରାଣ-ପ୍ରାଚୁର୍ଯ୍ୟ ଭରା ଜଣେ ଶିକ୍ଷାଦାତା ଶିଖେଇ ଚାଲେ, ଏବଂ ଶିଖେଇ ସାରିଲା ପରେ, ପୁଣି ଆଗକୁ ମାଡ଼ି ଚାଲେ, ପୁଣି ଆଗକୁ। ତେଣୁ :

*ଚଳନ୍ତି ଅଙ୍ଗୁଳି ଲେଖି ଚାଲିଥାଏ,*
*ଲେଖି ସାରିଲେ ବି ଲେଖେ,*
*ଲେଖି ଚାଲିଥାଏ,*
*ତମର ସବୁ କିଛି ପୁଣ୍ୟ-ପବିତ୍ରତା,*
*ସବୁ କିଛି ଜ୍ଞାନ ଆଉ ବୁଦ୍ଧିମତ୍ତା,*
*ପାରିବନି ପୋଛି ତାକୁ*
*ପାରିବନି ଏଇ ଅଧା ଧାଡ଼ିକୁ ଲିଭାଇ,*

*ଆଉ ତୁମର ସବୁତକ ଲୁହ ସୁଦ୍ଧା*
*ପାରିବନି ଧୋଇ ସେ ଲେଖାର ଗୋଟିଏ ବି ପଦ।*

**ସିଲ୍‌ଭିଆ ଏଷନ୍-ୱାର୍ଣର୍**

# ଆମେରିକାର
# ସଂପାଦକଙ୍କୁ ମୋର ଚିଠି

ପ୍ରିୟ ବବ୍,

ଆଜି ସକାଳେ ପାଇଥିବା ଆପଣଙ୍କ ଚିଠିରେ ଏ ପୁସ୍ତକର ଉପକ୍ରମଣିକାଟିକୁ ଆହୁରି ଅଧିକା ବଢ଼େଇ ଲେଖିବାକୁ ଆପଣ କହିଛନ୍ତି । କିନ୍ତୁ ତିନୋଟି କାରଣରୁ ମୁଁ ତାହା କରି ପାରୁ ନାହିଁ । ଲେଖିଥିବା ଉପକ୍ରମଣିକାଟି ମୋ ନିଜ ଦେଶ ନିଉଜିଲାଣ୍ଡର ଜଣେ ପ୍ରକାଶକ ପ୍ରକାଶ କରିବା ଆଶା ନେଇ ଆବେଗ ଓ ଆଗ୍ରହର ବଳରେ ଲେଖିଥିଲି... କିନ୍ତୁ ସେପରି ଅନେକ ଆଶା ପରି ସେଇ ଆଶା ବିଫଳ ହେଲା । ସେଇ ଉପକ୍ରମଣିକାଟି ମୋ ନିଜ ଦେଶ ପାଇଁ ଲେଖିଥିଲି । କିନ୍ତୁ ଆପଣଙ୍କ ଦେଶ ପାଇଁ ଲେଖିବା ଏକ ଅଲଗା କଥା । ଆହୁରି ମଧ୍ୟ, ଜଣେ କଳାକାର ତା' କାମରେ ଲାଗିଥିଲାବେଳେ, ତା' ବିଷୟ-ବସ୍ତୁ ଓ ଭାବଧାରା ଜୀବନ୍ତ ଓ ତରଳ ଥାଏ, ତା'ର ଉଷ୍ମତା ଥାଏ ଏବଂ ଚିନ୍ତା-ଧାରା ଅନୁସାରେ ରୂପାୟିତ ହୋଇପାରେ । ବିଶ୍ୱ-ବ୍ରହ୍ମାଣ୍ଡର ବାଷ୍ପୀୟ ଗ୍ରହମଣ୍ଡଳ ପରିବେଶର ପ୍ରଭାବରେ ଆକାର-ପ୍ରକାର ଗ୍ରହଣ କଲାପରି ଭାବଧାରା ବିରୂପ ନେଇଥାଏ । ମାତ୍ର ଥରେ ଏକ ଆକାର ନେଇ ଗଠିତ ହୋଇଗଲେ.... ତେଣିକି ସେ ହୁଏ ଏକ ନିର୍ଦ୍ଦିଷ୍ଟ ଆକାରର ଶୀତଳ ତାରକା... ତା' ଆକାର ହୁଏ ଅପରିବର୍ତ୍ତନୀୟ....ଚୂଡ଼ାନ୍ତ । ଆଉ ଶେଷ କାରଣଟି ଅତ୍ୟଧିକ ଭୌତିକ, ମୁଁ ପାରିବି ନାହିଁ, ମୋତେ ଖାଲି କାନ୍ଦ ମାଡୁଛି ।

ତଥାପି ଆପଣଙ୍କର କେତୋଟି ପ୍ରଶ୍ନର ଉତ୍ତର ମୁଁ ଦେଇପାରିବି । ''ଅଳ୍ପ କେତୋଟି ଶୀତଳ ଘଟଣା'' ଆପଣ ଆପଣଙ୍କ ଆମେରିକୀ ପାଠକମାନଙ୍କ ପାଇଁ ଚାହିଁଛନ୍ତି । ''କେବେ ଏହା ଘଟିଥିଲା ?'' ଆପଣ ପହିଲେ ପଚାରିଛନ୍ତି ।

ଏଇଟା ଆରମ୍ଭ ହୋଇଥିଲା....କେତେ ବର୍ଷ ପୂର୍ବେ ? ଯେତେବେଳେ ମୁଁ ମୋର ତରୁଣ ମନକୁ ମାଓରି ଶିଶୁ ଶ୍ରେଣୀରେ ପହିଲେ ନିବେଶ କରିଥିଲି । ହିସାବ କରି ଦେଖେ....ଚାରି, ଆଠ.....ଚାରି ଓ ଆଠ ହେଲା ବାର.... ଆଉ

ଚାରି, ହେଲା ଷୋଳ....ଆହୁରି ଚାରି ହେଲେ କୋଡ଼ିଏ.... ଏବଂ ଚାରି ମିଶିଲେ ହେବ ଚବିଶ । ଚବିଶ ବର୍ଷ ପୂର୍ବେ । ଏଇଟା କ'ଣ ସତରେ ଏତେ ଦିନ ତଳର ? ଆଉ ଏ କାମଟା ପୂରା ହେଲା ସାତ ବର୍ଷ ତଳେ- ଯେତେବେଳେ ମୁଁ ଅସଲି ପଦତାଲିକାର ସନ୍ଧାନ ପାଇଲି ନା ମୁଁ କହବି ସେଇଟା ମୋ ମୁଣ୍ଡକୁ ମାଡ଼ିଲା ବୋଲି ? ଏଇ ଉଦ୍‌ଭାବନଟା ଚମତ୍‌କାର ଥିଲା । ବିଜୁଳି ଝଟକିଲା ପରି.... । ସେଇ ଝଲକରେ ସେ କୋଠରୀର ଖଣ୍ଡିଆ ଖାବର ମେଜ, ଆବୁଡ଼ା ଖାବୁଡ଼ା ଚଟାଣ ଆଉ ଉପରେ ସାଦା ରୁଅ - ସବୁ ଦେଖି ପାରିଥିଲି । ବିଜୁଳୀ ଝଲକର ଧଳା ଆଲୁଅରେ ସବୁ କିଛି ଆଲୋକିତ ହୋଇ ଉଠିଥିଲା ...।

"ମୋ ପରିସ୍ଥିତି କିପରି ଥିଲା ?".... ତା' ଆପଣ ଏଠାରୁ ପାଇଛନ୍ତି । ଏହାର ଶେଷ ଭାଗରେ ଥିବା ମୋ ଦିନଲିପି (Diary)ରୁ ଏ ପ୍ରଶ୍ନର ଉତ୍ତର ଆପଣ ପାଇବେ ।

"କେତେ ସମୟ ଲାଗିଲା ?" ଆପଣ ପଚାରିଛନ୍ତି । ମୁଁ ତ କହି ସାରିଛି.... ଚବିଶ ବର୍ଷ । କେତେ ଜଣ ପିଲା ? ଆରମ୍ଭରେ ନଅ କି ଦଶ ଜଣ, ମୁଁ ଭାବୁଛି, ଗୋଟେ ସମୟରେ ବସନ୍ତ ଋତୁ ବେଳକୁ ସତୁରି ଯାଏଁ ବଢ଼ି ଉଠିଥିଲା । ମୋ କର୍ମଶାଳାରେ ମୁଁ ଅସଲି ପଦ ତାଲିକା ତିଆରି କଲାବେଳକୁ ସଂଖ୍ୟା ପଚାଶ ପାଖାପାଖି ଥିଲା ।

ତା' ପରେ ଆପଣ ଲେଖିଛନ୍ତି, "ଆପଣଙ୍କର ଯଦି ସୁବିଧା ହୁଏ, ଆପଣଙ୍କ ଚିନ୍ତାଧାରାର କିପରି ବିକାଶ ହେଲା, ତାହାର ଏକ ବିବରଣୀ ଦିଅନ୍ତୁ ଏବଂ ନିଉଜିଲାଣ୍ଡର ଶିକ୍ଷା ଉପରେ ତାହାର ପ୍ରଭାବ କିପରି ପଡ଼ିଥିଲା, ତା' ଲେଖନ୍ତୁ । ଏଠାରେ ଜନସାଧାରଣଙ୍କ ପାଇଁ ଏ ବିଷୟ ବିଶେଷ ଗୁରୁତ୍ୱପୂର୍ଣ୍ଣ । ଦୟାକରି ମନା କରିବେ ନାହିଁ । (ଆହୁରି ମଧ୍ୟ, ଏ ସବୁ ଭାବଧାରାକୁ ନିଉଜିଲାଣ୍ଡରେ ଲୋକେ କିପରି ଭାବେ ଗ୍ରହଣ କରିଥିଲେ, ସେ ବିଷୟରେ କିଛି ଲେଖନ୍ତୁ ।) ପ୍ରଶାନ୍ତ ମହାସାଗରର ସେପାରିରୁ ଆପଣ ମୋର ଦୀର୍ଘ-ଶ୍ୱାସ ଶୁଣି ପାରୁଛନ୍ତି ତ ?

"ମୋର ଚିନ୍ତା-ଧାରା କିପରି ବିକଶିତ ହେଲା ?" ତାହା ମୁଁ ଜାଣେନାହିଁ । ଭାବଧାରା ସବୁ ଯେ ବିକାଶ ଲାଭ କରନ୍ତି, ତାହା ମୁଁ ଜାଣେନି । ସେଗୁଡ଼ିକ ତ ଆବିର୍ଭୂତ ହୁଅନ୍ତି ! ଏଥିରେ ଆମେ ବିସ୍ମିତ ହେଉ, ଆଉ ଉପକୃତ

ହେଉ ଏହି ବିଷୟରେ ମୁଁ ଏତିକି ହିଁ କହିବି । ତା'ପରେ ଆଉ ବଳକା ପ୍ରଶ୍ନର ଉତ୍ତର ହେଉଛି, ନିଉଜିଲାଣ୍ଡରେ ମୋ କାର୍ଯ୍ୟକୁ କରାଯାଇଥିବା ଆଦର ।

ଆମର ତ ଗୋଟିଏ ପରିବାର । ଗୋଟିଏ ଛୋଟିଆ ଦେଶକୁ ଆଉ କ'ଣ ବା କହିବା ? ନିଉଜିଲାଣ୍ଡରେ ଗୋଟିଏ ପରିବାର ପରି ଆମେ ଅତି ନିବିଡ଼ ଭାବରେ ପରସ୍ପରର ନିକଟତର । ଆଉ ସବୁ ଛୋଟ ଛୋଟ ଦେଶ ତୁଳନାରେ ଏଠାରେ ଆମ ଅଧିକ ଘନିଷ୍ଠ । ତା'ର କାରଣ : ଚାରିପଟେ ଆମର ଦକ୍ଷିଣ ମହାସାଗର...ଆଉ ପୃଥିବୀର ସବା ତଳେ, ଏପରିକି ଜୋତା ତଳକୁ ରହିଥିବାରୁ.... ଆମ ପରିବାରଗୁଡ଼ିକ ଭିତରେ ଆନ୍ତରିକତା ରହିଛି । କେତେକ ପରିବାର କଳି କରନ୍ତି, ଆଉ କେତେକ ତା' କରନ୍ତି ନାହିଁ; ମାତ୍ର ଅସଲି ପରିବାରଗୁଡ଼ିକରେ କିଛି ନୀତି-ନିୟମ ରହିଛି : କେତେକ ସ୍ପଷ୍ଟ ଭାବେ ଲିଖିତ ଏବଂ କେତେକ ମୌଖିକ ନିୟମଟି ହେଉଛି : ପରିବାର ଭିତରେ ଘଟୁଥିବା ଘଟଣା କେହି ବାହାରେ କହି ପାରିବେ ନାହିଁ- ତାହାକୁ ପରିବାରର ମର୍ଯ୍ୟାଦା ଏବଂ ପରସ୍ପର ଭିତର ଅନୁରକ୍ତି ରୂପେ ବିଚାର କରାଯାଏ ।

ଥରେ ଜଣେ ମହିଳା ବେଶ୍ ଗର୍ବ ସହିତ ମୋତେ କହିଲେ, ''ମୋ ପରିବାରରେ କଳି ଲାଗେ ନାହିଁ ।'' ସେତେବେଳେ ମୋର ବୟସ କମ୍ ଥିଲା ଏବଂ ଆମର ପିଲାମାନେ ଛୋଟ ଥିଲେ । ମୁଁ ଭାବିଥିଲି, ''କି ଆଶ୍ଚର୍ଯ୍ୟ । ମୁଁ ଯଦି ଏପରି କହିପାରନ୍ତି !'' ମାତ୍ର ମୁଁ ଏବେ ଆଉ ଅଳ୍ପ-ବୟସ୍କା ନୁହେଁ । ତେଣୁ ଭଲ ଭାବେ ସବୁ ଜାଣିପାରୁଛି । ମୁଁ ଯେତେବେଳେ ସେଇ 'କେବେ କଳି କରୁ ନଥିବା ପରିବାର' ବିଷୟରେ ଚିନ୍ତା କରେ, ମୁଁ ମନେପକାଏ, ସେଇ ପରିବାର ନିଷ୍କ୍ରିୟତା- ଆଖିରେ ସେମାନଙ୍କର ଅଳସ ଚାହାଣି, ଆଉ ସେଥିରେ ନଥାଏ ଦିପ୍ତୀର ଝଲକ । ବାପା, ମାଆଙ୍କ ଉଦାସିଆ ମୁହଁରେ ଲୁହର ଛାପ.... । ଏବେ ମୁଁ ଜାଣିପାରୁଛି କଳି ବା, ଲଢ଼େଇ କରିବାକୁ ହେଲେ ଆବେଗ ଆଉ ଶକ୍ତି ଦରକାର । ଅବଶ୍ୟ ମହତ୍ତର ସାମଗ୍ରୀ : ମହତ୍ତର ଲଢ଼େଇ, ମହତ୍ତର ଅପୋଷ ବୁଝାମଣା, ଉଚ୍ଛୁଳି ଉଠୁଥିବା ମହତ୍ତର ଅନୁଭୂତି ।

ନିଉଜିଲାଣ୍ଡରେ ଆମେ କଳି କରୁଁ । ସିଧାସଳଖ କଥା ନେଇ ଲଢୁ । ଆମେ କଳି କରୁଁ ସକାଳେ ଆଉ ସଂଜରେ, ଦିନରେ ଆଉ ରାତିରେ, ବାଁରୁ ଡାହାଣ ଯାଏଁ, ଆଉ ଡାହାଣରୁ ବାଁ ଯାଏ, ଆଗରୁ ପଛ ଯାଏଁ, ଆଉ ପଛରୁ

ଆଗ ଯାଏଁ, ଉପରୁ ତଳଯାଏଁ, ଆଉ ତଳୁ ଉପରଯାଏଁ, ଏ ପାଖରୁ ସେ ପାଖ ଯାଏଁ, ଆଉ ସେ କୋଣରୁ ଏ କୋଣ ଯାଏଁ ଅତି ଅଧିକ ଜଟିଳ, ଯୌଗିକ, ବିସ୍ଫୋରକ ଆଉ ନିଷ୍ପତ୍ତି ମୂଳକ ଲଢ଼େଇରେ ଝାଳଲାଳ ହୋଇ କ୍ଳାନ୍ତ ହୋଇଯାଉଁ । ସତେ ଯେମିତି ଏ ଜାତିର ରକ୍ତରେ ଅଗ୍ନି ଉଦ୍‌ଗୀରଣ କରି ପରସ୍ପରକୁ ଛନ୍ଦାଛନ୍ଦି କରି ଅବିଚ୍ଛିନ୍ନ ଭାବେ କଳି କରିବା ପାଇଁ ଅସରନ୍ତି ଶକ୍ତିର ଭଣ୍ଡାର ଗଚ୍ଛିତ ରହିଛି ! ଆଉ ଏପରି ଭାବରେ ସେ ଲଢ଼େଇ ଚାଲୁ ରହେ, ଯେତେବେଳେ ଆଖି ଲାଲ ହୋଇ ଉଠେ, ତେଜରେ ଝଲସି ଉଠେ ଓ ରକ୍ତ ଗରମ ହୋଇଯାଏ । ଏହାର ମୂଳରେ ରହିଛି ଆବେଗ ଆଉ ଶକ୍ତି, ବୀରତ୍ୱ ଆଉ ବିଚକ୍ଷଣତା, ଯାହା ପ୍ରତିଟି ସକାଳରେ (ଯେପରି ସକାଳର ଖବର କାଗଜ) ଗରଜି ଉଠି ଭେଦ କରିଯାଏ ଭୟ-ଭୀତ ଗଣ-ମାଧମ, ଆଉ ସଂଚରି ଯାଏ କେତେ ଉନ୍ମାଦନାର ଉତ୍ତେଜକ ଭାବଧାରା ପୁଣି ସମନ୍ୱୟ ଆଇ ବିସ୍ଫୋରଣ ଯେମିତି ବିସ୍ଫୋରଣ ଘଟେ ମହାକାଶର ନିହାରୀକା ମଣ୍ଡଳୀରେ ଯେପରି ଦକ୍ଷିଣ ଆକାଶର ନିହାରୀକା ଜଗତରେ ।

ଆମେ କଳି କରୁଁ, ବବ୍ ! ମୁଁ କଳ୍ପନା କରିପାରେ ନାହିଁ, ଏତେ କଳି-କନ୍ଦଳ ଭରି ରହିଥିଲେ ମଧ ଆମ ପରି ଅନ୍ୟ କେଉଁ ଦେଶ ଆନନ୍ଦପୂର୍ଣ୍ଣ ବିଶ୍ୱସନୀୟତା ଭିତରେ କେଉଁଠି ଥିବ ବୋଲି ! ମାତ୍ର ଆମେ ବାହାରେ ଆମ ପରିବାର ବିଷୟ କହୁନା । କେଉଁ ଅନାଦି କାଳରୁ ଆମ ଭିତରେ ଏଇ ଅନୁରକ୍ତି ରହି ଆସିଛି । ଦକ୍ଷିଣ ମେରୁର ଧ୍ରୁବତାର - ଦକ୍ଷିଣ ମତ୍ସ୍ୟ ମଣ୍ଡଳ ପରି ଅନାଦି କାଳରୁ ଆମେ ମାନି ଆସିଛୁ ସେଇ ଅନାଦି ସମୟ ନୀତି ନିୟମକୁ । ତେବେ, ଆପଣ ପଚାରିଥିବା ଆଉ କେତେକ ପ୍ରଶ୍ନର ଉତ୍ତର ମୁଁ ଦେଉ ପାରୁନି । ସତ କଥା ହେଉଛି । ଗଲା ସାତ ବର୍ଷ ଧରି ମୋ ଦେଶରେ ମୋର ଏଇ ସୃଜନାତ୍ମକ ଶିକ୍ଷାଦାନ ପଦ୍ଧତିର ପୁସ୍ତକଟି ପ୍ରକାଶିତ ହେଉ ବୋଲି ମୁଁ ଚେଷ୍ଟା କରି ଆସିଛି ଏହି ସାତୋଟି ବର୍ଷ ମୋ ପାଇଁ ଘଟଣାବହୁଳ ବର୍ଷ । ଗଲା ସାତ ବର୍ଷ ଧରି ମୁଁ ଚେଷ୍ଟା କରିଛି, ଆଶା କରିଛି, ଅପେକ୍ଷା କରିଛି-ପାରିବାରିକ ନିଷ୍ଠାରେ ଅକର୍ମଣ୍ୟ ହୋଇ ପଡ଼ିଛି । ମୁଁ ଅତ୍ୟଧିକ ଦୃଢ଼ତାର ସହିତ ଚାହୁଁଥିଲି, ଏହା ମୋ ଦେଶରେ ପ୍ରକାଶିତ ହେଉ, ମୋ ଜୀବଦ୍ଦଶାରେ.... ମୋ ପରେ ନୁହେଁ । ସେତିକି ଦେଖିବାକୁ ମୁଁ ଚାହୁଁଥିଲି, ଏଠାରେ ରହି..... ସ୍ୱାର୍ଥ ଆଉ ଆତ୍ମ-ଅଭିମାନ ନେଇ, ସେତିକି

ଦେଖିବାକୁ, ମୁଁ ଶିକ୍ଷକମାନଙ୍କୁ ନିଜେ ତାଲିମ (ପ୍ରଶିକ୍ଷଣ) ଦେବାକୁ ଚାହୁଁଥିଲି ଉଃ, କି ଭଗୀର ଉତ୍କଣ୍ଠା ନେଇ ମୁଁ ଆତୁର ହୋଇ ଉଠୁଥିଲି ! ନିଉଜିଲାଣ୍ଡର ଶିଶୁ ଶ୍ରେଣୀ ଶିକ୍ଷୟିତ୍ରୀମାନଙ୍କୁ ଏଇ ସୃଜନାତ୍ମକ ଶିକ୍ଷା ପଦ୍ଧତିରେ ଉଦ୍‌ବୁଦ୍ଧ କରି ଦିଅନ୍ତି । ସେମାନେ କାମରେ ଲଗାନ୍ତେ । ମୁଁ ଯେଉଁ କଠୋର ପରିଶ୍ରମ, ବ୍ୟଥା ଓ ଯନ୍ତ୍ରଣା ଭୋଗ କରି ଏହାର ପରିଚୟ ପାଇଥିଲି, ସେ ସବୁ କିଛି ଭୋଗ ନକରି ଧୀର, ସୁସ୍ଥ, ଥଣ୍ଡା, ମନରେ ଦକ୍ଷତାର ସହିତ ସେମାନେ କାର୍ଯ୍ୟକାରୀ କରନ୍ତେ । ଏଇ ଶିକ୍ଷାଦାତାମାନେ ଯେ ଏହା ଚାହାନ୍ତି ନାହିଁ- ସେପରି ନୁହେଁ । ଏଇ ପଦ୍ଧତିର ମୌଳିକ ନୀତି-ନିୟମଗୁଡ଼ିକ, ବିସ୍ତୃତ ଭାବେ ନ ହେଲେ ମଧ୍ୟ, ମୋର ଉପନ୍ୟାସ 'ସ୍ପିନ୍‌ଷ୍ଟର୍' (ଅବିବାହିତା)ରେ ଉପସ୍ଥାପିତ ହୋଇଛି । ସେଇ ମୌଳିକ ନୀତିଗୁଡ଼ିକ ତ ଦେଶସାରା କାର୍ଯ୍ୟ କ୍ଷେତ୍ରରେ ପ୍ରଯୋଗ କରାଯାଇଥିଲା । ସେତେବେଳେ ସେସବୁ କାମକୁ ମୁଁ ପ୍ରକୃତରେ ପସନ୍ଦ କରିଥିଲି । କିନ୍ତୁ ମୋର ଶୈଳୀ ରୁଚି ଅନୁକୂଳ ନୁହେଁ ବୋଲି ଜଣେ ପ୍ରକାଶକ କହିଥିଲେ । ଲେଖାଟିକୁ ପାରଂପରିକ ଶୈଳୀରେ ପୁଣି ଲେଖିବାକୁ ସେ ଉପଦେଶ ଦେଇଥିଲେ । ଅ, ଆ, ଇ,..... (A,B,C) ଇତ୍ୟାଦିର କ୍ରମର ପ୍ରଥମ କଥା ପ୍ରଥମେ ଏବଂ ସେ ଅନୁସାରେ ଗତାନୁଗତିକ ଢ଼ାଞ୍ଚାରେ ପୂରା ପୁସ୍ତକଟିକୁ ପୁଣି ସଜେଇ ଲେଖିବାକୁ ସେ କହିଥିଲେ, ଆଉ ଜଣେ ପ୍ରକାଶକ, ଆପଣ ବିଶ୍ୱାସ କରନ୍ତୁ କି ନ କରନ୍ତୁ, ଲେଖିଥିଲେ ମୁଁ ପାରିବି ନାହିଁ । ଏଇଟା ଆମ ସମୟଠୁଁ ବହୁତ ଆଗରେ ।'' ଆଉ ଜଣେ ପାଣ୍ଡୁଲିପିଟିକୁ ବର୍ଷେକାଳ ରଖିଲେ ମଧ୍ୟ, ମୁଁ ଯେତେବେଳେ ଫେରାଇ ଦେବାକୁ କହିଲି, ସେ ବେଶ୍ ତେଜରେ ପ୍ରତିବାଦ କରି କହିପାରିଲେ ଯେ, ମୁଁ ତାଙ୍କୁ ଥରେ ବି ପଢ଼ିବାକୁ ସୁଯୋଗ ଦେଇ ନାହିଁ ! ''ଆପଣ କ'ଣ ଏ ସପ୍ତାହ ଶେଷଯାଏଁ ଅପେକ୍ଷା କରି ପାରି ବେନି ? ଆଉ ଜଣେ ଏହାର ଦାୟିତ୍ୱ ନେଇପାରିବେ ନାହିଁ ବୋଲି କହିଲେ; ତା' ଅବଶ୍ୟ ସତ । ଏଇ ସବୁକାମ ଭିତରେ.... ଆରମ୍ଭ ଅବସ୍ଥାରେ ....ମୁଁ ଶିକ୍ଷା ବିଭାଗକୁ ଏଇଟା ପଠେଇଥିଲି । ହେଲେ ସେଠାରେ କିଏ ଜଣେ ତିନି ମାସ ପକେଇ ରଖିଲେ ମଧ୍ୟ ଉତ୍ତର ପଦେ ଦେଲେ ନାହିଁ । କିନ୍ତୁ ମୁଁ ଯେତେବେଳେ ମୋ ଲେଖାଟି ଫେରେଇ ଦେବାକୁ ଲେଖିଲି, ସେ ଜଣେଇଲେ ଯେ, ମୁଁ ଲେଖା ସହିତ କୌଣସି ଚିଠି ପଠାଇ ନାହିଁ । (ପ୍ରକୃତରେ ଚିଠି ତା'ସହିତ ରହିଥିଲା)

ସେ ଅବଶ୍ୟ ଦୟା ପରବଶ ହୋଇ ମନ୍ତବ୍ୟ ଦେଇଥିଲେ : ପୁସ୍ତକଟି ପଢ଼ି ସେ ଆନନ୍ଦ ଲାଭ କଲେ ଏବଂ ତାହା ନିରାପଦରେ ମୋ ପାଖରେ ପହଞ୍ଚିବ ବୋଲି ଆଶା ପ୍ରକାଶ କରିଥିଲେ : ତାଙ୍କ ମନ୍ତବ୍ୟ ପଢ଼ି ମୋତେ ହସ ମାଡ଼ିଲା- ଏ ପ୍ରକାର ବଡ଼ ବଡ଼ ଉଚ୍ଚା ମନବୋଧ କଥା ମୁଁ ମୋ କୁନି କୁନି ପିଲାଙ୍କୁ କେତେ ଯେ କହି ଆସିଛି ! ମୋର ଜଣେ ପ୍ରିୟ ବନ୍ଧୁ ମୋତେ ଖୁସି କରିବାକୁ ଏଇ ବର୍ଷ ଏଇଟା ଛପେଇବାକୁ ଯେତେ ଚେଷ୍ଟା କଲେ, ତାନ ଲେଖିବା ଭଲ । ସେ ଯେଉଁ ଛାପାଖାନାକୁ ଦେଇଥିଲେ, ସେଠାରେ ଏହାର ଗୋଟିଏ କିତା ଛପା ସରିଲାବେଳକୁ ଘଟଣାକ୍ରମେ ଛାପାଖାନାଟି ଆର୍ଥିକ ଦୁରବସ୍ଥାରୁ ଅଚଳ ହୋଇପଡ଼ିଲା ଏବଂ ଆବେଗ ଯୋଗୁଁ ବୋଧେ ସେ ଏପରି ଭାବେ ସେ ସବୁ ରଖାରଖି କଲେ ଯେ ଛପା କାଗଜତକ କୁଆଡ଼େ ହଜି ଗଲା- ଏ ଯାଏଁ ମିଳିନି । ଏତେ ସବୁ ପରେ..... ସହଜ କଥାରେ କହିଲେ, ମୁଁ ପୁଣିଥରେ ଭାବି ଚିନ୍ତି ପାରିବାରିକ କଲ୍ୟାଣରେ ଲାଗି ପଡ଼ିଲି ।

ଆପଣଙ୍କ ପ୍ରଶ୍ନ ହେଲା, ନିଉଜିଲାଣ୍ଡର ଶିକ୍ଷା ବିଭାଗ ଏହାକୁ କିପରି ଭାବରେ ଗ୍ରହଣ କରିଥିଲା...... ମୋ ପରୀକ୍ଷା ନିରୀକ୍ଷା ସମୟରେ ସେମାନେ ମୋ ପ୍ରତି କି ପ୍ରକାର ବ୍ୟବହାର ଦେଖେଇଥିଲେ.... ଯେତେବେଳେ ମୁଁ ଏଇ ପଦ୍ଧତିକୁ କାର୍ଯ୍ୟକ୍ଷେତ୍ରରେ ପ୍ରୟୋଗ କଲି, ସେତେବେଳେ କ'ଣ ସବୁ ଘଟିଥିଲା.....ମୋ ପ୍ରତି ସେମାନେ କ'ଣ କଲେ..... ମୋର ଛାପା ଯନ୍ତ୍ର.....ଆଉ ମୋର ସ୍ପିନଷ୍ଟର୍ ଉପନ୍ୟାସ ପ୍ରକାଶିତ ହେବପରେ ନିଉଜିଲାଣ୍ଡର୍ ଅବସ୍ଥା କଳା ପ୍ରତି ପ୍ରତିକୂଳ ଥିଲା ବୋଲି ମୁଁ ଦୋଷ ଦେଉନି, କି ଦୋଷ ଦେବାର ପ୍ରଶ୍ନ ଉଠୁନି । ଆକାଶ ତଳେ କେଉଁଠି ସେପରି କଳା ପାଇଁ ଅନୁକୂଳ ନିର୍ଦ୍ଦିଷ୍ଟ ଜାଗାଟିଏ ନାହିଁ । ଆଉ ପ୍ରଭାବଶାଳୀ କଳା ତ ସବୁବେଳେ ବିରଳ । କଳା ବିସ୍ଫୋରିତ ହେଲା ଭଳି ପ୍ରକାଶିତ ହୁଏ, ନଚେତ୍ ମରିଯାଏ । ଆଉ ମୁଁ ଠିକ୍ ସରଳ ଭାବେ ସେପରି ହଠାତ୍ ପ୍ରକାଶିତ ହେଲି । କିନ୍ତୁ ବିଶ୍ୱାସ କରନ୍ତୁ, ତା' ବିନା ଆଘାତରେ ନୁହେଁ । ଜୀବନରୁ ଆପଣ ଯାହା କିଛି ଚାହାନ୍ତି, ତା' ପାଇପାରିବେ, କିନ୍ତୁ ରକ୍ତ ବିନିମୟରେ ଆପଣଙ୍କୁ ତା'ର ମୂଲ୍ୟ ଦେବାକୁ ହେବ । ମୁଁ ଯାହା ସବୁ ଚାହିଁଥିଲି, ସବୁ ଲାଭ କରିଛି....ଆଉ ମୂଲ୍ୟ ଦେଇଛି । ହେଲେ, ସେ ସବୁ ପରିବାର ଭିତରେ, ଦେଶ ଭିତରେ ଘଟିଥିବା ନାଟକ, ସେ ସବୁ ମୋ ଦେଶ ଭିତରେ କିମ୍ବା

ବାହାରେ, ଆପଣଙ୍କର ଦେଶ ଭିତରେ କି ବାହାରେ, ମୁଁ କହିବି ନାହିଁ, କହି ପାରିବି ନାହିଁ - ଯେ ପର୍ଯ୍ୟନ୍ତ ନିଉଜିଲାଣ୍ଡର ଗୋଟେ କବର ମୋତେ ଶାନ୍ତ-ଶୀତଳ କରିଦେଇନାହିଁ । ସେତିକିବେଳେ ମୋ ଆତ୍ମା ଜାଗି ଉଠିବ- ସେମାନଙ୍କୁ ଭୟଭୀତ କରିବାକୁ, ଅକୁହା କଥା ସବୁ କହିବାକୁ- ଅସଲ ସମୟର ବହୁତ ଆଗରୁ ମୋର ଏହି ଉକ୍ତିଟିକୁ ଆପଣ ମନେ ରଖନ୍ତୁ ।

ଏହି ପରିପ୍ରେକ୍ଷୀରେ ମୁଁ ମୋର ଏଇ ଲେଖାକୁ ଆପଣଙ୍କ ଦେଶରେ ଉପସ୍ଥାପିତ କରୁଛି, ମୋ ଜୀବନର ସବୁକିଛି କାର୍ଯ୍ୟର ବିବରଣୀ ଆପଣଙ୍କ ପାଠକମାନଙ୍କ ଆଗରେ ବାଢ଼ି ଦେଉଛି । ଯେଉଁ ଶିକ୍ଷକ-ଶିକ୍ଷୟିତ୍ରୀ ମୋ ପାଖକୁ ଲେଖୁଥିଲେ, ସେମାନଙ୍କ ନିକଟକୁ ଆଉ ଆମେରିକାର ମହିଳା, ସାମ୍ବାଦିକ, ସମୀକ୍ଷକ, ବିଶ୍ୱ ବିଦ୍ୟାଳୟର ଅଧ୍ୟାପକ ଏବଂ ସର୍ବୋପରି ସୁରୁଚି-ସମ୍ପନ୍ନ ଅବିବାହିତା କିଶୋରୀମାନଙ୍କ ନିକଟକୁ ପଠାଉଛି । ସେମାନେ ତାଙ୍କର ଚିଠିରେ ମୋ ନିକଟକୁ ତାଙ୍କର ସର୍ବୋତ୍ତମ ଭାବଧାରା ପଠେଇଥିଲେ । ମୁଁ ମୋର ମହତ୍ତର ଚିନ୍ତାଧାରାକୁ ତାଙ୍କ ନିକଟକୁ ପଠାଉଛି । ସେମାନଙ୍କ ମଧ୍ୟରୁ କେତେଜଣ ମୋ ସହିତ ଏକମତ ହେବେ, ଆଉ କେତେଜଣ ଭିନ୍ନ ମତ ପୋଷଣ କରିବେ । ଯେଉଁମାନେ ଏକମତ ହୋଇ ପାରିବେ ନାହିଁ, ସେମାନେ ତାଙ୍କର *ବିଚାରବନ୍ତ ଉଦାରତା* ସହିତ ଏହାର ସମୀକ୍ଷା କରିବେ- ଜୀବନର ଅଭିଜ୍ଞତାରୁ ମୁଁ ଏତିକି ଶିକ୍ଷା କରିଛି । ସେଇ ଦୁଇଟି ପଦକୁ ଗୁରୁତ୍ୱ ଦିଅନ୍ତୁ : ବିଚାରବନ୍ତ, ଉଦାରତା । ମୁଁ ଅଧିକ ଗୁରୁତ୍ୱ ଦେଉଛି, ଶେଷପଦ ଉଦାରତାକୁ..... । ଆପଣଙ୍କ ଦେଶରେ ମୋର କେତେକ ଲେଖା ଉପରେ କଠୋର ସମାଲୋଚନା ବେଳେବେଳେ ପ୍ରକାଶିତ ହୁଏ । କିନ୍ତୁ, କାହିଁ କେବେହେଲେ ତ ସେ ଆଘାତରେ ମୋର ରକ୍ତ-ପ୍ରବାହ ବାଧା ପାଇନି ! ବରଂ, ମୁଁ ଅନୁଭବ କରିଛି-ପ୍ରତିଟି ଲେଖନୀରୁ ଝରିପଡ଼ିଛି ହୃଦୟର ଉଦାରତା !!

'ସୃଜନାତ୍ମକ ଶିକ୍ଷା ପଦ୍ଧତି' ମୁଁ ମୋ ଦେଶରୁ ଆପଣଙ୍କ ଦେଶକୁ ପଠାଉଛି । ବବ୍ ! ଏହାକୁ ମୁଁ ଗୁରୁତ୍ୱପୂର୍ଣ୍ଣ ମନେ କରୁଛି । 'ସ୍ପିନଷ୍ଟର୍' ଉପନ୍ୟାସରେ ଆନ୍ନା ଭୋରୋନ୍ତୋସଭ୍ ଯେପରି କହିଛି, ''ମୁଁ ଯାହା ବିଶ୍ୱାସ କରୁଛି, ତାହା ଅବଶ୍ୟ କରିବି । ଯାହା କରୁଛି, ସେଥିରେ ମୋର ବିଶ୍ୱାସ ଅଛି । କିଛି କରିବା ପାଇଁ ଜୀବନକାଳ ଅତି ଛୋଟ ।'' ଏଇଟା ସାର୍ବଜନୀନ ବୋଲି ମୋର ବିଶ୍ୱାସ ।

ଗୋରା ପାଇଁ, କଳା ପାଇଁ, ହଳଦିଆ ପାଇଁ ଆଉ ମାଟିଆ ପାଇଁ.....ଏହା ସାର୍ବଜନୀନ । ଅତ୍ୟନ୍ତ ଦୁଃଖ ଓ ପ୍ରାଣମୂର୍ଚ୍ଛା ପ୍ରୟୋଗରେ ସଂଖ୍ୟା ଲଘୁ ସଂପ୍ରଦାୟକୁ ଭିନ୍ନ ସଂସ୍କୃତି ଶିଖିବାକୁ ପଡୁଛି !!

ଆଉ ଗୋଟିଏ ପ୍ରଶ୍ନ ରହିଯାଇଛି । ସେ କଥା ଆପଣ ପଚାରି ନାହାନ୍ତି । ଯେଉଁ ସବୁ ପୁସ୍ତକ ମୁଁ ପ୍ରସ୍ତୁତ କରିଥିଲି ଏବଂ ସେ ବିଷୟ ଏ ପୁସ୍ତକରେ ସବୁବେଳେ କହି ଚାଲିଛି, ସେ ପୁସ୍ତକଗୁଡ଼ିକ ଏବେ କେଉଁଠି ? ଏସବୁ ପୁସ୍ତକ ମୁଁ ଆରମ୍ଭ କରିଥିଲି, ଚବିଶ ବର୍ଷ ତଳେ, ଶିକ୍ଷାଦାନର ପ୍ରଥମ ସପ୍ତାହରେ । ଲେଖିବା, ପରଖ କରିବା, ବଛାବଛି କରି କିଛି ଛାଡ଼ି କିଛି ମିଶେଇବା, ସୁଧାରିବା, ଉନ୍ନତତର କରିବା, ପୁଣି ପରୀକ୍ଷା କରି ସୁଧାରିବା, ପୁଣି ପରୀକ୍ଷା ନିରୀକ୍ଷା, ପୁଣି ମାର୍ଜିତ କରିବା, ଅସଂଖ୍ୟ ଛବି ଆଙ୍କିବା, ଶହ ଶହ ଛବିରେ ରଙ୍ଗ ଦେବା..... ବର୍ଷ ବର୍ଷ ଧରି ଛବିଳ ପାଠ୍ୟ ତିଆରିରେ ଲାଗି ପଡ଼ିଥିଲି.....ଏ ସବୁ ତ ଆପଣ ସାତ ବର୍ଷ ପୂର୍ବ ଦିନଲିପିରୁ ଦେଖିବେ । ମୋ ପାଇଁ ସେ ସବୁ ବଂଧେଇ କରିଦେବାକୁ ମୁଁ ଜଣେ ବହି ବଂଧାଳୀ ପାଖକୁ ଏହାକୁ ଧରି ଯାଇଥିଲି । ସେ ମଧ୍ୟ ବେଶ୍ ବଢ଼ିଆ କାମଟିଏ କରି ଦେଇଥିଲା । ଟାଣୁଆ ମଲାଟ ମଡ଼ାଇ ସେ ସୁନ୍ଦର ଭାବେ ବନ୍ଧେଇ କରି ଦେଇ ଥିଲା । ପାଠ୍ୟ ପୁସ୍ତକ, ପ୍ରଥମ ଭାଗ ହଳଦିଆ, ଦ୍ୱିତୀୟ ଭାଗ ନୀଳ, ତୃତୀୟ ଭାଗ ଶାଗୁଆ ଏବଂ ଚତୁର୍ଥ ଭାଗ ଲାଲ୍ ରଙ୍ଗର ଥିଲା । ସବୁ ପୁସ୍ତକର ଉପର ଭାଗର ଗୋଟିଏ କୋଣରେ ଗାଢ଼ ଉଜ୍ଜଳ ରଙ୍ଗରେ ମାଓରି ଘରର ଢାଞ୍ଚାକୁ ନେଇ ଗୋଟିଏ ଚିତ୍ର ଏବଂ ପ୍ରତି ମଲାଟରେ ପୁସ୍ତକର ମୁଖ୍ୟ ଚରିତ ଛୋଟ ମାଓରି ଛୁଆ- ସାଦାସିଧା ପେଣ୍ଟ୍ ସାର୍ଟ ପିନ୍ଧି ସମସ୍ତଙ୍କଠାରୁ ଅଲଗା ଠାଣିରେ ଓ ଚାହାଣିରେ-ପ୍ରତି ପୃଷ୍ଠାରେ, ଭିନ୍ନ ଭିନ୍ନ ଭଙ୍ଗୀରେ । କାଗଜଗୁଡ଼ିକ ଥିଲା ବେଶ୍ ବହଳା ଓ ଟାଣୁଆ; ସେଥିରେ ରହିଥିଲା ଶହ ଶହ ପାଣି-ରଙ୍ଗର ଛବି ଆଉ ପିଲାଙ୍କ ମନଲାଖି ମୋଟା ମୋଟା ବଡ଼ ଅକ୍ଷରର ଛପା ।

ସେତେବେଳେ ମନେ ହେଉଥିଲା.... ଏବେ ମଧ୍ୟ ମନେ ହେଉଛି । ପଛକୁ ଫେରିଚାହିଁଲେ ପୂରାପୂରି ନ ହେଲେ ବି......ଅନେକ ଅଂଶରେ ଲାଗୁଛି ଯେ, ମୋ ସ୍ୱପ୍ନ ସାକାର ହେବାକୁ ଯାଉଥିଲା । ମୁଁ ସେ ସବୁକୁ ନାଆଁ ଦେଇଥିଲି "ଭିନ୍ନ ଭିନ୍ନ ସ୍ତର ଦେଇ ପଢ଼ିବା ପୁସ୍ତକମାଳା" (Transition Readers)

ତେବେ, ସେ ସବୁ ଯାହା ହେଉ, ଏସବୁ ପରେ ଆଉ ଏକ ପାରିବାରିକ ନାଟକ ଘଟିଗଲା- ଯାହା ମୁଁ ସମସ୍ତଙ୍କୁ ଜଣାଇଛି । ଏପରି ଗୋଟିଏ ପୁସ୍ତକମାଳା ଦିନ ଆସିଲା, ଯେଉଁ ଦିନ ଗୋଟିଏ ଚିଠିରେ ମୁଁ ପଢ଼ିଲି ଯେ, ମୋର ସେଇ (Transition Books) କୁ ଜାଳି ଦିଆଯାଇଛି । ଭୁଲରେ... କିନ୍ତୁ ମୋ ଦ୍ୱାରା ନୁହେଁ ।

ପ୍ରାୟ ତତ୍କ୍ଷଣାତ୍ ମୁଁ ପୁଣି କାମ ଆରମ୍ଭ କରିଦେଲି ଏବଂ ଦୁଇଖଣ୍ଡି ପୁସ୍ତକର ପାଣ୍ଡୁଲିପି ପ୍ରାୟ ଲେଖିଦେଲି । କିନ୍ତୁ ଏସବୁ ଆଗର ପୁସ୍ତକ ପରି ନଥିଲା, ତେଣୁ ଲେଖା ବନ୍ଦ କରିଦେଲି । ମୋର ଆଗର ସେଇ ଅନୁରକ୍ତି ଓ ନିଷ୍ଠା ଆଉ ନଥିଲା, ହାତରେ ମଧ୍ୟ ସେଇ କଳା-କୌଶଳର ପ୍ରଖରତା ନଥିଲା- ଅବଶ୍ୟ ଏହା ସହିତ ବୟସର କୌଣସି ସମ୍ପର୍କ ନଥିଲା । ସତ କଥା ହେଉଛି ଏଇ ନୂଆ ପୁସ୍ତକଟିକୁ ମୁଁ ଏଠାକାର ଜଣେ ପ୍ରକାଶକଙ୍କୁ ଦେଖାଇଥିଲି ମାତ୍ର ଏଥିରେ ମୁଁ ଅନେକଗୁଡ଼ିଏ ରଙ୍ଗ ବ୍ୟବହାର ହେବାକୁ ଚାହିଁଥିଲି । ସେମାନେ ରଙ୍ଗ ସଂଖ୍ୟାକୁ ଦୁଇକୁ କମେଇଦେବାକୁ କିମ୍ବା କେବଳ ସାଧାରଣ ମୌଳିକ ରଙ୍ଗରେ ରଙ୍ଗୀନ କରିବାକୁ ପରାମର୍ଶ ଦେଲେ । ସେମାନେ ଠିକ୍ ଓ ଯୁକ୍ତିସଙ୍ଗତ କଥା କହୁଛନ୍ତି ବୋଲି ମୁଁ ବୁଝି ପାରିଥିଲି.......ଯଦିଓ ମୁଁ ସବୁବେଳେ ଯୁକ୍ତିସଙ୍ଗତ ଭାବେ ବିଚାରବନ୍ତ ନୁହେଁ । ସେମାନେ ଅନେକ ସମୟ ଦେଇ ବିଚାର ବିମର୍ଷ ଚଳାଇଲେ ଏବଂ ଦରିଆପାରି ଛାପାଖାନାରେ ଗୋଟିଏ ପୃଷ୍ଠାର ଛପାଖର୍ଚ୍ଚ ପଚାରି ବୁଝିଲେ.....ଗୋଟିଏ ପୃଷ୍ଠାର ସେପରି ରଙ୍ଗୀନ ଛପା ଖର୍ଚ୍ଚ ପଞ୍ଚଷଠି ପାଉଣ୍ଡ ! ତେଣୁ ପ୍ରକୃତରେ ସେମାନଙ୍କର ଆଉ କିଛି କରିବାର ନଥିଲା । ତେଣୁ ଏହି ବିରାଟ ପୁସ୍ତକଟି ଜୋସେଫ୍‌ଙ୍କ କୋଟରେ ଥିବା ରଂଗ ଅପେକ୍ଷା ଅଧିକ ସଂଖ୍ୟକ ରଙ୍ଗ ନେଇ....ମୋ ଭାବଧାରା ଓ ସାଧନାର ସବୁ ପ୍ରତିଧ୍ୱନିକୁ ଧରିରଖି.... ମୋ ପୁସ୍ତକ ଥାକରେ ପଡ଼ି ରହିଛି । ମୁଁ ବରଂ କହିବି, ଥାକ ଭିତରୁ ତା' କଳରବ ଶୁଭୁଛି । ଅଧିକଂନ୍ତୁ, ମୁଁ ତ ସେପରି କିଛି ବଡ଼ କଳାକାର ନଥିଲି ।

ଆପଣ "କିଛି ଶୀତଳ ଆଉ ସତ୍ୟ ଘଟଣା" ବିଷୟରେ ଲେଖିବାକୁ କହିଛନ୍ତି.... କିନ୍ତୁ ସେପରି କିଛି ଶୀତଳ ସତ୍ୟ ଅଛି ବୋଲି ମୁଁ ଜାଣେ ନାହିଁ । ଆଉ, ଏଇ ନିର୍ଦ୍ଦିଷ୍ଟ ବିଷୟରେ ଶୀତଳତା ଭଲା କିପରି ରହିବ ? ମୋ ପାଖରେ ତ ସୃଜନାତ୍ମକ ଶିକ୍ଷାତତ୍ତ୍ୱର ଦୀର୍ଘ ଏବଂ ଉତ୍ତପ୍ତ ସତ୍ୟ ମାତ୍ର ରହିଛି- ଯା'ର ଉତ୍ତାପ ଏଇ କାଗଜ ଆଉ ମୋତେ ଉତ୍ତପ୍ତ କରି ରଖିଛି ।

ଆଜି ଉପରବେଳା ଏକା ଏକା ନିଆଁ ପାଖରେ ବସି ମୁଁ ଆପଣଙ୍କୁ ପାଖକୁ ପେନ୍‌ସିଲ୍‌ରେ ଲେଖୁଛି । ମୋର ଉଦ୍ଦେଶ୍ୟ ହେଉଛି ଏହାକୁ ସୁଧାରିବି, ପୁଣି ଭଲ ଭାବେ ଲେଖିବି, ପରଖ କରି ଟାଇପ୍ କରିବି....ସଂକ୍ଷିପ୍ତ କରିବି....କିନ୍ତୁ ଭୁଲି ଯାଆନ୍ତୁ ନାହିଁ.... ଆସନ୍ତା କାଲି । ମାତ୍ର ମୁଁ ଏସବୁ କିଛି କରି ପାରିବି ନାହିଁ । ମୁଁ ଏବେ ମୋ ଖାତାରୁ ଏ କାଗଜତକ ଚିରିବାକୁ ଯାଉଛି । କାଲିକି ଏ ସବୁ ଲଫାଫାରେ ଭରି ଡାକରେ ପଠେଇ ଦେବି । ପ୍ରଶାନ୍ତ ମହାସାଗରର ଆର ପାରିକୁ.... ପୁଣି ଆଉ ପଢ଼ିବାକୁ ନଥିବ । ପ୍ରକାଶ କରିବା ପାଇଁ ଏହା ବିଶେଷ ରୁକ୍ଷ ହେବ ବୋଲି ଭୟ କରନ୍ତୁ ନାହିଁ- ଏହାକୁ ମାର୍ଜିତ ଓ ଉଚିତ ବିରାମ ଚିହ୍ନଯୁକ୍ତ କରନ୍ତୁ ବା, ନ କରନ୍ତୁ । ଯେତେ ଓଲଟ-ପାଲଟ ଓ ବଙ୍କାଟଙ୍କା ହୋଇଥିଲେ ମଧ୍ୟ ମୋର ପ୍ରକୃତ ଉଦ୍ଦେଶ୍ୟ ମୋ ପାଠକମାନେ ନିଶ୍ଚୟ ବୁଝିବେ ।

ପରିଶେଷରେ ଆପଣଙ୍କୁ ଧନ୍ୟବାଦ ଜଣାଉଛି ଏବଂ ଆପଣଙ୍କ ସୌଭାଗ୍ୟ କାମନା କରୁଛି । ଏ କାମଟି ପୂର୍ଣ ହୋଇଥିବାରୁ ମୁଁ ଖୁସି । ଆଉ ଏପରି କଠିନ କାମ ପୁଣି ଆଉ କିଛି କରିବାକୁ ମୋତେ କେବେ କହିବେନି । କିନ୍ତୁ ମୁଁ ବଡ ଆଶ୍ୱସ୍ତି ଅନୁଭବ କରୁଛି....ଠିକ୍ ଚବିଶ ବର୍ଷ ତଳେ ଏଇ କାମ ଆରମ୍ଭ କଲାବେଳେ ଯେପରି ଅନୁଭବ କରୁଥିଲି । ଏ ଚିଠି ଆପଣଙ୍କ ନିକଟକୁ ପଠେଇ ମୁଁ ଅନୁଭବ କରୁଛି - ଜୀବନରେ ଯେତେ ଗଦ୍ୟ ରଚନା କରିଛି, ତା ଭିତରେ ମୋ ଜୀବନର ସବୁଠାରୁ ଅଧିକ ରୁକ୍ଷ କର୍କଶ ଗଦ୍ୟକୁ ମୁଁ ଛାପାଖାନାକୁ ପଠାଉଛି- ଆଉ ମୋର ସୃଜନାତ୍ମକ ଶିକ୍ଷାଦାନ ଯୋଜନା ଯାଉଛି ପାଠକମାନଙ୍କ ନିକଟକୁ- ସେମାନେ ବୁଝିବେ, ମୁଁ ଯାହା କହୁଛି.... ମୁଁ ଅନୁଭବ କରୁଛି : ମୋ ଜୀବନର ସାଧନା ସଂପୂର୍ଣ ହୋଇଛି । ଆଉ, ମୁଁ ଜାଣେ ବିଶ୍ରାମର ଅର୍ଥ କଣ ।

*ସ୍ନେହ ସହ,*

*ସିଲ୍‌ଭିଆ*

# ରଚନାତ୍ମକ ଶିକ୍ଷାଦାନ

## ଶିକ୍ଷା ମନରେ ନୂଆ ଭାବ ଜଗାଏ ।

ବ୍ୟକ୍ତିଗତ ସହଜ ପଠନ (Organic reading) ଏକ ନୂଆ କଥା ନୁହେଁ । ଇଜିପ୍ଟର ଛବିଲିପିରେ ତ ଗୋଟିଏ ପଦରେ ଧାଡିଏ ଧାଡିଏ କଥା ଥିଲା । ହେଲେନ୍ କେଲେର୍ (Hellen Keller)ଙ୍କ ପାଣି (Water) ପଦ ତ ଗୋଟିଏ ପଦିକିଆ ପୋଥି । ଟଲ୍‌ଷ୍ଟୟ ଏ ସମ୍ବନ୍ଧୀୟ ବେଶ୍ ପରଖ କରି ତାଙ୍କ 'ଚାଷୀ ବିଦ୍ୟାଳୟ' ଗଢ଼ିଥିଲେ । ଆଜି ଜାତିସଂଘର ଶିକ୍ଷା-ବିଜ୍ଞାନ ବୟସ୍କ ପୁରୁଖା ମଣିଷଙ୍କୁ ପାଠ ପଢେଇବାକୁ ଏଇ ବାଟରେ ହିଁ ଆପେଆପେ ଠିଆ ହୋଇଛି । ଗୋଟିଏ ମରୁଡି ଅଂଚଳରେ ପାଠ ପଢ଼େଇବାକୁ ଗଲେ, ଶିକ୍ଷକ ଜଣେ 'ଫସଲ', 'ମାଟି', 'ଭୋକ', 'ସାର' ପରି ପଦ ଛାଡି ଆଉ କେଉଁ ପଦ ଭଲା ପଢ଼େଇ ବସିବ ? ଅପାଠୁଆ ଆଦିବାସୀ ପିଲାଙ୍କୁ ପଢ଼େଇବା ପାଇଁ ଜଣିକିଆ ପିଲା ବିଷୟ ବିଚାରକୁ ନିଆଯାଏ ବୋଲି ଭାବିବା ଠିକ୍ ନୁହେଁ । ଗୋଟିଏ ଧରଣରେ ବଢ଼ିଆସିଥିବା ପିଲାଙ୍କୁ ଆଉ ଗୋଟିଏ ବିଚାରଧାରାକୁ ନେବାକୁ ହେଲେ, ଜଣକିଆ ପିଲାର ମନ ହେଉଛି ମୂଳ କଥା । ନିଉଜିଲାଣ୍ଡର ମାଓରି (Maori) ଆଦିବାସୀ ପିଲାଙ୍କୁ ଏଇ ଧରଣରେ ପଢ଼େଇ ଲେଖିକା ସଫଳ ହୋଇଥିଲେ । ଆଉ ସବୁଠାରେ ମଧ୍ୟ ସେ ବାଟରେ ସଫଳତା ମିଳିପାରିବ । ''ନଇକେ ଫାଙ୍କ, ଦେଶକେ ବାଙ୍କ'' । ସେପରି ଦେଶ ଅନୁସାରେ ବେଶ । ପିଲାର ମନର ପଦ, ତା' ହାତର ଅଙ୍କା ଛବି, ତା' ପାଇଁ ଅସଲ ପାଠ ପଢ଼ାର ବାଟ ।

ଜଣେ ଆଦିବାସୀ ପିଲାର ମନକୁ ଆସୁଥିବା ପଦଗୁଡ଼ିକ ତା'ପାଇଁ ଭଲ । ସେହିପରି ସହରରେ ରହୁଥିବା ପିଲାଟିଏ ପାଇଁ ଗାଡ଼ି, ରେଳଗାଡ଼ି, ଉଡ଼ାଜାହାଜ ଆଦି । ନିହାତି ମଫସଲର ପିଲାଟି 'ଘୋଡ଼ା' ଭଳି ପଦ ଭାବିଥାଏ । ସବୁଠି ସେଇ ଚଳନ୍ତା ଜିନିଷ, ବେଗରେ ଧାଉଁଥିବା ଜୀବ ମନକୁ ଆସେ । ନିଉଜିଲାଣ୍ଡର ଝିଅଟିଏ ସାଧାରଣ ଭାବେ ପହିଲେ ଘର କଥା କହେ । ଏଇ ନୀତି ଅନୁସାରେ ମୁଁ ପହିଲେ କେତେକ ଅକ୍ଷର-ଶିକ୍ଷା ବହି ଲେଖିଥିଲି । କିନ୍ତୁ

ଟୋଙ୍ଗାର ପିଲାମାନେ ପହିଲେ ଗଛ ଛବି ଆଙ୍କିଲା ବେଳକୁ ସାମୋଆନ୍‌ର ପାଞ୍ଚ ବରଷିଆ ପିଲେ ଦେଉଳ (ଚର୍ଚ୍ଚ) ଛବି ଏବଂ ଚୀନ ପିଲେ ଫୁଲ ଛବି ଆଙ୍କିଥାନ୍ତି । ତେଣୁ ଏଇଟା ହେଉଛି ବାଟ । ଦେଶ,କାଳ ଅନୁସାରେ ମନକୁ ମନ ପିଲାଟିଏ ଭାବୁଥାଏ, ନିଜକୁ ଗଢୁଥାଏ ।

ଏ କଥା ଜାଣିଲାପରେ ସବୁ ପିଲାଙ୍କ ପାଇଁ ଗୋଟିଏ ବହି କେମିତି ଲେଖାଯାଇପାରିବ ? ଭଲ ମନ୍ଦ ଭିନ୍ନ କଥା ପିଲାଟିର ମନରେ କ'ଣ ଅଛି ତାହା ନଜାଣି ବହିରେ କ'ଣ ଲେଖିବା ? ତେଣୁ ମୁଁ ସବୁବେଳେ ଏଇ କଥା କହି ଆସୁଛି । କାରଣ, ଏଇ ପହିଲି ବହିଟି କେବଳ ପଢ଼ି ଜାଣିବା ପାଇଁ ନୁହେଁ । ଏଇଟା ହେବ ଗୋଟିଏ ସେତୁବନ୍ଧ : ପିଲାର ସ୍ଥିତି ଓ ଆମର ଲକ୍ଷ୍ୟ ମଧ୍ୟରେ ।

ଜାଣିଥିବା ବିଷୟରୁ ଜାଣି ନଥିବା ନୂଆ ନୂଆ ବିଷୟକୁ (ଜ୍ଞାତରୁ ଅଜ୍ଞାତ), ଗୋଟିଏ ସାଧାରଣ ଚଳଣି ନୂଆ ଉନ୍ନତ ଚଳଣିକୁ ଚଳେଇ ନେବାପାଇଁ ପାଠ ପଢ଼ାଯାଏ । ଅସଲ ଲକ୍ଷ୍ୟ ହେଲା, ମଣିଷର ଭିତରଟା ଖୋଲିଯାଇ ଯେପରି ନିଜକୁ ପ୍ରକାଶ କରିପାରିବ ।

ଜଣିକିଆ ପାଠପଢ଼ା ସାଧାରଣତଃ ଜଣକର ମନର ପଦକୁ ନେଇ ହୋଇଥାଏ । ସେହିପରି ଆମେ ସବୁ ପିଲାଙ୍କ ନିଜ ନିଜର ମନରେ ଥିବା ପଦଗୁଡ଼ିକୁ ନେଇ ପଢ଼େଇବା । ଏଇ ପହିଲି ପଦ, ତା'ର ପହିଲି ପସନ୍ଦ । ଭଲ୍‌ଟାଏରେ ( Voltaire) କହିଛନ୍ତି ''ଜାତିଟିଏକୁ ଗଢ଼ିବାକୁ ହେଲେ, ତା'କୁ ଗୋଟିଏ ଭାଷା ଶିଖେଇବାକୁ ହୁଏ । କାରଣ : ମଣିଷ ନିଶ୍ଚୟ ପହିଲେ ପାଟି (ଶବ୍ଦ, ଧ୍ୱନି) କରିଥିବ । ତା'ର ଚାହିଦା ଜଣେଇବାକୁ- ସେ ପହିଲେ କଣ ଦରକାର କରୁଛି ଜଣେଇବାକୁ-ତା' ପରେ ପଦ....ଏକପଦିକିଆ.... ।

''ପୁରୁଣା ଜାତିଗୁଡ଼ିକ ଭିତରୁ ଅଧିକାଂଶ ତାଙ୍କର ସେଇ ପଦିକିଆ କଥାଗୁଡ଼ିକୁ ବଂଚେଇ ରଖିଛନ୍ତି । ସେଇଟା ତାଙ୍କର ମନକୁ ଅତି ବେଶି ଛୁଏଁ । ଚୀନ ଲୋକେ ଏବେ ବି ସେଇ ପଦିକିଆ ଅକ୍ଷରଗୁଡ଼ିକ ରଖିଛନ୍ତି ।

''ଚାଲ୍‌ଡ଼ିଆନ୍‌ସ (Chaldeans) ମାନେ ଅନେକ ଦିନ ଧରି ତାଙ୍କର ଜାଣି ପାରିଥିବା ବିଷୟ ଓ ନିୟମଗୁଡ଼ିକୁ ଇଟା ଉପରେ ଛବି ଲିପିରେ ଖୋଳେଇ ରଖୁଥିଲେ । ଏଥିରୁ ତାଙ୍କର ମନର ଭାବ ଓ ଚଳଣି ବୁଝାଯାଏ । ସେମାନେ

ଯାହାକିଛି ଅନ୍ୟମାନଙ୍କୁ ଜଣେଇବାକୁ ଚାହୁଁଥିଲେ, ସେସବୁ ପହିଲେ ଆଙ୍କି ଦେଇଛନ୍ତି । ପରେ ଠିକଣା ସମୟରେ ସେମାନେ ବେଶ୍ ବୁଝି ହେଲା ଭଳି ଛବି ଆଙ୍କିଲେ, ସଂକେତରେ....ବଲ୍ଲମ ବୁଝାଏ, ଯୁଦ୍ଧ;ଆଖି ଛବି ବୁଝାଏ ଦେବତା ଗୁଣ ।''

୧୯୫୭ ଜୁଲାଇରେ ଟଲ୍‌ଷ୍ଟୟ ତାଙ୍କ ଦିନଲିପିରେ ଲେଖିଥିଲେ :

''.....ସବୁଠାରୁ ମୁଖ୍ୟ ବିଷୟ ହେଉଛି, ମୋ ଭିତରେ ବଡ଼ ସ୍ପଷ୍ଟ ଓ ଦୃଢ଼ ଭାବନାଟିଏ ଜାତ ହେଉଚି, ସାରା ଦେଶପାଇଁ ଗୋଟିଏ ବିଦ୍ୟାଳୟ ଖୋଲନ୍ତି ।''

ଦୁଇ ବର୍ଷ ପରେ ୧୮୫୯ ସେ ତାଙ୍କ ଭାବନାକୁ କାମରେ ଲଗାଇଲେ। ସେ ଆବେଗରେ ଯେପରି ସବୁକାମ କରୁଥିଲେ, ପାଠ ପଢ଼େଇବାରେ ସେପରି ଲାଗିଗଲେ । ପ୍ରାୟ ସବୁ କାମ ଛାଡ଼ି ସେ ଚାଷୀମାନଙ୍କ ପିଲାଙ୍କ ପାଇଁ ଜୀବନର ତିନୋଟି ବର୍ଷ କାମ କରିଥିଲେ । ବିଦ୍ୟାଳୟରେ ଚଳୁଥିବା ପ୍ରଣାଳୀ କିମ୍ବା ଶ୍ରେଣୀ ସହିତ ତାଙ୍କର ପାଠ ପଢ଼ାଇବାର ଢାଞ୍ଚାରେ କିଛି ମେଳ ନଥି ଲା । ଟଲ୍‌ଷ୍ଟୟ ଲେଖିଥିଲେ ଯେ ସେହି ବିଦ୍ୟାଳୟ ପ୍ରତି ତାଙ୍କର ଛାତିରେ ଗଭୀର ମମତା ଥିଲା । ତାଙ୍କରି ପରିଚାଳନାରେ ଯେଉଁ ଯୁବ କର୍ମୀମାନେ ତାଙ୍କ ସହ ଏଥିରେ କାମ କରୁଥିଲେ, ସେମାନଙ୍କ ଛାତିରେ ମଧ୍ୟ ସେପରି ଆବେଗ ରହିଥିଲା, ମମତା ରହିଥିଲା । ଠିକ୍ ସେହିପରି ଚଳି ଆସୁଥିବା ସବୁ ପ୍ରକାର ପାଠପଢ଼ା ଢାଞ୍ଚା ଓ ନୀତି ନିୟମକୁ ସେ ପୂରାପୂରି ଦୂରେଇ ଦେଇଥିଲେ । ପହିଲେ ସେ ପିଲାଙ୍କୁ ଭୟ ଓ ତାଡ଼ନାରୁ ଖୋଲି ଦେଇଥିଲେ, ଯେପରି ସେଇ ପିଲେ ତାଙ୍କୁ ଶିଖେଇବେ ପାଠ ପଢ଼େଇବାର ଉପାୟ ଆଉ ନୀତି ନିୟମ । ତାଙ୍କ ବିଦ୍ୟାଳୟରେ ତାଙ୍କର ଛାତ୍ରଛାତ୍ରୀମାନେ ନିଜ ନିଜର ରଚି ଅନୁସାରେ ପଢ଼ିବା ବିଷୟ ବାଛୁଥିଲେ ଏବଂ ନିଜ ନିଜର ଖୁସିରେ କେତେ କାମ କରିବେ ତାହା ଠିକ୍ କରୁଥିଲେ । ଜାଣିବାପାଇଁ ଯାହା ପିଲେ ଯାହା ଚାହୁଁଥିଲେ ଶିକ୍ଷକ ସେଥିରେ କେବଳ ସାହାଯ୍ୟ କରୁଥିଲେ । ତାହା ଥିଲା ଶିକ୍ଷକଙ୍କ କାମ । ପିଲାଏ ନିଜ ନିଜର ବାଟରେ ଯାହା କିଛି ଜାଣିବାପାଇଁ ମନ କରୁଥିଲେ ସେଥିରେ ଯାହାକୁ ଯେପରି ସାହାଯ୍ୟ ଦରକାର ପଡୁଥିଲା, ତାହାକୁ ସେପରି ସାହାଯ୍ୟ କରୁଥିଲେ । ଶିକ୍ଷକ ବେଶ୍ ଭାବି ଚିନ୍ତି ଜଣ ଜଣ କରି ପିଲାଙ୍କୁ ଯା' ବାଟରେ ତା'କୁ ସାହାଯ୍ୟ କରୁଥିଲେ ।



ଟଲ୍‌ଷ୍ଟୟଙ୍କର ଏଇ ଖୋଲା(ମୁକ୍ତ) ବିଦ୍ୟାଳୟରେ କିଛି କାମ ତାଲିକା (କାର୍ଯ୍ୟ ନିର୍ଘଣ୍ଟ) ନଥିଲା, କିଛି ଦଣ୍ଡ ନଥିଲା, କିଛି ଧରାବନ୍ଧା ନୀତି ନିୟମ ନଥିଲା । ସେଠାରେ ପିଲାଙ୍କୁ କିଛି ହେଲେ ପଢ଼ିବାକୁ ବାଧ୍ୟ କରାଯାଉ ନଥିଲା । କିନ୍ତୁ ଅତି କମ୍ ସମୟରେ ସେଠାରେ ଯେଉଁ ସଫଳତା ମିଳିଥିଲା, ସେଥିରେ ସଭିଏଁ ଚମକି ଉଠିଥିଲେ । ପିଲାଏ ସାରାଦିନ ସେଇ ବିଦ୍ୟାଳୟରେ ଖୁସିରେ ରହିଯାଉଥିଲେ । ଘରକୁ ଫେରିଯିବାକୁ ରାଜି ହେଉ ନଥିଲେ ।

ପଚାଶ ବର୍ଷ ପରେ, ସେଇ ଚାଷୀମାନଙ୍କ ଭିତରୁ ବେସିଲ୍ ବୋରୋସୋଭ୍ ନାମକ ଜଣେ ଚାଷୀ କହିଥିଲେ,ସେଠାରେ ଘଣ୍ଟା ଘଣ୍ଟା ସମୟ ବି ମିନିଟ୍‌ଟିଏ ପରି ଲାଗୁଥିଲା । ଜୀବନଟା ଯେତେବେଳେ ଆନନ୍ଦରେ ଭରି ଯାଏ, ସମୟକୁ କିଏ ହିସାବ କରେ ? ଚୋରି ଧନରେ ଜଣେ ରାଜା ବନିଲାପରି ଆନନ୍ଦରେ ହସ ଖୁସିରେ, ଆମେ ଏତେ ଚଂଚଳ ଏତେ ଆଗକୁ ପାଠପଢ଼ାରେ ମାଡ଼ି ଚାଲିଲୁ ! ହେଲେ ଆମର କେହି ରାଜା ନଥିବାରୁ ଆମେ ଦୁଃଖ କରୁଥିଲୁ; କିନ୍ତୁ ଆମକୁ ପାଖରେ ନପାଇଲେ ଆମ ରାଜା ଦୁଃଖ କରୁଥିଲେ !! ଆମ ଭିତରେ ଛାଡ଼-ବାଡ଼ ନଥିଲା । କେବଳ ରାତି ଆମକୁ ଅଲଗା କରି ଦେଉଥିଲା ! ଆମ ଭିତରେ କଥା ଭାଷାରେ ତ ଶେଷ ନଥିଲା । ଆମେ ତାଙ୍କୁ ବହୁତ କଥା କହୁଥିଲୁ : ଯାଦୁକର ବିଷୟରେ, ବଣ ପାହାଡ଼ ବିଷୟରେ, ଭୂତ ଡାଆଣି,..''

ଆଲ୍‌ଜେରିଆର ପାହାଡ଼ିଆ ଅଞ୍ଚଳରୁ ଜଣେ ଆନ୍ତର୍ଜାତୀୟ ସ୍ୱେଚ୍ଛାସେବୀ ଲେଖିଛନ୍ତି :

ପ୍ରାୟ କୋଡ଼ିଏ ଜଣ ପିଲା ତାଙ୍କ ଶିକ୍ଷୟିତ୍ରୀ କଳାପଟାରେ ଲେଖି ଦେଇଥିବା ସେମାନଙ୍କର ଗାଁର ନାଆଁଟିକୁ ଏକାଠି ବଡ଼ପାଟିରେ ପଢୁଥିଲେ । ଶିକ୍ଷୟିତ୍ରୀ ତାଙ୍କ ଆଗରେ ଗଛ ମୂଳରେ ବସିଥିଲେ । ପିଲେ ବେଶ୍ ଖୁସିରେ

ନିଜ ଗାଁର ନାଁଟିକୁ ଥରକୁ ଥର କହୁଥିଲେ । ସେମାନଙ୍କର ଯେପରି ଖୁସି, ସେପରି ଗୌରବବୋଧ ଥିଲା ।

''କିନ୍ତୁ ତା'ର ପରଦିନ ଉପରବେଳା ତିନି ଜଣ ଦରବୁଢ଼ା ଲୋକ ଆସି ତାଙ୍କୁ ନାଆଁ ଲେଖା ଶିଖେଇଦେବାକୁ ଆମକୁ କହିଲେ ।

'ତୁମେମାନେ କେବଳ ନାଆଁଟି ଲେଖି ଜାଣିବାକୁ କାହିଁକି ଚାହୁଁଛ ?'

ସେମାନଙ୍କ ଭିତରୁ ଜଣେ ବୁଝେଇ ଦେଲେ, 'ଡାକଘରେ ଦସ୍ତଖତ କରିବାକୁ । ମୁଁ ଯଦି ମୋର ରେଜିଷ୍ଟ୍ରି ଚିଠିଟି ପାଇବାକୁ ଦସ୍ତଖତ କରିପାରିବି, ତେବେ ସାକ୍ଷୀମାନଙ୍କ ପାଇଁ ଖରଚ ଲୋଡ଼ା ହେବ ନାହିଁ ।'

''ତୁମେ ସେପରି ଚିଠି ବେଳେବେଳେ ପାଉଛ ?''

''ହଁ, ବେଳେବେଳେ । ଫ୍ରାନ୍‌ସରେ ଥିବା ମୋ ପୁଅ ପାଖରୁ ।''

''ଆମେ ବେଶ୍ ଲାଗି ପଡ଼ିଲୁ । ମଶାରି ଭିତରେ ବିଶ୍ରାମ ନନେଇ ଏ କାମରେ ଲାଗିଗଲୁ । କିନ୍ତୁ ଆମ ଅଜାଣତରେ ଆମେ ସେଇ ଗୁଳାରେ ପଡ଼ି ଯାଇଥିବା ପାଠପଢ଼ା ଜରରେ ପଡ଼ି ଯାଇଥିଲୁ !!''

ନୂଆ ପଢ଼ାଳୀମାନଙ୍କୁ ଜଣ ଜଣ କରି ମନ ଅନୁସାରେ ପାଠପଢ଼ାଇବା ନୂଆ ନୁହେଁ । ନୂଆ ହେଉଛି, ତାହାକୁ ପରିତ୍ୟାଗ କରିବା ।



## ଦରକାରୀ ପଦ

ମାଓରି ଛୁଆଙ୍କୁ ଯେ କୌଣସି ବିଷୟ ପଢ଼ାଇବାକୁ ହେଲେ ଗୋଟିଏ କଥା ମନେ ରଖିବାକୁ ହେବ । ତାଙ୍କର ନିଜ ସଂସ୍କୃତି ଓ ଶିଖିବାକୁ ଯାଉଥିବା ସଂସ୍କୃତି ମଝିରେ ପାଠପଢ଼ା ଘରଟି ଗୋଟିଏ ସେତୁର କାମ କରିଥାଏ । ଏଇ ସେତୁବନ୍ଧ ବା, ପୋଲ ଯେତେ ଅଧିକ ଟାଣୁଆ ହେବ, ମାଓରି ପିଲାଟି ତା ଜୀବନରେ ସେତେ ଅଧିକ ସଫଳ ହୋଇପାରିବ ।

ଅନେକ ସମୟରେ ନୂଆ ସଂସ୍କୃତିକୁ ଆପଣେଇ ନେବାର ଶିକ୍ଷାରେ ମାଓରି ପିଲେ ବିଫଳ ହୋଇଥାନ୍ତି । ଦୁଇଟି ସଂସ୍କୃତିକୁ ଯୋଡ଼ି ପାଠ ପଢ଼ିବା ଭିତରେ କେଉଁଠି ଭୁଲ୍ ହୋଇଯାଏ । ଜାଣତରେ କି ଅଜାଣତରେ ଖଇଚା ରହିଯାଏ । ତା' ଆଉ ସୁଧାରି ହୁଏ ନାହିଁ । ମୁଁ ଭାବୁଛି, ଏଇ କାରଣରୁ ଅନେକ ମାଓରି ଲୋକ ବେଶ୍ ଶିକ୍ଷିତ ହେଲେ ମଧ୍ୟ କିପରି ଏକ ରୋଗା ମନ ନେଇ ଚଳନ୍ତି । ଅନେକ ତ ପାଠ ଭୁଲି ଯାଆନ୍ତି, ଅଧାଅଧି ପଢ଼ି ଦୂରେଇ ଯାଆନ୍ତି ।

ଆଉ ଗୋଟିଏ ବଡ଼ କାରଣ ହେଉଛି, ମାଓରି ପିଲାଙ୍କୁ ତଳ ଶ୍ରେଣୀରେ ବେଶି ଦିନ ରଖିଦିଆଯାଏ । ସେଥିପାଇଁ ସମାଜରେ ଅନେକେ ବିଫଳ ହୁଅନ୍ତି । ଗୋଟିଏ ଅଲଗା ଭାଷା, ଗୋଟିଏ ଅଲଗା ଭାବ ଓ ସଂସ୍କୃତି ସେମାନ ଙ୍କ ଉପରେ ଲଦି ଦିଆଯାଏ । ବେଶ୍ ଅଧିକ ବୟସରେ ସେମାନେ ବିଦ୍ୟାଳୟର ଉଚ୍ଚ ଶ୍ରେଣୀରେ ପହଞ୍ଚନ୍ତି । ତେଣୁ କମ୍ ବୟସର ପିଲାଙ୍କ ସହିତ ଖାପ ଖୁଆଇ ଚଳି ପାରନ୍ତି ନାହିଁ । ଅନେକ ଭାଙ୍ଗି ପଡ଼ନ୍ତି । ପାଠପଢ଼ା ଛାଡ଼ି ଦିଅନ୍ତି । ଭଲ କାମଟିଏ ହାତକୁ ନେବାକୁ ସାହସ କରି ପାରନ୍ତି ନାହିଁ । ୟୁରୋପୀୟ ଚଳଣିରେ ପଛୁଆ ହୋଇ ଯାଆନ୍ତି । ଏଇପରି ଭାବରେ ବୟସ ବଢ଼ି ଚାଲେ । ସେମାନେ ନିଜର ଜନ୍ମଗତ ବଳ ଓ ସାହସ ହରେଇ ସମାଜରେ ମୁଣ୍ଡ ଟେକି ଠିଆ ହୋଇପାରନ୍ତି ନାହିଁ ।

ମୋ ମନରେ ଏଇ ଭାବନାଟି ରହିଛି । ତେଣୁ ଶିଶୁ ଶ୍ରେଣୀରେ ମାଓରି ପିଲାଙ୍କୁ କିଛି ପଢ଼ାଇଲେ ମଧ ତାହାକୁ ମୁଁ ଏକ ସେତୁ ବା ପୋଲ ବୋଲି ମନେ କରୁଛି । ନିଜର ମାଓରି ସଂସ୍କୃତିରୁ ୟୁରୋପୀୟ ସଂସ୍କୃତିକୁ ସେମାନଙ୍କୁ ନେଲା ବେଳେ ଯେପରି ତାହା ଠିକ୍ ଭାବେ ଯୋଡ଼ି ହେବ, ତା ହେଉଛି ମୁଖ୍ୟ

କଥା । ବିଶେଷତଃ ପାଠ ଶିଖେଇଲା ବେଳେ । ତେଣୁ ଶିଶୁ ଶ୍ରେଣୀରେ ପଢ଼େଇଲାବେଳେ ଶିକ୍ଷକ ଏଇ ଫାଙ୍କଟିକୁ ଯୋଡ଼ି ମାଓରି ପିଲାଙ୍କ ପାଇଁ ଅଧିକ ସମୟ ଦେଇ ପଢ଼େଇବା ଦରକାର ।

ପିଲାମାନେ ବି ଦୂରକୁ ଦେଖିପାରନ୍ତି । ଏଇ ଦେଖିବା ଦୁଇଟି ଭାବରେ ହୋଇଥାଏ : ଗୋଟିଏ ଦେହ ଓ ଆରଟି ମନ ଦେଇ । ଏହି ଦୁଇଟି ମଧ୍ୟରୁ ମନରେ ଦେଖିବାଟା ବେଶ୍ ବଳୁଆ ।

ମୁଁ ଶୁଣୁଛି ଯେ ପିଲାଙ୍କୁ ଅକ୍ଷର ଶିଖାଇବା ପାଇଁ ବହୁତ ଗୁଡ଼ାଏ ଛବି ବ୍ୟବହାର ହେଉଛି । ପିଲାଏ ତା'ସହିତ ପଦଗୁଡ଼ିକୁ ପଢ଼ି ଶିଖନ୍ତି । ସେହି ପଦ ସବୁ ବଡ଼ ବଡ଼ ଶିକ୍ଷାବିତ୍‌ମାନଙ୍କ ଦ୍ୱାରା ଠିକ୍ କରାଯାଇଥାଏ । ମୁଁ ମଧ୍ୟ ଅକ୍ଷର ଶିକ୍ଷାଇବାକୁ ଛବି ବ୍ୟବହାର କରେ । କିନ୍ତୁ ପଦଗୁଡ଼ିକୁ ପିଲାମାନେ ଠିକ୍ କରିଥାନ୍ତି । ସେଗୁଡ଼ିକ ତାଙ୍କର ମନର ପଦ । ଛବିଗୁଡ଼ିକ ମଧ୍ୟ ତାଙ୍କର ମନକୁ ଅସିଥିବା ପଦ ଅନୁସାରେ । ବଡ଼ମାନେ ବାଛିଥିବା ପଦଗୁଡ଼ିକର ଭଲ ଅର୍ଥ ଥାଇପାରେ ଓ ପିଲାଙ୍କୁ ଖୁସି କରିପାରେ । କିନ୍ତୁ ପିଲାର ମନରୁ ଆସିଥିବା ପଦ ତା'ପାଇଁ ଅଧିକ କାମ କରେ । ବାହାରୁ ଲଦି ଦିଆଯାଉଥିବା ଛବି ଆଉ ପଦ ଅଧିକ ଖୁସି କରେଇପାରେ । କିନ୍ତୁ ମନରୁ ଆସିଥିବା ପଦଗୁଡ଼ିକର ଛବି ତା'ର ଦେହ ଓ ମନକୁ ଛୁଏଁ । ଜଣେ ପିଲାର ମନର କଥା ଅନୁସାରେ ଛବି ଓ ପଦ ତା' ଜଣଙ୍କର ଦେହ ଓ ମନକୁ ଅଧିକ ସୁହାଏ । ତେଣୁ ଏ ପ୍ରକାର ଅକ୍ଷର ଶିକ୍ଷା ସହଜ ହୁଏ । ଏହାକୁ ହିଁ ଆମେ ପିଲାର ରଚନାତ୍ମକ ପାଠପଢ଼ା ବୋଲି କହିଥାନ୍ତି । ପିଲା ତା' ମନର ଏହି ପଦଗୁଡ଼ିକୁ ପହିଲି ଅକ୍ଷର ରୂପେ ପଢ଼େ ।

ପାଞ୍ଚ ବରଷିଆ ପିଲାର ମନ ମୋତେ ଗୋଟେ ଗୋଟେ ଆଗ୍ନେୟଗିରି ପରି ଲାଗେ । ଗଢ଼ି ପାରିବା ଆଉ ଭାଙ୍ଗି ପାରିବା, ତା'ର ଦୁଇଟି ଦିଗ ଥାଏ । ଆଉ ମୁଁ ଦେଖୁଛି : ପିଲାର ଗଢ଼ି ପାରିବା ଦିଗଟିକୁ ବଢ଼ାଇ ପାରିଲେ ତା'ର ଭଙ୍ଗାରୁଜା କରିବା ମନ ମରି ମରି ଯାଏ । ତା' ମନ ଦେଖିଥିବା ଛବି ଓ ପଦ ମଧ୍ୟ ତା' ଜୀବନଧାରାରୁ ଝରି ଆସିଥାଏ ବୋଲି ମୁଁ ବିଶ୍ୱାସ କରେ । ସେଇ ପଦଗୁଡ଼ିକୁ ଛବି ସହିତ ପଢ଼ି ଶିଖିଲାବେଳେ ତା' ମନ କୁରୁଳି ଉଠେ । ଗଢ଼ି ତୋଳିବାର ବଳ ବଢ଼ିଚାଲେ । ଫଳରେ ଭଙ୍ଗାରୁଜା କରିବାପାଇଁ ମନ ହୁଏନି । ତା' ନିଜ ମନ ତା' ଜୀବନକୁ ବଳ ଦିଏ । ନୂଆ ଭାବନା ଜାତ ହୁଏ, ରୂପ ନିଏ

ଏବଂ ସେଗୁଡ଼ିକ ତା'ପାଇଁ ମୁଁ ପାଠ ହିସାବରେ ବାଛିଥାଏ । ପିଲା ବେଶ୍ ନିଜ ବାଟରେ ଆଗେଇ ଚାଲେ, ଗଡ଼ି ଚାଲେ । ଏହି ପଢ଼େଇବା ପ୍ରଣାଳୀକୁ ମୁଁ 'କଳା' ବୋଲି ବୁଝେ ।

ପହିଲି ପଢ଼ା-ପଦ ଗୋଟିକ ପିଲା ପାଇଁ ବହୁତ କିଛି ।

ପହିଲି ପଦଟିର ଅର୍ଥ ମଧ୍ୟ ପିଲା ପାଇଁ ବେଶ୍ ଗହିରିଆ । ତେଣୁ ତାହା ତା'ପ୍ରାଣଶକ୍ତି ସହିତ ଜଣାଶୁଣା ହେବା ଉଚିତ୍ । ତାହା ତାର ଜୀବନର ଗୋଟେ ଖିଅ ହେବା ଦରକାର ।

ପିଲାଏ ବହିଟିଏ ପାଇବା ପାଇଁ ଆଉ ହାତରେ ଧରି ପଢ଼ିବା ପାଇଁ ମନ କରିବା ଉଚିତ୍ । ତା' ମନ ସେଆଡ଼କୁ ସ୍ୱତଃ ଟାଣି ହେବା ଦରକାର । ତା' ଭିତରୁ' ତା' ମନ, ତା' ପ୍ରବୃତ୍ତି ଏହା ଦରକାର କରିବା ଲୋଡ଼ା । ତେବେ ଯାଇ ଏହା ତା' ଜୀବନଧାରାର ଏକ ଧାରା ହୋଇପାରିବ । ସେଇ ପାଠପଢ଼ା ତା' ଦେହ ଆଉ ମନରୁ ବାହାରି (Organic) ଆଗେଇ ଚାଲିବ । ସେ ଗଢ଼ା ହୋଇଚାଲିବ ତା'ର କଅଁଳ ବଅସରୁ । କିଛି ବଛାବଛା ମନଛୁଆଁ ସାଆନ୍ତିଆ ପଦ ସେହି କାମ କରିପାରେନା । ତା' ମନରୁ ଉଛୁଳି ଉଠିବା ପଦ ତାକୁ ସହଜରେ ଆଗେଇ ନେଇ ପାରିବ । କାରଣ ସେଇଟା ହିଁ ତା' ଜୀବନ, ମନ-



ଦେହର ଗଢ଼ି ଉଠୁଥିବା, ଆଉ ବଢ଼ି ଚାଲୁଥିବା ଜଣେ ମଣିଷର ଜୀବନଧାରା । 'ଜଣେ ପିଲା' ହାତରେ ନୂଆ ଛପା ହୋଇଥିବା ଆମେରିକାର ଚହଟ ଚିକ୍କଣ ବହିଟିଏ ଧରେଇ ଦେଲେ, ତା' ମନ ଟାଣି ହୋଇଯାଇପାରେ । ସେ ଖୁସି ହୋଇଯାଇପାରେ । କିନ୍ତୁ ଆମେ କାହିଁକି ଛୁଆଟିକୁ ଗୋଟିଏ ଅଜଣା ଦିଗକୁ ଟାଣି ନେବା ? ''ଜେନେଟ୍ ଓ ଜନ୍ ସାଙ୍ଗ ଥିଲେ'' କଥାରେ ସେ ତା' ସାଙ୍ଗକୁ ପାଇବ କି ? ତା' ନିଜର ସାଙ୍ଗ ଭିତରେ ସେ ଜନ୍ ଓ ଜେନେଟ୍‌କୁ ଦେଖିବ ତ ? ମୋ ମତରେ ଏହା ତା'ର ଦେହ ଓ ମନ ସହିତ ଯୋଡ଼ିହୋଇ ପାରିବ ନାହିଁ । ଆମେ କାହିଁକି ତା'ର ଦେହ ଆଉ ମନ ଚାଲୁଥିବା ବାଟରୁ ତା'କୁ ହଟେଇ ଆଣିବା ? ଆମେ ଚାହୁଁଥିବା ବାଟରେ ଜୋର୍ ଜବରଦସ୍ତ ହେଉ ଅବା କଳ କଉଶଳରେ ହେଉ ତା'କୁ ଚଲେଇ ନେଲେ ତା' ଦେହ ଆଉ ମନ ସହିତ ସେଇ ନୂଆ ଭାବନା ଯୋଡ଼ି ହୋଇ ଏକ ହୋଇପାରିବ ନାହିଁ । ତେଣୁ ମୋ ମତରେ ଏହା ଉଚିତ୍ ନୁହେଁ । ଏହା ଶିକ୍ଷା ନୁହେଁ । ଏହା କଳା ବିରୋଧରେ କାମ । ଏହା ଫଳରେ ନିଜ ବାଟରେ ବଢ଼ି ଚାଲିଥିବା ମଣିଷଟିକୁ ଅବାଟକୁ ଟାଣି ନିଆଯାଏ । ତା' ବଢ଼ିବାରେ ବାଧା ଦିଆଯାଏ । ଜୀବନର ପ୍ରାକୃତିକ ପ୍ରକାଶ ଓ ବିକାଶକୁ ଏହା ବାଧା ଦେଇ ଖର୍ବ କରିଦିଏ ବୋଲି ମୁଁ ଭାବେ ।



ଇରିଚ୍ ଫ୍ରୋମ୍ (Erich Fromm) କହନ୍ତି : ''ନିଉଜିଲାଣ୍ଡର କଳା (Maori)ଲୋକଙ୍କ ପାଇଁ ଆଫ୍ରିକାର କଳା ଲୋକଙ୍କ ବିଷୟ ସୁହେଇବ କି ? ଟିକିଏ ବିଚାର କଲେ ବୁଝିହୁଏ ଯେ, ନିଉଜିଲାଣ୍ଡର ମାଓରି ଶିଶୁ ତା'ର ସମାଜ ଓ ଚଳଣି ବିଷୟ ନେଇ ଲେଖା ହୋଇଥିବା ବହିଟିଏ ପହିଲେ ପଢ଼ିବା ଦରକାର । ଏଇ ବୟସ ଗଢ଼ିହେବା ସମୟ । ଏଇ ସମୟରେ ଚାଲି ଚଳଣି ଅଭ୍ୟାସ ଜାତ ହୁଏ, ଆଉ ଟାଣ ମୂଳଦୁଆ ପକାଏ । ଛପା ବହିର ପଦଗୁଡ଼ିକରୁ ପିଲାଏ ଦୂରେଇ ଯାଆନ୍ତି । ତା'କୁ ନାକ ଟେକନ୍ତି । ମୁଁ ମୋର ଶିଶୁ ଶ୍ରେଣୀରେ ପଢ଼େଇଲାବେଳେ ଏ ବିଷୟ ଭଲ ଭାବରେ ଦେଖିଛି ।

ବଢ଼ି ଆସୁଥିବା ଛୁଆଟିକୁ ତା' ନିଜ ବାଟରୁ ଟାଣି ନେବା ସୁନ୍ଦର ନୁହେଁ; ତା' ଉପରେ ଆଉ ଏକ ଭିନ୍ନ ଚଳଣି/ସଂସ୍କୃତି ଲଦି ଦେବା ନିହାତି ଭୁଲ । ତାଲିମ୍ ଦେବାକୁ ଓ ନୂଆ ଭାବନା ଯୋଡ଼ିବାକୁ ଅନେକ ବାଟ ଅଛି । ଦେହ ଓ ମନର ପ୍ରାକୃତିକ ବିକାଶରେ ପ୍ରକୃତ ସୌନ୍ଦର୍ଯ୍ୟ ଥାଏ । କିନ୍ତୁ ଗୋଟିଏ ସଂସ୍କୃତିରୁ ଆଉ ଏକ ସଂସ୍କୃତିକୁ ଟାଣିନେଲେ ସେହି ବିକାଶକୁ ଘୋର ବାଧା ଦିଆଯାଏ ।

ଗୋଟିଏ ନୂଆ ସଂସ୍କୃତି ଶିକ୍ଷା ଦେବାପାଇଁ ସମୟ ଅଛି । ଯେତେବେଳେ ଶିଶୁଟିଏ ବଢ଼ି ବଢ଼ି ନିଜ ଚଳଣିକୁ ଓ ସମାଜକୁ ଦେଖି, ପଢ଼ି ବିଚାର କରିପାରିବା ବୟସରେ ପହଞ୍ଚିଯାଏ, ସେ ସମୟରେ ନୂଆ ସଂସ୍କୃତି ତା' ଉପରେ ଲଦିଦେଲେ ବି ସେ ବିଚାରବନ୍ତ ଭାବେ ଯାହା କିଛି ନିଜ ପାଇଁ ଉଚିତ ଓ ଦରକାରୀ-ତାହା ନେଇପାରେ । ତା' ବ୍ୟକ୍ତିତ୍ୱର ବିକାଶରେ ଏହା ବାଧା ଦେଇପାରେ ନାହିଁ । କାରଣ ସେତେବେଳକୁ ସେ ନିଜର ମୂଳଦୁଆ ଟାଣ କରି ସାରିଥାଏ । କିନ୍ତୁ ଏ ଦେଶରେ ଏ ପ୍ରକାର ପିଲାଙ୍କ ଉପରେ ତାଙ୍କ ଶିଶୁ ଅବସ୍ଥାରେ ହିଁ ଏକ ଭିନ୍ନ ସଂସ୍କୃତି ଲଦି ଦିଆଯାଉଛି । ଏଥିପାଇଁ ଆମେ ସବୁ ସତର୍କତାର ସହିତ କାମ କରିବାକୁ ଚେଷ୍ଟା କରୁଛୁ ।

ସେହି ପହିଲେ ପଢ଼ିବା ପଦ ଆଉ ପହିଲି ବହି କଥା ବିଚାର କରିବା । ଏଗୁଡ଼ିକ ଶିଶୁର ନିଜ ଦେହ ଓ ମନରୁ ଗଢ଼ା ହେବା ଦରକାର । ମୋର ମନେ ହୁଏ, ମୁଁ ଯେପରି ପିଲାର ମନ ଭିତରେ ହାତ ପୂରେଇ ମୁଠେ ତା' ଜିନିଷ ଧରି ଆଣେ ଏବଂ ତାହାର ହିଁ ହୁଏ, ତା'କୁ ପଢ଼େଇବା, ଶିଖେଇବା ପାଇଁ ଅସଲ

ଜିନିଷ, ପାଠ୍ୟ ଉପକରଣ । ତାହା ଭଲ କି ମନ୍ଦ, ସରଳ କି ଗରଳ, ସାଦା କି ରଙ୍ଗୀନ- ଯାହା ହୋଇଥାଏ; ସେଥିରୁ ଆରମ୍ଭ ହୁଏ ବେଶ୍ ସାବଲୀଳ ଭାବେ ଗଡ଼ି ଚାଲିବା ପାଠପଢ଼ା ।

ଆଉ ମାଓରି ପିଲାଟିଏ ତା ନିଜର ମନରୁ ଆସିଥିବା ପଦଗୁଡ଼ିକରେ ତା' ନିଜ କଥା, ଘର କଥା, ସମାଜ କଥା ବାରିପାରେ । ଫଳରେ ତା' ପଢ଼ାରୁ ସେ ଆନନ୍ଦ ପାଏ । ତା'ର ମନ ଓ ଦେହ ଏଥିରେ ଯୋଡ଼ି ହୋଇଥିବାରୁ ତା'ର ଅଧିକ ଶିଖିବା ଆଗ୍ରହକୁ ବଢ଼ାଇବା ସହଜ ହୁଏ । ଏପରି ଭାବରେ ସେ ପଢ଼ି ଲେଖି ପାରିଲା ପରେ ଅନ୍ୟ ସଂସ୍କୃତି ବିଷୟରେ ଶିକ୍ଷା ଦିଆଯାଇ ପାରିବ । ସେ ମଧ୍ୟ ଆଗ୍ରହରେ ସେଇ ନୂଆ ବିଷୟ ଶିକ୍ଷା କରିବ । ସେ ତାହାକୁ ଆଉ ବୋଝ ମଣିବ ନାହିଁ ।

ଏଇ ମନ ଓ ଦେହକୁ ଲଗାଇ ପଢ଼ାଇବା (Organic) ବେଶ୍ ଆନନ୍ଦଦାୟକ । ପିଲା ଆଗ୍ରହରେ ପଢ଼ିଚାଲେ । ନିଜେ କାମରେ ଲଗାଇ ପରଖି କରି ସଫଳ ହୋଇଥିବାରୁ ମୁଁ ଏ କଥା ଜୋର୍ ଦେଇ କହୁଛି ।

★ *ପହିଲି ପଢ଼ାର ସେଇ ପଦଗୁଡ଼ିକ ଅର୍ଥପୂର୍ଣ ହେବ ।*

★ *ପହିଲି ପାଠର ସେଇ ପଦଗୁଡ଼ିକ ସେଇ ପିଲାଟିର ଦେହ ଓ ମନର ଅଂଶ ହୋଇଯିବ ।*

★ *ପହିଲି ପାଠ୍ୟବହିର ବିଷୟବସ୍ତୁ ପିଲାଟିର ନିଜର ହୋଇଥିବ- ସେ ପିଲାଟି ଯାହା ହୋଇଥାଉ ଏବଂ ଯେଉଁଠି ବି ଥାଉ ପଛେ ।*

ବେଶ୍ ବଡ଼ ଆଉ ଟାଣ ମଲାଟରେ ପଦଗୁଡ଼ିକ ଲେଖି ମୁଁ ପିଲାଙ୍କୁ ଦେଇଥାଏ । ପଦଗୁଡ଼ିକ ଠିକ୍ ଭାବରେ ବଛା ହୋଇଥିଲେ ପିଲେ ଥରେ ମାତ୍ର ଅନେଇ ପଢ଼ି ପାରିଥିବା ମୁଁ ଦେଖିଛି । ଆଉ ସେମାନେ କଥାଭାଷାରେ ତ ଅତି ସରଳ । ଏଇ କଥାଭାଷାରୁ ସେଇ ପଦଗୁଡ଼ିକ ମିଳିଥାଏ । ଯଦି ନ ମିଳେ, ତେବେ ନୂଆ ଭାବନା (Creative Period) ପାଇଁ ଥିବା ସମୟରେ ପିଲାଟିଏ ଯାହା କିଛି ବାଛିଥାଏ, ସେଥିରୁ ପ୍ରାୟ ଠିକଣା ପଦ ମୁଁ ପାଇଯାଏ । ତଥାପି ଯଦି ପିଲାଟି ଏ ଦିଗରେ ବେଶି ଦୁର୍ବଳ ଥାଏ, ତେବେ ଆମର ସାଧାରଣ ଭାବେ ପିଲାଙ୍କ ପାଇଁ ବାଛି ବାଛି ତାଲିକା କରିଥିବା ପଦଗୁଡ଼ିକରୁ ଆରମ୍ଭ କରାଯିବ । ଏଇ ପଦଗୁଡ଼ିକ ସବୁ ଜାତିର ପିଲାଙ୍କୁ ସୁହେଇଲା ଭଳି ପିଲାର

ଦେହ ଓ ମନ ସହିତ ଜଡ଼ିତ ଥିବା ଦରକାର । ପିଲାର ମନ ଭିତରେ ପ୍ରାୟ ରହିଥିବା ଏଇ ପଦଗୁଡ଼ିକ ହେଉଛି : ମାଆ, ବାପା, ଚୁମା, ଡ଼ର, ଭୂତ ।

ଜଣେ ନୂଆ ପାଞ୍ଚବର୍ଷିଆ ମାଓରି ପିଲାକୁ ମୁଁ ପଚାରେ, "ମୋହି, ତୁମେ କେଉଁ ପଦ ଚାହୁଁଛ ?"

... "ଜେଟ୍ (ବିମାନ) ।"

ମୁଁ ହସିଦିଏ ଏବଂ ଗୋଟିଏ ମୋଟା ମଲାଟରେ ସେଇ ପଦଟି ଲେଖି ତା'କୁ ଦିଏ । "ଏଇଟା କ'ଣ ?"

...."ଜେଟ୍ ।"

"ତୁମେ ଏଇଟାକୁ କାଲି ସକାଳେ ଧରି ଆସିବ ।"

"ତୁମେ କ'ଣ ଚାହୁଁଛ, ଗାୟ ?"

ଗାୟ ଅତି ଅଧିକ ଭାବରେ ସଭ୍ୟ ଓ ଶୃଙ୍ଖଳିତ, ଝିଅଟିଏ । ମାଆଙ୍କର ସାଆନ୍ତିଆ ଶାସନରେ ପେଷି ହୋଇଯାଇଛି ।

"ଘର" ସେ ଗୁଣୁଗୁଣୁ ହୋଇ କହିଲା । ମୁଁ ତାହା ହିଁ ଲେଖି ତା'ର ଆତୁର ହାତରେ ଧରେଇ ଦେଲି ।

"ତୁମେ କ'ଣ ଚାହଁ, ସେଭେନ୍ ?" ସେଭେନ୍ ଜଣେ ଖେଚଡ଼ ମାଓରି ପିଲା "ବୋମା ! ବୋମା ! ମୁଁ ଚାହେଁ ବୋମା ।"

ତେଣୁ ସେଭେନ୍ ସେଇ ପଦ '(ବୋମା)' ପାଇଲା । ସେ ଅନ୍ୟମାନଙ୍କୁ କେମିତି କିଏ ତା'ଠାରୁ ତାହା ନେଇପାରିବ ବୋଲି ଆହ୍ୱାନ କରୁଥିଲା ।

ଏଇପରି ଆଉ ସବୁ ପିଲାଙ୍କୁ ପଦଟିଏ ଲେଖି ହାତରେ ଦିଆଯାଏ । ପିଲାଏ ସେଇ ଟାଣ ମଲାଟ ବା, ଡ୍ରଇଁ କାଗଜକୁ ଭଲ ପାଆନ୍ତି । ସାଦା, ନରମ କାଗଜ ଚାହାନ୍ତି ନାହିଁ । ତା' ଆର ଦିନ ସେମାନଙ୍କର ସେଇ ମଲାଟ କାଗଜ ଦେଖି ଜାଣିହୁଏ ଯେ ସେମାନେ ଖୁସିରେ ତାହା ବ୍ୟବହାର କରିଛନ୍ତି । ମୁଁ କେବେହେଲେ ସେମାନଙ୍କର ପଦ ଦୋହରାଇ ନାହିଁ । ସେମାନଙ୍କ ମନକୁ ଆସୁଥିବା ପଦ ହିଁ ତାଙ୍କର ପାଠ ।

ସବୁ ପିଲା ଏଇ ଢ଼ାଞ୍ଚାରେ କିଛି କିଛି ପଦ ଶିଖିଗଲା ପରେ ସମୟ ଆସେ ଯେତେବେଳେ ମୁଁ ଅନୁଭବ କରେ ଯେ ପିଲା ଦଳଟି ମୋ ସହିତ ପାଦ

ମିଳେଇ ଚାଲିଲେଣି । ସେ ସମୟରେ ମୁଁ 'ଭୟ' (ଡ଼ର) ପଦ ଲେଖିଥିବା ମଲାଟଟିଏ ଦେଖାଏ । ପିଲାଏ ସତରେ ଡ଼ରି ଯାଆନ୍ତି, ଆଉ ପ୍ରାୟ ସମସ୍ତଙ୍କ ପାଟିରୁ ବାହାରି ଆସେ- ''ଭୂତ'' ।

ଏଇ 'ଭୂତ' ପଦଟି ମାଓରି ସଂପ୍ରଦାୟର ସାମାଜିକ ଓ ସାଂସ୍କୃତିକ ଚେତନାରେ ଯୋଡ଼ି ହୋଇରହିଛି । ୟୁରୋପୀୟମାନେ ଏପରି ଅବସ୍ଥାରେ 'ବାଘ' କିମ୍ୱା 'ଗୋଧି' ବା ସେପରି କିଛି ଭୀଷଣ ଜୀବଜନ୍ତୁର ନାମ କହନ୍ତେ, ଯାହାକି ସେମାନେ କେବେ ଦେଖି ନଥାନ୍ତି ।

''ମୁଁ କୌଣସି ବିଷୟକୁ ଡ଼ରେ ନାହିଁ ।'' ପାଟିକରି କହିଲା ସେଭେନ୍ । ଭଏ ପରେ ମୋର ହତ୍ୟାକାରୀ ସାଜିଥିଲା ।

''ତୁମେ ଡ଼ରୁନା ହଁ ?''

''ନା, ମୁଁ ତା'କୁ ମୋର ଛୁରୀ ଭୁଷି ଦିଅନ୍ତି ।''

''କାହାକୁ ଛୁରୀ ଭୁଷିଦେବ ?''

''ବାଘ ଦେହରେ ।''

ବାଘ ପଦଟି ୟୁରୋପୀୟ ପିଲାଙ୍କ ପାଖରେ ସାଧାରଣ । ମାତ୍ର ମାଓରି ପିଲାଙ୍କ ଭିତରୁ ଜଣେ ସେପରି ଭାବି କହିଲା । ମୁଁ 'ବାଘ' ଲେଖି ମଲାଟଟିଏ ତା'କୁ ଦେଲି । ମୁଁ ତ କେବେହେଲେ ପିଲାଙ୍କ କଥାକୁ ଦୋହରାଏ ନାହିଁ କି ସୁଧାରେ ନାହିଁ । ତା' ଆରଦିନ ସକାଳେ ସେଇ ମଲାଟଟି ଦେଖି ମୁଁ ବୁଝିପାରିଲି ଯେ ପିଲାଟି ବେଶ୍ ବ୍ୟବହାର କରିଛି । ମଲାଟଟି ମଇଳା ଆଉ ଘଷଡ଼ା ହୋଇ ଯାଇଥିଲା ।

ଦୁଆରେ ଠକ୍ ଠକ୍ ଶୁଭିଲେ ପିଲାଏ ପାଟି କରି କହନ୍ତି- ''ଭିତରକୁ ଆସନ୍ତୁ ।'' କିନ୍ତୁ କେହି ଭିତରକୁ ନ ଆସିଲେ ଆମେ ସମସ୍ତେ ବାହାରକୁ ଯାଇ ଦେଖୁଁ । ସେ ଦିନ ଦେଖିଲୁ ଜଣେ ମହିଳା;ସେହି ମାଓରି ମହିଳା ନିଜର ସାଧାରଣ ଗୌରବ-ବୋଧରେ ନମ୍ର, ପାଦରେ ଜୋତା ନାହିଁ, ଦେହରେ ଚିତା ଫୁଟେଇଛନ୍ତି ।

''ମୁଁ ମୋ ଟିକି ସେଭେନ୍‌କୁ ଦେଖେ ।'' ସେ କହନ୍ତି ।

''ସେଭେନ୍ ତୁମର ସାନ ପୁଅ ?''

"ମୁଁ ତାକୁ ପାଳଛି । ତା'କୁ ଏବେ ପାଞ୍ଚ ବରଷ ମୁଁ ତାକୁ ତାର ଅସଲି ପରିବାର ସ୍କୁଲକୁ ଆଣିଛି । ଆଉ, ମୁଁ ମୋ ପିଲାକୁ ଦେଖେ ।"

ପିଲାଏ ଖୁସିରେ ସେଭେନ୍‌କୁ ପହଞ୍ଚେଇ ଦିଅନ୍ତି । ଆଉ ସେଇ ପିଣ୍ଡାରେ ଆମେ ସଭିଏଁ ଏକ ହୋଇଯାଉ ଗୋଟିଏ ପ୍ରକାର ଅନୁଭୂତିରେ- ନୀଳ ଆଉ ମାଟିଆ ଆଖି ଯେପରି ମିଳିମିଶି ଏକ ହୋଇ ଯାଉଛନ୍ତି ।

ସେଇ ଗହଳି ଭିତରୁ ମୁଁ ପଚାରେ :"ତା'କୁ କେଉଁଠୁ ଆଣିଥିଲେ ?"

"ସେଇ ପାହାଡ଼ରୁ ଫେରିଲାବେଳକୁ ବାଟରେ । ସେଇ ନିଜ୍ଜଳସବୁ । ତୁମେ ତୁମର ମାଆକୁ ମନେ ପକାଅ ?" ସେ ସେଭେନ୍‌କୁ ପଚାରନ୍ତି ।

(ମାଓରି ମହିଳାଙ୍କ ଇଂରାଜୀ ବାକ୍ୟ ଓ ଉଚ୍ଚାରଣ ଲେଖିକା ଉପର କଥୋପକଥନରେ ଦେଖାଇଛନ୍ତି । ଅନୁବାଦରେ ତା'ର ଆବଶ୍ୟକତା ନାହିଁ ) ମୁଁ ଦେଖେ । ଆଉ ଦିନେ । ଠିଆ ହୋଇ ସେଭେନ୍‌କୁ ଦେଖୁଥିଲି । ସେ ଚକ୍ ଖଡ଼ିକୁ ତା'ର କଳା ପଟାରେ ଘଷି ଘଷି ଚୂନା କରୁଥିଲା । ଏଇଟା ତା' ପକ୍ଷେ ସାଧାରଣ । ମୁଁ ତା'କୁ ଦେଖୁଥାଏ । ସେ ଦିନ ପଚାରିଲି, "ସେଭେନ୍ ତୁମେ କାହାକୁ ଚାହୁଁଛ ? ତୁମର ପୁରୁଣା ମାଆଙ୍କୁ ନା ନୂଆ ମାଆଙ୍କୁ ?"

"ମୋ ପୁରୁଣା ମାଆକୁ ।"

"ତୁମ ଭାଇମାନେ କ'ଣ କରନ୍ତି ?"

"ସେମାନେ ମୋତେ ମାରନ୍ତି ।"

" ପୁରୁଣା ମାଆ", "ନୂଆ ମାଆ", "ମାଡ଼", "ଭାଇମାନେ"- ସେଭେନ୍ ଶିଖିଥିବା ଏସବୁ ଗୋଟିକିଆ ପଦ ଭିତରେ ଏକା ଭାବ ରହିଛି । ଚକ୍ ଗୁଣ୍ଡ କଳା ପରି ତା'ର ଆଉ କେତେକ କାମକୁ ମୁଁ ଦେଖିଛି । ତା'କୁ ନେଇ ଏକ ସୁନ୍ଦର କାହାଣୀ ଲେଖିବାକୁ ମୋର ଇଚ୍ଛା ହେଉଥିଲା ଏବଂ ମୋ ମନ କହୁଥିଲା, "ସେ ଏବେ ଆଉ ଖେଚଡ଼ ନୁହେଁ ।"

"କିଏ ସିଏ କାନ୍ଦୁଛି ?" ମୁଁ ଦୋଷ ଦେଇ ପଚାରିଲି । ପୁରୁଣା ଯୁଦ୍ଧଘୋଡ଼ା ପରି ମୋର ନାକଟା ଟେକି ହୋଇ ଯାଇଥିଲା ।

"ସେଭେନ୍ ଗାୟର ବେକ ମୋଡୁଛି ।"

ଆଚ୍ଛା, ଭଲ କାହାଣୀଟି ଏ ଆରମ୍ଭ ହୋଇଛି । ମୋ ତଳର ଶିକ୍ଷୟିତ୍ରୀଙ୍କୁ କିଛି ସମୟ ଶ୍ରେଣୀ ଦେଖିବାକୁ କହିଲି । ମାତ୍ର ମୁଁ ଏତିକି କହିଲି ଯେ ସେ ଏବେ ତା'ର ଶବ୍ଦଗୁଡ଼ିକୁ ଶିଖୁଛି । ଖୁବ୍ ଚଞ୍ଚଳ ।

ଡେନିସ୍‌ର ମାଆ ଜଣେ ବେଶ ସମ୍ଭ୍ରାନ୍ତ ଓ ରୋଜଗାରିଆ ଏବଂ ସେ ସୁରୁଚିସମ୍ପନ୍ନ ପୋଷାକ ପିନ୍ଧନ୍ତି । ହେଲେ, ଡ଼େନିସ୍‌କୁ କିନ୍ତୁ ସେ ଠେଲି ଠେଲି ନିଅନ୍ତି । ସେଇଥିପାଇଁ ଥରେ ଏଇ ପାଞ୍ଚ ବରଷର ପିଲାଟିର ଚେତା ହଜିଯାଇଥିଲା । ମନଟା ତା' ଯେପରି ମରି ଯାଇଥିଲା । ସେ କିନ୍ତୁ ପାଟି କରି କହେ, ''ମୁଁ କାହାକୁ ବି ଡ଼ରେ ନାହିଁ ।''

''ଡ଼େନିସ୍ କୌଣସି ଜିନିଷକୁ ଭୟ କରେ କି ?'' କାର୍‌ରେ ବସିଥିବା ଡ଼େନିସ୍‌ର ସେଇ କମ ବୟସୀ ସୁନ୍ଦରୀମା'ଙ୍କୁ ମୁଁ ପଚାରିଲି ।

''ଡେନିସ୍ ? ସିଏ ତ କୁକୁଡ଼ା ଛୁଆଙ୍କୁ ବି ତା' ପାଖ ମାଡ଼ିବାକୁ ଦିଏନା ।''

''ତୁମେ କିଛି ସ୍ୱପ୍ନ ଦେଖିଥିଲ ?'' ଉପରବେଳାର ବିଶ୍ରାମ ପରେ ମୁଁ ଡେନିସ୍‌କୁ ପଚାରିଲି ।

''ହଁ, ମୁଁ ଦେଖିଥିଲି ।''

''ଆଚ୍ଛା, ତେବେ ...... ଯେଉଁଠି ଥିଲା କିଛି ଚକ୍ ଆଉ କଳାପଟା ?''

ପରେ ଯେତେବେଳେ ମୁଁ ସେଇ ବାଟ ଦେଇଗଲି, ଦେଖିଲି ସେଇ ଭୟଙ୍କର ମାଟିଆ ଭୂତକୁ;କମଡ଼ିଆ ଆଖିରେ ସେ ଅନେଇ ରହିଥିଲା ରାସ୍ତାର ଏକ ନାଲି ଗୋଧିକୁ । ମୁଁ ଜାଣିଥିଲି, ମୁଁ ଡେନିସ୍ ପାଖରେ ହାରି ଯାଇଛି । ତା' କଥାରେ ଭୟରେ ପଦଟିଏ ବି ମୁଁ କେବେ ଶୁଣିନି । ତା' ମାଆ ମୋତେ ହରେଇ ଦେଲେ । ସକାଳବେଳା ହାତକାମ ସମୟରେ ଶ୍ରେଣୀରେ ପ୍ରତ୍ୟେକେ କିଛି ନା କିଛି କାମରେ ଲାଗିଥିଲେ । ଛବି ଆଙ୍କିବା, ମାଟିରେ ଗଢ଼ିବା, ନାଚିବା, କଳି କରିବା, ଗୀତ ଗାଇବା, ରଙ୍ଗଦେଇ ତୂଳୀରେ ଆଙ୍କିବା, ଗପ କରିବା, ଲେଖିବା ଅବା ଘର ଆଦି ଗଢ଼ିବା.... । କିନ୍ତୁ ଡେନିସ୍ ମୋ ଜିନିଷଗୁଡ଼ିକୁ ତଳୁ ଗୋଟାଉଥିଲା, ମସିଣାଟିକୁ ସିଧା କରୁଥିଲା । ଆଉ ମୁଁ ସେହି ଛବି ଆଙ୍କୁଥିଲି ଯାହା ସେ ହେବାକୁ ଯାଉଛି, ଭଏ ଏକ ପାଗଳ.... ଅଜଣା ଭୟରେ ଡରି ମରୁଛି.... ଆରାମ କଣ ଜାଣେନା ।

ମେଏର୍ (Mare) ସବୁବେଳେ ପଦ ପଢ଼େଇବାଟାକୁ ବିରୋଧ କରୁଥିଲେ । ସେଦିନ କଥା । ସକାଳବେଳାର ଶିଶୁ ଶ୍ରେଣୀରେ ସବୁ ପିଲା ଏକ ସାଙ୍ଗରେ କଥା ହେଉଥିଲେ । କଥା ଥିଲା, ସେମାନେ କେଉଁଥିରେ ଡରି ଯାଉଛନ୍ତି ଆଉ ପଳାଇ ଯାଆନ୍ତି । ''ମୁଁ ଷଣ୍ଢିଆ କୁକୁରକୁ ଗୁଳି କରିଦେବି'' - ଗ୍ରେ'ର କଥାରୁ ତା'ର କୁକୁର ଭୟ ଜଣାପଡ଼ିଲା । ଆପଣମାନେ ତ ଜାଣନ୍ତି ଛୋଟ ପିଲାମାନେ କୁକୁରକୁ ଡରନ୍ତି ।

କିନ୍ତୁ ମୋ ଘର ପାଖରେ ପିଲା ଅଛନ୍ତି - ମଇଳା ଆଉ ପୂରାପୂରି ବିଗିଡ଼ି ଯାଇଥିବା ପିଲା । ସେମାନଙ୍କର କିନ୍ତୁ ଡର ନ ଥାଏ । ସେମାନଙ୍କୁ ପଢ଼େଇବା ପଦଗୁଡ଼ିକ ଭିତରେ ମୂଳ ପଦ ହେଉଛି: ବାପା, ଚୁମା..... ଆଦି ଏବଂ ଟ୍ରକ, ପାହାଡ଼ ଓ ମାଆ ଠାରୁ ପ୍ରେମ, ଟ୍ରେନ୍ ପର୍ଯ୍ୟନ୍ତ। ହେଲେ ବିଗିଡ଼ି ଯାଇଥିବା ସେଇ ଅସନା ପିଲାଗୁଡ଼ାକ କିନ୍ତୁ ପ୍ରକୃତରେ କେତେ ମହାନ !

ତାଙ୍କ ମନରେ ପଦଗୁଡ଼ିକୁ ସଜାଡ଼ି ତାଙ୍କ ବଣୁଆ ଢ଼ାଞ୍ଚାରେ ଭାଗ ଭାଗ କରି ତାଲିକା କରାଯାଇଥାଏ । ସବୁ ପୁଅପିଲା ଗାଡ଼ି, ଉଡ଼ାଜାହାଜ, ଟ୍ରାକ୍ଟର, ଜେଟ୍ ଆଦି ଚାହିଁଲାବେଳେ, ଝିଅମାନେ ଘର ଓ ଘରକରଣା ପ୍ରତି ଆଦର କରି ଘର, ମାଆ, ଖେଳନା ଆଦି ବାଛନ୍ତି । ତା' ପରେ ଡର କଥା, ଭୂତ, ବାଘ, ଗୋଧି, ବାଘୁଆ କୁକୁର, ବାର୍‌ହା, ପୋଲିସ । ପ୍ରେମ ବିଷୟରେ ଚୁମା, ପ୍ରେମ, ସ୍ପର୍ଶ (ପରଶ), ରଣପା (ଯୁଦ୍ଧ ନାଟ) । ପହିଲି ପଦଗୁଡ଼ିକ ତାଙ୍କ ମନର ଯେଉଁ ଛବି ଆଙ୍କିଥାଏ, ସେଗୁଡ଼ିକ ଏତେ ପରିପୂର୍ଣ ଓ ଶକ୍ତିଶାଳୀ ଯେ ଆମେ କେହି ତା'ର ପ୍ରକୃତ ଚିତ୍ରଟିଏ ଆଙ୍କିପାରିବା ନାହିଁ । କାରଣ ପ୍ରଥମତଃ ଆମେ ତାହା ଦେଖିପାରୁନା, ଦ୍ୱିତୀୟତଃ ସେଗୁଡ଼ିକ ସେଇ ପିଲାର ଦେହ ଓ ମନର ଜିଅନ୍ତା ଚେତନା । ସେଗୁଡ଼ିକ ସେମାନଙ୍କର ପ୍ରାଣ ଶକ୍ତିର ଅଂଶ।ତାହାର ଛବି ଆଙ୍କିବା ଆମ ଭାବନାର ସୀମା ବାହାରେ । ତେଣୁ ଆମେ କେବଳ ପଦ ଶିଖାଇଥାଉ ସୀମାବାହାରେ । ଏହା ହିଁ ଜଣିକିଆ ଶିକ୍ଷାର ମୂଳ ଏବଂ ସେହି ପଦଗୁଡ଼ିକ ତାଙ୍କର ଦେହ ମନର ପ୍ରତିଛବି ।

ସେହି ପଦଗୁଡ଼ିକୁ ବୁଝିବାକୁ କଥାଭାଷା କରନ୍ତୁ । ଦେଖିବେ, ଭୟର କାରଣଟି କହି ସାରିବା ପରେ ସେମାନେ ବେଶ୍ ସାହସୀ ହୋଇଉଠନ୍ତି । ହେଲେ,

ପ୍ରତି ପିଲା ଅନ୍ୟଠାରୁ ଭିନ୍ନ । ପିଲା ପିଲା ଭିତରେ କେତେ ତଫାତ୍ ! ଆଉ ଏଇ ଶିଶୁ ବୟସରେ ଜଣଙ୍କଠାରୁ ଜଣେ ବହୁତ ଅଲଗା । କାରଣ ତାଙ୍କର ବ୍ୟକ୍ତିତ୍ୱ ଗଠିତ ହୋଇ ନଥାଏ । ନିଉଜିଲାଣ୍ଡରେ ଗୋଟିଏ ଢାଞ୍ଚା ସମସ୍ତଙ୍କ ଉପରେ ଲଦି ଦିଆଯାଏ । ସେଗୁଡ଼ିକ ଅସଲି ପଦଗୁଡ଼ିକ ଠାରୁ ବହୁତ ଦୂରରେ, ଅନେକ ତ ବାକ୍ୟଠାରୁ ବଡ଼ । ବେଳେବେଳେ ଗୋଟିଏ ଗୋଟିଏ କାହାଣୀ । ସେଗୁଡ଼ିକ ପ୍ରକୃତରେ ଗୋଟିଏ ଗୋଟିଏ ନକ୍ସା । ମୁଁ ଏହା ଭଲ ଭାବରେ ଜାଣେ- ସେମାନେ ମୋତେ ଏ କଥା କହନ୍ତି ।

ଆପେ ଆପେ ମନର ଭାବନା ପଦ ରୂପରେ ପାଟି ବାଟେ ଆସିଯାଏ । ବେଶ୍ ସରାଗରେ ସେମାନେ ଏସବୁ କହନ୍ତି । ଧମନୀରେ ରକ୍ତ ବହିଲା ପରି ଅତୀବ ସୃଜନଶୀଳ ଧାରାରେ ସେହି ପଦଗୁଡ଼ିକ ଆପେ ଆସନ୍ତି, ଗଢ଼ିହେବାପାଇଁ ପ୍ରକାଶ ପାଆନ୍ତି । ପ୍ରକୃତିର ଅନ୍ୟ ସମସ୍ତ ଜୈବ ଘଟଣା ପରି ଧୀରେ ଧୀରେ ଏଗୁଡ଼ିକ ବି ସ୍ଥିର ରୂପ ପାଇଁ ଜୀବନର ଛନ୍ଦରେ ଖେଳାଇଯାଆନ୍ତି । ଏଥିସହ ଭୟର କାରଣ ଗୁଡ଼ିକ ବି ଖୋଲି ହୋଇଯାଏ । ଏଥିରେ ଜଣକର ଅସଲ ଆଗ୍ରହ ଓ ରୁଚି ଫୁଟି ଉଠିଥାଏ । କିଛିଟା ଯୌନ ସଂକେତ ମଧ୍ୟ ମିଳିଥାଏ । ମୋଟ ଉପରେ ଏଗୁଡ଼ିକ ହୋଇଥାଏ ଗୋଟିଏ ଦେହ- ମନର ପ୍ରତିଛବି । ବାପା, ମାଆ, ଭୂତ, ବୋମା, ଚୁମା, ଭାଇ, କଂସେଇ ଛୁରୀ, ଜେଲ୍, ପ୍ରେମ, ନାଚ, କାନ୍ଦ, ଯୁଦ୍ଧ, ଟୋପି, ଡାହାଳ କୁକୁର, ପରଶ, ବାର୍‌ହା..... ଭାବନ୍ତୁ ତ ଆପଣ ଛୁଆଟିଏ ହୋଇଥିଲେ ଆଉ କେଉଁ ପଦ ଭଲା ବାଛିଥା'ନ୍ତେ ? ଆପଣଙ୍କ ନିଜ ମନର ପଦ ନା, ନିଉଜିଲାଣ୍ଡରେ ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ ପୋଥିର ପଦଗୁଡ଼ିକ ? "ଆସ ଜନ୍ ଆସ, ଦେଖ ଜନ୍ ଦେଖ, ଆସ ଆଉ ଦେଖ ।" ଏଗୁଡ଼ିକ ତ ଇଂରାଜୀ ଉଚ୍ଚ ମଧ୍ୟବିତ୍ ଲୋକଙ୍କ ସମ୍ଭ୍ରାନ୍ତ ଅର୍ଥବୋଧକ ପଦ ତାଲିକା !!

ପିଲାର ପାଟିରୁ ଆସିଥିବା ପଦସବୁ ତା' ମନର ପରିପ୍ରକାଶ, ତା' ଭାବନାର ଛବି । ଅସଲି ଛବି ତା' ମନରେ ଗହୀରିଆ ଛାପ ପକାଇ ରହିଥାଏ । ଏହା ହିଁ ତା'ପାଇଁ ପୂର୍ଣ୍ଣାଙ୍ଗ କଳା, ଯାହା ତା'କୁ ଗଢେ । ତା' ପ୍ରାଣର ଅଂଶ । ତା' ଦେହ ମନକୁ ଗଢିବାର (Organic) ଅସଲି ବାଟ । ତେଣୁ ସେହି ପଦଗୁଡିକ ସେ କହେ, ଖୁସିରେ ପଢେ- ତା' ଭାବନାକୁ ଆହୁରି ବଢାଏ । ଫଳରେ ତା'

ମନ ଖୋଲିଯାଏ- ଅଧିକରୁ ଅଧିକ ପଦ ଜିଭକୁ ଆସେ । ଏଇଥିରୁ ବାହାର ଦୁନିଆ ପାଇଁ, ସମାଜ ପାଇଁ ତା'ର ସରାଗ ଆସେ, ସେ ଖୁସିରେ ପଢେ । ଫଳରେ ଏଇ ପଢାଦେଇ ସେ ଗଢିହୁଏ- ତା'ର ବ୍ୟକ୍ତିତ୍ୱର ମୂଳଦୁଆ ପଡେ- ସାରା ଜୀବନ ପାଇଁ । ତେଣୁ ଏଇ ପାଞ୍ଚ ବରଷିଆ ଛୁଆଙ୍କ ପାଇଁ ମୁଁ ଏଇ ବାଟ ଧରିଛି- ପ୍ରତିଦିନ ତାଙ୍କ ଶ୍ରେଣୀରେ ତାଙ୍କର ପଦ ପଢାଏ, ତା' ସାଥିରେ ସେମାନେ ମାଟି ଓ ରଙ୍ଗରେ ଖେଳନ୍ତି । ଗୀତ ଗାଆନ୍ତି, କଳି ବି କରନ୍ତି ।

ଏଇ ହେଲା ଚାବିକାଠି; ଆଉ ଟିକିଏ ବଡ ହେଲାବେଳକୁ ତାର ପ୍ରାଣ ଭିତରେ ସେଇ ସରାଗ ଦୃଢ ହୋଇଆସେ । ବଦଳି ଚାଲିଥିବା ବଢିଲା ଦେହ ଓ ମନରେ ସେ ଚେତନା ଅତୁଟ ରହେ । ହୁଏ ତା'ର ବ୍ୟକ୍ତିତ୍ୱ;ସବୁରି ମୂଳରେ ସେଇ ନିଜସ୍ୱ ପଦ- ତାଲିକା:

## ନୀତି (ମାକ୍ସିମ୍‌ସ୍)

*(ମାଓରୀ ଶିଶୁଙ୍କୁ ପଢ଼ାଇବା ପାଇଁ ପ୍ରସ୍ତୁତି )*

*ପଦ-ତାଲିକାଟି ମୁଖ୍ୟତଃ ଭୟ ଓ ଯୌନ - ଏ ଦୁଇ ପ୍ରଧାନ ପ୍ରବୃତ୍ତିକୁ କେନ୍ଦ୍ର କରି ଗଢ଼ା ।*

*ପଦ-ତାଲିକା ଦେଶ କାଳ ପାତ୍ର ଅନୁସାରେ ଅଲଗା । (ଅଂଚଳ ଓ ସଂପ୍ରଦାୟ ଅନୁସାରେ ଗଢ଼ା ।)*

*ପଛୁଆ ପିଲାଙ୍କ ପାଇଁ ଅଲଗା ପଦ-ତାଲିକା ତିଆରି କରି ତାଙ୍କୁ ପଢ଼ାରେ ଆଗ୍ରହୀ କରାଯାଏ ।*

*ଜଣେ ସାଧାରଣ ପିଲା ଅପେକ୍ଷା ଜଣେ ପଛୁଆ ପିଲାର 'ପଦ' କେତେ ଦୂର ବଳୁଆ ଓ ସଫଳ ପରଖ କରିହୁଏ ।*

*ସଠିକ୍ ଛବି ଆଙ୍କିବା ସହଜ ନ ହେଲେ ଛବିକୁ ବାଦ୍ ଦେବା ଭଲ ।*

*ପଦଟି ସାନ କି ବଡ଼ ହେବାରେ ତା'ର ପ୍ରଭାବ ନିର୍ଭର କରେ ନାହିଁ ।*

*ମାଓରି ଶିଶୁ ଶ୍ରେଣୀରେ ତାଙ୍କ ନିଜର ମାନ ସହିତ ୟୁରୋପୀୟ ମାନ ପ୍ରତି ସଜାଗ ରହିବାକୁ ହୁଏ ।*

## ବ୍ୟକ୍ତିଗତ ପଦ-ତାଲିକା

ମୁଁ ଆଗରୁ କହିଛି ଯେ ବଡ଼ମାନଙ୍କ ଦ୍ୱାରା ବାଛି ବାଛି ଗଢ଼ା ହୋଇଥିବା ପଦଗୁଡ଼ିକ ବେଶ୍ ଅର୍ଥବୋଧକ ଓ ଆନନ୍ଦଦାୟକ ହୋଇପାରେ । କିନ୍ତୁ ପିଲାଙ୍କଠାରୁ ଆସିଥିବା ପଦଗୁଡ଼ିକ ସେମାନଙ୍କ ମନ ଓ ଭାବନାର ଛବି ଏବଂ ସେଥିରେ ସେମାନଙ୍କ ପାଇଁ ଯେପରି ଆନନ୍ଦ, ସେପରି ତେଜ ଥିବାରୁ ସେଗୁଡ଼ିକ ବେଶ୍ ବଳୁଆ ଓ ପ୍ରଭାବଶାଳୀ । ହେଲେ ଏପରି କେତେ ଗୋଠଖଣ୍ଡିଆ ପିଲା ଥାଆନ୍ତି, ଯେଉଁମାନଙ୍କ ଭାବନା, ଆବେଗ ଯୋଗୁଁ ଅସ୍ଥିର ଥାଏ ଏବଂ ସେମାନଙ୍କର ମନର ଅସଲି ପଦ ଆଦାୟ କରିବା ସହଜ ନୁହେଁ ।

ରାଙ୍ଗି ସେପରି ଜଣେ ପଛୁଆ ମାଓରି ଶିଶୁ । ନିଜ ଭାଷାର 'ଆସ', 'ଦେଖ' ଓ 'ଆଉ' ପଦଗୁଡ଼ିକ ପଢ଼ି ଶିଖିବାରେ ସେ ଅଟକି ଯାଉଥିଲା । ସେ କାହାକୁ ଭୟ କରେ ବୋଲି ପଚାରିବା ଦରକାର ବୋଲି ମୁଁ କିଛି ସପ୍ତାହ ପରେ ହିଁ ଠିକ୍ କରି ପାରିଲି । ସେ ପୋଲିସ୍‌କୁ ଡ଼ରେ ବୋଲି କହିଲା । କାରଣ ପୋଲିସ୍ ତା'କୁ କୋଇଲା ଇଂଜିନ୍‌ର ଗାଡ଼ିରେ ଜେଲ୍‌କୁ ନେଇ ଯାଇପାରେ ଏବଂ କଂସେଇ ଛୁରୀରେ କାଟି ଦେଇପାରେ । ମାରି ଦେଇପାରେ ଏବଂ ଫାଶିରେ ଝୁଲେଇ ଦେଇପାରେ । ଏ କଥାର ମୂଳ ଖୋଜିଖୋଜି ମୁଁ ଜାଣିପାରିଲି ଯେ



ରାଙ୍ଗିର ବାପା ନିଶାଖୋର । ପରିବାର ଚଳାଇବାକୁ ସେ ଗୋଟିଏ ହୋଟେଲ୍‌ରେ ଜୁଆ-ଆଡ୍ଡାଟିଏ ଚଳାନ୍ତି । ଫଳରେ ପରିବାରଟି ସବୁବେଳେ ପୋଲିସ୍ ଭୟରେ ରହିଥାଏ । କାହାରିକୁ ଏ ବିଷୟ ନ କହିବାକୁ ପିଲାମାନଙ୍କୁ ହୁଏତ ଡ଼ରାଇ ଦିଆଯାଇ ଥାଇପାରେ ।

ମୁଁ ଯେତେବେଳେ ରାଙ୍ଗିକୁ ପୋଲିସ୍ କଂସେଇ କାତି, ମାରିବା, ଜେଲ, ଇଂଜିନ୍ ପଦ ପଢ଼େଇଲି, ସେ ବେଶ୍ ସହଜରେ ପଢ଼ିଲା ଓ ଶିଖିଲା ! ଆଗରୁ କେବଳ 'ଆସ, ଦେଖ, ଆଉ' ପଦ ତିନୋଟି ପାଇଁ ଚାରିମାସ ବିତେଇ ଦେଇଥିଲାବେଳେ ଏଇ ପଦଗୁଡ଼ିକ ପାଇଁ ଚାରି ମିନିଟ୍ ବି ଲାଗିଲା ନାହିଁ !! ତେଣୁ ଏଇ ପଦଗୁଡ଼ିକ ମୁଁ ମଲାଟରେ ଲେଖି ତାକୁ ପଢ଼େଇଲି ଏବଂ ରାଙ୍ଗି ବେଶ ସରଳ ଭାବେ ପଢ଼ିବା ଶିଖି ଚାଲିଲା ।

ସେପରି ଆଉ ଜଣେ ପିଲା ପୁକି, ତା'ର ମାଆ-ବାପା ଚାଲାକ ଲୋକ । କିନ୍ତୁ କଳି କରନ୍ତି ଓ ବେଳେବେଳେ ବେଶ୍ ହାତାହାତି । କଳିରୁ ଉଚ୍ଚ ପାଟି ହୁଏ ଏବଂ ପିଲାଏ ଭୟରେ ନିଦରୁ ଉଠିପଡ଼ି ରଡ଼ି ଛାଡ଼ନ୍ତି । ଏସବୁ ବିଷୟ ମୁଁ ଶୁଣିଲି । ତେଣିକି ବାପା, ମାଆ, ଲଢ଼େଇ, ଚିତ୍‌କାର, ରଡ଼ି, ମାଡ଼, ଭଙ୍ଗାରୁଜା, ଭୟ, ଗୁଳି, ଝାଡୁ ଆଦି ପଦଗୁଡ଼ିକ ପୁକିକୁ ସୁହେଇଲା । ସେ ଏଇ ପଦ ବେଶ୍ ପଢ଼ିପାରିଲା ; କିନ୍ତୁ ଆଗରୁ ଛ' ମାସରେ ପୁକି ଦୁଇଟି ପଦ ପଢ଼ି ଶିଖିଥିଲା । ଏସବୁ ଦିଗରୁ ପିଲାଙ୍କ ମନର କଥାରୁ ଗଢ଼ା ଆମର ପଦ ତାଲିକା ସାଧାରଣ ପଦ- ତାଲିକା ଏବଂ ପଢ଼ା ବହିରୁ ପୂରା ଅଲଗା । "ଜେନେଟ୍ ଆଉ ଜନ୍, ଆସ....ଦେଖ......ଟିକି ନାଆ....କୁନି କୁକୁରଟି ଧାଉଁଛି...." ଇତ୍ୟାଦି ପଦ ତାଲିକା ମନରେ ମେଳ ନାହିଁ । ତାଙ୍କଠାରୁ ମିଳୁଥିବା ପଦରେ ତାଙ୍କର ମନ ଓ ଆବେଗ ମିଶି ରହିଥାଏ । ଏଇ ଦୁଇ ପ୍ରକାର ପଦ ତାଲିକା ଭିତରେ ପିଲାଙ୍କ ମନରୁ ଦୂରତା କଳନା କରିବା ଏକ ସୁଯୋଗ ।

ଶିଶୁ ଶ୍ରେଣୀରେ ସବୁବେଳେ ଏହି ରକମର ସ୍ୱତନ୍ତ୍ର ଘଟଣାମାନ ଦେଖାଦେବା ଅତି ସାଧାରଣ କଥା । ବ୍ୟକ୍ତିଗତ ଭାବେ ଶିଶୁର ସ୍ୱାତନ୍ତ୍ର୍ୟକୁ ବାରି ତା'ର ପଢ଼ା ଆରମ୍ଭ କରିପାରିଲେ, ତା' ମନର ପଦ ସେ ସହଜ ଓ ସରଳ ଭାବେ ପଢ଼ି ନିଏ । ଥରେ ତା' ମନ ଖୋଲିଗଲେ ତା' ନିଜ ପଦ ପଢ଼ି

ପଢ଼ି ସେ ସାଧାରଣ ପଦ  ତାଲିକା ପଢ଼ିବାରେ ମନ ଦିଏ। ତା'ର ମନ ଆବେଗ ଓ ପ୍ରବୃତ୍ତି ସହିତ ଖାପ ଖାଉ ନଥିବା ପଦ- ତାଲିକା ଯେତେ ସୁନ୍ଦର ହେଲେ ବି ତା'କୁ ସାହାଯ୍ୟ କରେ ନାହିଁ। ବୋଝ ଲଦିଲା ପରି ହୁଏ। ଏହା ପାଠ ପଢ଼ା ତ ନୁହେଁ। ବରଂ ତା'ର କ୍ଷତି କରେ। ତେଣୁ ଏପରି ପଢ଼ାଇବାଠାରୁ ନ ପଢ଼ାଇବାଟା ଢ଼େର ଭଲ। କାରଣ ସେ ବାଟରେ ସେ ଥକି ପଡ଼େ। ପଢ଼ି ଶିଖିବାର ସରାଗ ତା ମନରୁ ମରିଯାଏ।

ସାଧାରଣ ଭାବେ ମନକୁ ପାଇଲା ଭଳି ବଛା ବଛା ପଦ ତାଲିକା ମଧ୍ୟ ପ୍ରକୃତରେ ଶିଶୁ ମନକୁ ଛୁଏଁ ନାହିଁ। ଏଇଟା ଆମେ ମନେ ରଖିବା ନିହାତି ଦରକାର। ପଛୁଆ ପିଲାଟିଏ ପାଖରେ ପଦ କେଡ଼େ ଓଜନିଆ, -ତା' ପରଖ କରି ହୁଏ। ଆଉ ମାଓରି ସଂପ୍ରଦାୟରେ ଅନେକ ପଛୁଆ ପିଲା ଅଛନ୍ତି। ସେମାନଙ୍କ ପାଖରେ 'ଜେନେଟ୍....ଜନ୍....ଆସ, ଦେଖ....' ଏକାବେଳକେ ଅର୍ଥହୀନ, ପ୍ରାଣହୀନ।

(ମୋର) ମାଓରି ଶିଶୁ ଶ୍ରେଣୀରେ ସାଧାରଣ ପଦ ତାଲିକାର ପଦ ସେଇଥିପାଇଁ ବଦଳି ଚାଲିଥାଏ। ଭୟ ଓ ଯୌନ ପ୍ରବୃତ୍ତିକୁ କେନ୍ଦ୍ର କରି ଗଠିତ ପଦର ତାଲିକାଟିକୁ ଲଗାତାର ବଦଳେଇବା ଦରକାର ହୁଏ। ଏହା ଠିକ୍ ଗୋଟିଏ ଜୀଅନ୍ତା ଜିନିଷର ରୂପ ବଦଳିବା ସହ ସମାନ।

ଏଇ ସପ୍ତାହରେ ନୂଆ ଆସିଥିବା ଶିଶୁ ଶ୍ରେଣୀର ସବୁ ପିଲା ମାଓରି। ସେମାନଙ୍କ ପଦ ତାଲିକା ହେଉଛି :

ମୋହି : ଭୂତ, ଜେଟ୍, ଜିପ୍, ସାଇକଲ୍, ଉଡ଼ାଜାହାଜ, କ୍ଷୀରି, ପିଠା, ଅଣ୍ଡା, କାର୍, ମଦ, ଜାମା, ଚୁମା।

ଜୋ'ଜୋ : ରକେଟ୍, ରାଜା, ମଣିଷ, ଭୂତ, ଭାରତୀୟ, ଫାଣ୍ଟମ୍, ସୁପରମେନ୍।

ଗିଲ୍‌ବର୍ଟ : ବେଙ୍ଗ, ଅଖ୍‌ରୋଟ୍, ରକେଟ୍ ରାଜା, ମଣିଷ, ଜେଟ୍, ଜିପ୍, ମଦ, ଟ୍ରାକ୍ଟର, ବୋମା, ଘୋଡ଼ା।

ମୋରିନ୍ : ମାଆ, ବାପା, କୁକୁର, ଚୁମା....।

ପେନି : ବାପା, ମାଆ, ଘର, କାର୍, ଉଡାଜାହାଜ।

ରୋଙ୍ଗୋ : ମଟର,ପିଠା, ଭୂତ, ମେଘ, ଚୁମା, ମୋଜା ।

ଫିଲିପ୍ : ରେଳ ଗାଡ଼ି, ବକ୍‌ସିଂ, ଟ୍ରକ୍, ମଟର, ବନ୍ଧୁକ,... ।

ଫାଇଲିସ : ମଦ, ପିଠା, ଗାଡ଼ି, ପ୍ରିୟ, ଚୁମା, ଭୂତ ।

ଏଇ ପଦଗୁଡ଼ିକୁ ମୁଁ ଯେତେବେଳେ ବଡ଼ ମଲାଟରେ ଛପେଇ ଦିଏ ସେମାନଙ୍କର ମୁହଁରେ ହସ ଫୁଟି ଉଠେ । ବେଶ୍ ଉତ୍ସାହିତ ହୋଇଉଠନ୍ତି ସେମାନେ ।

ଗତ ଦୁଇ ବର୍ଷରେ ନୂଆ ନୂଆ ମାଓରି ପିଲାଙ୍କ ନିଜ ପଦଗୁଡ଼ିକ ହେଉଛି :

ଭୟ (ପ୍ରଚଣ୍ଡ) : ମାଆ, ବାପା, ଭୂତ, ଭୟ, ବାର୍‌ହା, ପୋଲିସ୍, ବୁଢ଼ିଆଣୀ, କୁକୁର, ଜେଲ, ଷଣ୍ଢ, ହତ୍ୟା, କଂସେଇ କଟୁରି, ଚିତ୍କାର, ମାଡ଼, ଯୁଦ୍ଧ, ଘଡ଼ଘଡ଼ି, କୁମ୍ଭୀର, କାନ୍ଦ ..... ।

ଏ ସବୁଥିରୁ ଭୟ ସାଧାରଣ ଭାବେ ବେଶ୍ ବାରି ହୁଏ ।

ଯୌନ : ଚୁମା, ପ୍ରେମ, ମାଓରି , ଯୁଦ୍ଧନାଚ, ପ୍ରିୟ, ଏକାଠି, ମୁଁ ଆଉ ତୁମେ, ଗୀତ,......

ଗାଡ଼ି : ଜେଟ୍, ଜିପ୍, ଉଡ଼ାଜାହାଜ, ରେଳଗାଡ଼ି, କାର୍, ଟ୍ରକ, ଟ୍ରେଲର୍, ବସ୍,..

ଅନ୍ୟାନ୍ୟ : ଘର, ସ୍କୁଲ, ମୋଜା, ବେଙ୍ଗ, ଅଖ୍‌ରୋଟ୍, ମଟର, ପିଠା, ଛବି, ମଦ,.....

ଦୁଇ ବର୍ଷର ଶିଶୁ-ଶ୍ରେଣୀ ପର୍ଯ୍ୟବେକ୍ଷଣରୁ ଦୁଇଟି ପଦ ବିଶେଷ ଜୋରଦାର୍ ଭାବରେ ବାରି ହୋଇଛି । ଭିନ୍ନ ଭିନ୍ନ ପରିବେଶରେ ମଧ୍ୟ ତାହାର ପରୀକ୍ଷା ହୋଇଛି । ସେ ଦୁଇଟି ହେଉଛି : ଭୂତ ଓ ଚୁମା । ନିଜ ଢ଼ାଞ୍ଚାରେ ମନରୁ ବାହାରିଥିବା ଏଇ ପଦଦୁଇଟି ମଣିଷର ଦୁଇଟି ପ୍ରଧାନ ପ୍ରବୃତ୍ତିର ସଙ୍କେତ । ଗୋରା ହେଉ କି କଳା ହେଉ, ପହିଲି ଦିବସରେ ଆଉ ପହିଲି କଥାରେ ପଦ ଦୁଇଟି ସାଧାରଣ ଭାବେ ପିଲେ କହିଛନ୍ତି ।

ତଥାପି, ଏଇ ପଦ ଦୁଇଟିକୁ ମୁଁ କ'ଣ ପହିଲି ପଢ଼ା ପଦ- ତାଲିକା ଭିତରକୁ ନେଇ ପାରିଛି ? ଉତ୍ସାହିତ କରିବାରେ ତ ସୀମା ନାହିଁ;- କିନ୍ତୁ ପ୍ରତିକୂଳ ସ୍ରୋତରେ ପହଁରି ଯିବା ପାଇଁ ଯେଉଁ ବଳ ଦରକାର, ତା'ର ସୀମା ରହିଛି ।

କାରଣ : ଏଠାରେ ମଧ୍ୟ ପଢ଼ା ଶିଖାଇବାକୁ ଥିବା ପହିଲି ପଦ-ତାଲିକାରେ ରହିଛି, ସେଇ "ଜେନେଟ୍ ଆଉ ଜନ୍" ।

ଜେନେଟ୍ ଜନ୍ ଆସ, ଚାହଁ ଆଉ ଦେଖ....ନାଆଗୁଡ଼ିକ....ଟିକି କୁକୁରଟି ଧାଇଁ ଯାଉଛି....ଉଡ଼ାଜାହାଜ....ମୋର ବିଲେଇଛୁଆଟି.... ଏକ,ଦୁଇ, ତିନି....ଖେଳ, ଡ଼ିଆଁ.....ଯାଇପାରେ......ଘୋଡ଼ା ଚଢ଼ା.... ।

ଏଇ ପଦ-ତାଲିକା ଓ ପିଲାଙ୍କ ମୁହଁର ପଦଗୁଡ଼ିକର ତାଲିକା ଭିତରେ କିଛି ତଫାତ୍ ଅଛି କି ? ନିଶ୍ଚିତ ଭାବେ ତଫାତ ରହିଛି । ଗୋଟିଏ ହେଉଛି, ଗଢ଼ି ଉଠିବା ପାଇଁ ଉଚ୍ଛୁଳି ଉଠୁଥିବା ପ୍ରାଣ-ଶକ୍ତିର ପ୍ରକାଶ ଏବଂ ଅନ୍ୟଟି ହେଉଛି,, ବାହାରୁ ଲଦି ଦିଆଯାଉଥିବା ବୋଝ- ବା, ବାହ୍ୟ ପ୍ରୟୋଗ । ସେଇତ ସ୍ୱାଭାବିକ (Organic) ଆଉ ଅସ୍ୱାଭାବିକ (Inorganic) ପଦଗୁଡ଼ିକ ଭିତରେ ଥିବା ପାର୍ଥକ୍ୟ ।

## ଦରକାରୀ ପଦ ଶିଖାଇବା କୌଶଳ

ଅସଲି ପଦଗୁଡ଼ିକୁ ମୁଁ ସକାଳବେଳା ପ୍ରଥମ ପିରିଅଡ଼ରେ ହିଁ ପରଖ କରେ । କାରଣ : ଏତିକିବେଳେ ପିଲାଏ ପୂରାଦମ୍‌ରେ କହି ପାରନ୍ତି, ପଢ଼ି ପାରନ୍ତି ଓ ଶିଖି ପାରନ୍ତି । ଏହି ସମୟରେ ତାଙ୍କର ଶକ୍ତି ସବୁଠୁ ଉଚ୍ଚ ସ୍ତରରେ ଥାଏ, ଏଣେ ପୁଣି ଏହା ହେଉଛି ଗଢ଼ି ତୋଳିବାର କାମ (ସୃଜନାତ୍ମକ ପ୍ରକ୍ରିୟା) । ମୋର ବିଶ୍ୱାସ : ସବୁଠାରୁ ଏଇ ଗଢ଼ିବା ମନୋଭାବ ହିଁ ଅତି ଦରକାରୀ । ତେଣୁ ସକାଳ ୯ ଘଣ୍ଟାଠାରୁ ସାଢ଼େ ଦଶଟା ମଧ୍ୟରେ ମୁଁ ମୋର ସବୁ ମାଧ୍ୟମରେ ସବୁ ଗଠନାତ୍ମକ କୌଶଳ ପ୍ରୟୋଗ କରେ ।

ପିଲେ ଶ୍ରେଣୀରେ ପହଞ୍ଚିବା ପରେ ପରେ ହିଁ ମୁଁ କାମ ଆରମ୍ଭ କରିଦିଏ । ସେହି ସମୟରେ ପିଲାଙ୍କ ମନ ଆଉ କୁଆଡ଼େ ଲାଗି ନଥାଏ । ସମସ୍ତେ ସତେଜ ଓ ଖୁସି ଥାଆନ୍ତି । ସେମାନେ ବେଶ୍ ଲାଗିଯାଆନ୍ତି । ତାଙ୍କର ଏଇ ସରାଗଭରା ସକାଳୁଆ ବଳୁଆ ମନରେ ସଜ ସଜ ତାଙ୍କରି ପଦଗୁଡ଼ିକ ବେଶ୍ ସହଜ ସରଳ ଭାବରେ ପଢ଼ି ଶିଖି ହୁଏ । ଅନ୍ୟ ସମୟରେ ଏଇ କାମ ବାଧା ଦେଲା ପରି ହୋଇଥାଏ । ସେମାନେ ମାଟି କାମରେ ମାତିଥିଲା ବେଳେ ଏଇଟା ତ କାମରେ ବାଧା ସୃଷ୍ଟି କରିଥାଏ ।

ନିଷ୍ଠାପର ଭାବରେ ପୂର୍ବରୁ ପ୍ରସ୍ତୁତି କାମ ସରିଥାଏ । ଫୁଟେ ଯାଏଁ ଲମ୍ବା ଓ ପ୍ରାୟ ପାଞ୍ଚ ଇଞ୍ଚ ଓସାରର ମଲାଟ ଖଣ୍ଡ (କାର୍ଡ୍) ସହିତ କାର୍ଡ୍‌ଠାରୁ ଅଧିକ ବଡ଼ ମୋଟା ମଲାଟଟିଏ ଆସନ ସହିତ ଯୋଡ଼ି ଦେଇଥାଏ । ପୁରୁଣା କାର୍ଡ୍‌ଗୁଡ଼ିକୁ ମଧ୍ୟ ସେଥିରେ ଯୋଡ଼ି ଦେଇଥାଏ । କାର୍ଡ୍‌ଗୁଡ଼ିକ ଶସ୍ତା ଡ୍ରଇଂ କାଗଜ । ଆଉ ଏହା ସହିତ ରଖିଥାଏ ପ୍ରତି ପିଲା ପାଇଁ ଖଣ୍ଡିଏ ଖଣ୍ଡିଏ ମୋଟା କଳା ଖଡ଼ି ।

ମୁଁ ଜଣେ ପିଲାକୁ ପାଖକୁ ଡାକେ । ସେ ଚାହିଁଥିବା ପଦ ପଚାରି ବୁଝେ । ସେ ହୁଏତ କହିପାରେ, 'ମୋଜା' । ମୁଁ ସଙ୍ଗେ ସଙ୍ଗେ ମଲାଟ (କାର୍ଡ୍)ରେ 'ମୋଜା' ଲେଖି ତାକୁ ଦେଇଦିଏ । ମଲାଟର ଗୋଟିଏ କୋଣରେ ମୋର ଜାଣିବା ସୁବିଧା ପାଇଁ ତା' ନାଆଁ ଲେଖି ଦେଇଥାଏ । ମୁଁ ମଲାଟରେ ପଦଟି ଲେଖିଲାବେଳେ ସେ ନିରେଖି ଦେଖୁଥାଏ ଏବଂ ମୋର ସାଥିରେ ପଦଟି ଉଚ୍ଚାରଣ କରେ । ପିଲା ମଲାଟଟିକୁ ନେଇ ତା ଆସନକୁ ଯାଏ ଏବଂ ଆଙ୍ଗୁଠି ବୁଲାଇ ପଦଟିର ଆକାର ପ୍ରକାର ଅନୁଭବ କରେ । ପରେ ଏହାକୁ ସେ ତା' ପାଖରେ ଥିବା ମୁଣିରେ ରଖିଦିଏ । ପ୍ରତ୍ୟେକ ପିଲାକୁ ଗୋଟିଏ ଗୋଟିଏ ନୂଆ ପଦ ଦେଲା ପର୍ଯ୍ୟନ୍ତ ମୁଁ ଜଣକ ପରେ ଜଣକୁ ଡାକେ ।

ତାଙ୍କ ମନରୁ ଆସିଥିବା ଓ ନିଜେ ବାଛିଥିବା ପଦଗୁଡ଼ିକର ସଂଖ୍ୟା କ୍ରମେ ବଢ଼ିଯାଏ । ସେଗୁଡ଼ିକୁ ଗୋଟିଏ ପେଡ଼ିରେ ରଖାହୁଏ । ପ୍ରତିଦିନ ସକାଳେ ପିଲାଏ ଆସିବା ଆଗରୁ ମୁଁ ସେହି କାର୍ଡ୍‌ଗୁଡ଼ିକୁ ଯାଞ୍ଚ କରି ବାଛିନିଏ ଓ ପିଲାଙ୍କ ଆସନ ସହିତ ଯୋଡ଼ି ଦେଇଥାଏ । ପିଲାଏ ପହିଲେ ଏକାଠି ହେଲା ପରେ ଯେତେବେଳେ ନିଜ ନିଜ ଆସନକୁ ଯାଆନ୍ତି, ସେମାନେ ନିଜ ଜାଗାରେ ନିଜ ପଦଗୁଡ଼ିକୁ ଦେଖନ୍ତି । ସେ ଭିତରେ କଳିଗୋଳ ବି ହୋଇଥାଏ, ହେଲେ ଆଉ ଜଣେ ପିଲା ସହ ସାଙ୍ଗ ହୋଇ ବସିଯାଆନ୍ତି ଏବଂ ଉଭୟେ ଉଭୟଙ୍କୁ ପଢ଼ାନ୍ତି, ଶୁଣନ୍ତି ଓ ଏକାଠି ପଢ଼ନ୍ତି । ଦୁଇ ଜଣଙ୍କର ସବୁ ପଦ ଦୁଇ ଜଣ ଜାଣନ୍ତି । ଏଥିରେ ବେଶ୍ ସମୟ ଲାଗେ, ପାଟିହୁଏ ଓ ଚଲାବୁଲା ମଧ୍ୟ ହୁଏ । କିନ୍ତୁ ପିଲାଙ୍କ ଭିତରେ ମେଳ ହୁଏ । ଜଣଙ୍କ ସାଥିରେ ଆଉ ଜଣଙ୍କ ସମ୍ପର୍କ ବଢ଼େ ଏବଂ ପ୍ରକୃତ ପଢ଼ିବା ସହିତ ମନର ଭାବ ବିନିମୟ ଭଲ ଭାବେ ହୁଏ- ଯାହା

ସାଧାରଣ ଶ୍ରେଣୀ ବଖରାରେ ହୋଇ ନଥାଏ । ସାଙ୍ଗ ହୋଇ ପଢ଼ିବା ଓ ଜଣେ ଆଉ ଜଣକୁ ପଢ଼ାଇବାରେ ବେଶ୍ ଭଲ ଫଳ ମିଳିଥାଏ । ମୁଁ ସେମାନଙ୍କୁ ପଢ଼ାଇବା ଅପେକ୍ଷା ପିଲା ତାର ସାଥିକୁ ଆହୁରି ଭଲ ଭାବେ ପଢ଼ାଇଥାଏ- ଦୁହେଁ ଦୁହିଁଙ୍କୁ । ମୁଁ କେବଳ ଜଣଙ୍କ ପରେ ଜଣଙ୍କୁ ପାଖକୁ ଡାକି ସେ ଦିନ ପାଇଁ ତା'ନିଜ ପଦ ଦେଇଥାଏ ।

ଯେଉଁ ଝିଅଟି 'ମୋଜା' ପଦ ମାଗିଲା ସେ ବୋଧହୁଏ ତା'ର ପୁରୁଣା ପଦ ଭିତରୁ ଗୋଟିଏ କହିଲା ଏବଂ ସେଇ ପଦଲେଖା କାର୍ଡ଼ଟିକୁ ମୁଣିରେ ରଖିଲାବେଳକୁ ସାଥିମାନଙ୍କୁ କହିଲା । ତେବେ ଯେଉଁ ପଦ ପିଲା ମନେ ପକେଇପାରେ ନାହିଁ, ମୁଁ ସେ ପଦଗୁଡ଼ିକୁ ତା'ଠାରୁ ଆଣି ନଷ୍ଟ କରିଦିଏ । କାରଣ ସେହି ପଦ ଗୁରୁତ୍ୱ ହରାଇଥାଏ । କାରଣ ପହିଲି ପଦଗୁଡ଼ିକୁ ପହିଲି ପରିଚୟରେ ହିଁ ସେହି ପିଲାର ନିଜର ହୋଇଥାଏ ଏବଂ ପିଲା ଖୁସିରେ ମନେ ରଖିଥାଏ । ତା' ନ ହେଲେ ସେ ପଦ ଆଉ ପ୍ରଥମ ଓ ପ୍ରଧାନ ହୋଇ ରହେ ନାହିଁ ଏବଂ ପିଲା ଉପରେ ପ୍ରଭାବ ପକାଇପାରେ ନାହିଁ । ଯେଉଁ ସବୁ ପଦ ପିଲା ପାଇଁ ଅସଲି (ଗୁରୁତ୍ୱପୂର୍ଣ୍ଣ) ମୁଁ ସେଗୁଡ଼ିକୁ ହିଁ ରଖିଥାଏ । ପିଲାଙ୍କୁ ଦେଉଥାଏ । କାରଣ : ଏଇ ପହିଲି ପଦଗୁଡ଼ିକୁ ହିଁ ପିଲା ବୁଝିଥାଏ ଏବଂ ସେଗୁଡ଼ିକୁ ପଢ଼ିବା ସଙ୍ଗେ ସଙ୍ଗେ ' ପଢ଼ିବା' ପ୍ରତି ଆଗ୍ରହୀ ହୋଇଥାଏ ।ତେଣୁ ଯେଉଁ ପଦଗୁଡ଼ିକ ପିଲା ମନେ ରଖିଥାଏ, ସେଗୁଡ଼ିକ ତା'ର ଅନ୍ତର ଭିତରୁ ଆସିଥାଏ । ସେ ପଦ ଥରେ କହିଦେଲେ ହେଲା ।

ଏଇ ସ୍ତରରେ ଜଣେ ପିଲାକୁ ଡାକି ମୁଁ ପଚାରେ, ''ଆଜି ତୁମେ କେଉଁ ପଦ ନେବ ?'' ପିଲାଟିର ପାଟିରୁ ଯଦି ଉଚ୍ଛୁଳି ପଡ଼ିଲା ପରି ବାହାରି ଆସେ, ''ଟୋଷ୍ଟ'', ତେବେ ସଙ୍ଗେ ସଙ୍ଗେ ମୁଁ ସେଇ ପଦ ଦିଏ । କିନ୍ତୁ ପିଲାଟି ଯଦି ପଦଟି ଭାବିବାରେ ଲାଗେ, ଭୂଇଁରେ ପାଦ ଘୋଷାଡ଼େ, ମୁଁ ସନ୍ଦେହ କରେ । ସେ ଏଣୁତେଣୁ ଭାବି ଯଦି କହେ 'ଝରକା', ମୁଁ ଲେଖି ଦିଏ । କିନ୍ତୁ ପରେ ସେହିଦିନ ମଧ୍ୟ ସେ ସେଇ ପଦଟିକୁ ମନେ ପକାଇ ପାରି ନଥାଏ । ଅନେକ ଥର ମୁଁ ଏହା ଦେଖିଚି, ପରଖ କରିଛି । ଏପରି ପିଲା ସହ ମୁଁ ଗପସପ କରେ । ତାଙ୍କ ଘର କଥା ପଚାରେ : କେଉଁଠି ଶୁଅ ? କାହା ପାଖରେ ? ବାପା କ'ଣ କରନ୍ତି ?.... ଇତ୍ୟାଦି । ଏମିତି କଥା ହେଇ ତା' ମନ ର ପଦ ପଚାରେ ।

ସେଇ କଥା ଭିତରୁ ସେ ପଦଟିଏ କହିପାରେ ଏବଂ ସେହି ପଦ ପହିଲି ପଦ ବୋଲି ଧରି ନିଆଯାଇପାରେ । ତେଣୁ ପଦଟି ଲେଖେ, ସେ ଲେଖିବା ଦେଖେ, ପଢ଼େ ଓ ନିଏ, ଆସନକୁ ଗଲାବେଳେ ପଦ ଉପରେ ଆଙ୍ଗୁଠି ବୁଲାଇ ମୁଣିରେ ରଖିବାକୁ କହିଦିଏ । ତେବେ, ଏଇ ପଦ ମନର ଅସଲି ପହିଲି ପଦ ପରି ଜୋରଦାର ହୋଇ ନଥାଏ ।

ଏଇ ପଦ ବାଛିବାରେ ମୁଁ ମଧ୍ୟ ବେଳେବେଳେ ଭୁଲ କରିଥାଏ । ନୂଆ ଆସିଥିବା ପିଲାର ସ୍ୱଭାବ- ଚରିତ୍ର ଜାଣିବାକୁ ମୋତେ କିଛି ସମୟ ଲାଗେ । ଏଇ ପାଞ୍ଚବର୍ଷିଆ ପିଲାଙ୍କ ଭିତରେ ସ୍ୱତନ୍ତ୍ରତା ଭରି ରହିଛି- ଠିକ୍ ଯେପରି ପ୍ରକୃତିରେ । ତେଣୁ ସେଇ ଭିନ୍ନତା ସହିତ ନକଲ କରିବା ମନ, ମତିଗତି, ଚପେଇ ରହିଥିବା ମନ, ଭୟ, ସ ନ୍ଦେହ ଇତ୍ୟାଦି ଯୋଗୁଁ ମନ ଭିତରେ ଅସଲି ପଦ ବାରି ହୁଏ ନାହିଁ । କିନ୍ତୁ ନିଜେ କିଛି ସମୟ ଦେଇ ଲାଗିଲେ ଅସଲି ପଦ ବାହାରି ପାରିବ । ବେଳେବେଳେ ବହୁତ ଡେ଼ରିରେ ଅସଲି ପଦଗୁଡ଼ିକ ଝରଣାର ପାଣି ପରି ବହିଆସେ । ଆଉ ତାହା ହିଁ ତା' ମନରେ ଛବି- ଦେହ ଓ ମନକୁ ନେଇ ଗଢ଼ି ତୋଳିବାର, ସ୍ୱାଭାବିକ (Organic) ଶିକ୍ଷାର ମୂଲ୍ୟବାନ ଉପାଦାନ ।

ଏସବୁ କଠିନ ମନେ ହୋଇପାରେ । କିନ୍ତୁ ମୁଁ ଯେତିକି ପରୀକ୍ଷା କରି ଦେଖିଛି, ଏଇଟା ହିଁ ସବୁଠାରୁ ସହଜ ପ୍ରଣାଳୀ । ଏଥିରେ ଟାଣି ନେବା ଦରକାର ନାହିଁ । ମୁଁ ତ ଜମା ପଢ଼ାଏ ନାହିଁ । କଳାପଟାରେ ଲେଖି ଦେବାପାଇଁ କିଛି ନଥାଏ, ଛବି ଦରକାର ହୁଏ ନାହିଁ, ପିଲାଙ୍କୁ ନାଲି ଆଖି ଦେଖାଇ ଚୁପ୍ କରେଇ ପାଠ୍ୟ ବୋଲି କିଛି ପଢ଼ାଇ ଦେବା କଥା ମୁଁ ଜାଣେ ନାହିଁ । ପାଠ୍ୟ ପଢ଼ିବାଟା ଆପେ ଆପେ ପିଲାଙ୍କ ଭିତରେ ହୋଇଥାଏ । ମଣିଷ ପ୍ରକୃତିର ସବୁ ରୀତି-ନୀତି ମିଶି ନିଜ ନିଜର ଭିତରେ ଭଲ ସମ୍ପର୍କ ବଢ଼େଇ ସେମାନେ ପଢ଼ନ୍ତି । ମୁଁ କେବଳ ତାଙ୍କ ମନର ଭିତରୁ ପଦଗୁଡ଼ିକୁ ଆଣିବାରେ ଲାଗେ, ଆଉ ପାଖରେ ବଡ଼ ବଡ଼ କଳା ଖଡ଼ି ରଖି ଆଗକୁ ଚାହେଁ- ପିଲାଏ ପଢ଼ି ଚାଲିଛନ୍ତି । ପିଲାଙ୍କ ମନର ଯେତେ ଅଧିକ ଗହୀରରୁ ଏଇ ସବୁ ଆସିଥାଏ, ସଫଳତା ସେତେ ଅଧିକ। ମଣିଷ ପଣିଆଟି ବଢ଼ି ପ୍ରକାଶ ପାଇବାର ଯେଉଁ ବାଟ, ସେଥିରେ ଆନନ୍ଦ ଥାଏ । ମନ ମରି ଯାଏନା ।

ସକାଳ ଓଳିର କାମ ଓ ଅବସର ପରେ ମୁଁ ସେ ଦିନର କାମକୁ ଦୋହରାଇ ନିଏ । ପୁଣିର ମଲାଟଗୁଡ଼ିକୁ କାଢ଼ି ପିଲାଏ ପଦଗୁଡ଼ିକୁ କେତେ ଦୂର ମନେ ରଖିଛନ୍ତି, ଯାଂଚ କରେ । ଅଧିକ ପିଲା ବେଶ୍ ସହଜରେ ନିଜ ପଦଗୁଡ଼ିକୁ କହି ଦେଇପାରନ୍ତି । ଯେଉଁ କେତେ ଜଣ ମନେ ପକାଇ ପାରନ୍ତି ନାହିଁ, ମୁଁ ସେମାନଙ୍କୁ ପୁରୁଣା ପଦ ଦିଏ- ମନେ ନ ରହିବା ପଦ ବାଦ୍ ଦିଏ । ଫଳରେ ପିଲା ଯେତେବେଳେ ଲେଖିବାକୁ ଚେଷ୍ଟା କରେ, ସେତେବେଳେ ତା' ମନରେ ସେହି ସେହି 'ପଦ'ର ଛବି ଆଙ୍କି ହୋଇ ପଡୁଥାଏ । ଦେହ ଓ ମନର ନିଜ ପଦ ପଢ଼ିବା-ଲେଖିବା ଦେଇ ସ୍ୱାଭାବିକ (Organic) ଶିକ୍ଷାପ୍ରଣାଳୀର ସଫଳତା ବାରି ହୁଏ ।

ତା' ପରେ ପଦ-ଲେଖା ମଲାଟଗୁଡ଼ିକୁ ପେଢ଼ିରେ ରଖାଯାଏ । ତା' ଆରଦିନ ପୁଣି ଠିକଣା ଆସନରେ ଗୁନ୍ଥି ଦିଆଯାଏ । ପିଲା କମ୍ ଥିଲେ, ଏଇ ଶିଶୁ ଶ୍ରେଣୀର ନୂଆ ପିଲାଙ୍କ ପଦ ଅଧିକ ହୋଇଯାଏ । ଏଗୁଡ଼ିକ ଭିତରେ ପରିଚିତ ପଦ ବେଶି ଥାଏ । ପେଢ଼ି ପୂରି ଉଠେ । ମାତ୍ର ଏ ଅନୁପାତରେ ପିଲାଙ୍କ ସଂଖ୍ୟା ବଢ଼ିଗଲେ ସବୁ ମଲାଟ ରଖିବା ସମ୍ଭବ ହୁଏ ନାହିଁ । ଶ୍ରେଣୀରେ ବାରରୁ କୋଡ଼ିଏ ଜଣ ଯାଏଁ ପିଲା ରହିଲେ, ମଲାଟର ସଂଖ୍ୟା ଗୁଣା କରିବାକୁ ପଡ଼େ । ସବୁ ମଲାଟ (ପଦ ଲେଖାଥିବା) ସାଇତି ନ ରଖି ଶେଷ ଭାଗର ପଦ କାର୍ଡ଼ଗୁଡ଼ିକ କେବଳ ରଖାଯାଏ ।

**ଟିପ୍ପଣୀ :**

ଶିଶୁ ଶ୍ରେଣୀରୁ ଉପର ଶ୍ରେଣୀକୁ ଯିବା ପୂର୍ବରୁ ଜଣେ ପିଲା ଅତି କମ୍‌ରେ ଚାଳିଶିଟି ନିଜର ପଦ ଜାଣିଥିବା ଦରକାର । ତେବେ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହେବାପାଇଁ ପଦ ପରିମାଣ ଅପେକ୍ଷା କେତେ ବେଗରେ ପିଲାଟି ପଦ ଶିଖିପାରିଛି- ମୋ ପାଖରେ ସେଇଟା ଗୁରୁତ୍ୱପୂର୍ଣ୍ଣ ।

ଜଣେ ପିଲା ଯଦି ଅନ୍ୟ ପିଲାଠାରୁ ପଦଟିଏ ନକଲ କରିଥାଏ, ତେବେ ସେ ପରେ ସେଇ ପଦଟିକୁ ମନେ ପକାଇପାରେ ନାହିଁ ।

ନୂଆ ଆସିଥିବା ପିଲାଟିଏ ଯେତେ ଲାଜକୁଳା, ନିର୍ବୁଦ୍ଧିଆ ଓ କହି ନ

ଜାଣିଲେ ସୁଦ୍ଧା ସପ୍ତାହରେ ଗୋଟିଏ ନୂଆ ପଦ ଶିଖି ପାରିବ । ଠିକ୍ ସମୟରେ ସେ ବୁଝି ପାରିବ ଯେ : ସେ ସମୟରେ ଭିନ୍ନ ଭିନ୍ନ ପାଠ ପାଇଁ ସେ ପାଉଥିବା କମ୍ ବେଶି ନମ୍ବର ଭିତରେ ତଫାତ୍ ଅଛି । ଏହାର କାରଣ ବି ଅଛି ।

ପରସ୍ପରକୁ ପଢ଼େଇବା କହିଲେ, ଜଣେ ଯଦି "ମୋଜା" ଲେଖାଥିବା କାର୍ଡ଼ଟିକୁ ଅନ୍ୟ ଜଣକୁ ଦେଖେଇ ପଚା ରେ, "ଏଥିରେ କ'ଣ ଲେଖା ହୋଇଛି ?" ଏବଂ ଆରଜଣକ ଜାଣି ନଥାଏ, ତେବେ ପଚାରିଥିବା ପିଲା ତାହା କହିଦିଏ ।

## *ସୃଜନାତ୍ମକ ଲିଖନ (ସହଜ ଲିଖନ)*

*"ପିଲାଙ୍କୁ ଶିକ୍ଷା ଦେବା ସମୟରେ, ଜୀବନ କିପରି ଜଟିଳ, ତାହା ବୁଝିହୁଏ । ଯେଉଁ ମୁହୂର୍ତ୍ତରେ ତାହାର କିଛି ଅଂଶକୁ ବାଦ୍ ଦିଆଯାଏ, ପିଲାଟି ତାହା ବୁଝିପାରେ । କିନ୍ତୁ ଏହା ବାଦ୍ ଦେଇଥିବା ଲୋକ ହତ୍ୟାକାରୀ ହିଁ ହୋଇଥାଏ ।"*

-ସି.ଇ.ବୀବି (C.E. Beeby)

ସକାଳଓଳି ଅସଲି ପଦ ତାଲିକାରୁ ଶିଖିବା ପରେ, ପିଲାଏ, ଅନ୍ୟଶ୍ରେଣୀକୁ ଯାଆନ୍ତି- ଅନ୍ୟାନ୍ୟ ମାଧ୍ୟମରେ ନିଜ ନିଜକୁ ପ୍ରକାଶ କରିବାପାଇଁ ।

ଅସଲି ପଦ ତାଲିକାରୁ ପିଲାମାନେ ସୃଜନାତ୍ମକ ଲେଖା ଅଭ୍ୟାସ କରନ୍ତି । ଏଇ ପଦ ପିଲାର ମନ ଭିତର କଥା । ତେଣୁ ପଦିକିଆ ହେଲେ ମଧ୍ୟ ଏହା ପ୍ରକୃତରେ ବାକ୍ୟଟିଏ ଏବଂ ବେଳେ ବେଳେ କାହାଣୀଟିଏ ପରି ବେଶ୍ ଲମ୍ବା ହୋଇପାରେ ।ଏଇ ପଦ ପିଲା ପାଇଁ ତା' ମନର ଭାବନା ଏବଂ ଯୋଜନାବଦ୍ଧ ଭିତରେ ଆଗେଇ ଯିବାରେ ବେଶ୍ ସାହାଯ୍ୟ କରେ ।

ପାଞ୍ଚ ବର୍ଷିଆ ପିଲାଙ୍କର ମନ ଭିତରେ ଗୋଟିଏ ପଦ ପଛରେ ବହୁତ କିଛିଥାଏ । ତାହା ମୋ ଅପେକ୍ଷା ପିଲା ନିଜେ ବେଶି ଜାଣେ । ତେଣୁ ସେଇ ପଦ ଲେଖିଲାବେଳେ ପିଲା ମନର ଭାବନା ତା' ସହିତ ବଢ଼ିଚାଲେ । ଏଣୁ ମନରେ ନୂଆ ନୂଆ ଭାବନା ଯୋଡ଼ି ହୋଇଯାଇ ପିଲାକୁ ଲେଖା ଶିଖିବା ଭିତରେ ଗଢ଼ି ବି ପାରେ ।

ଏଇ ଶ୍ରେଣୀରେ ନିଜ ପଦ ଲେଖି ଶିଖିଲାବେଳେ ପିଲା ପ୍ରକୃତରେ ଆତ୍ମ-ଜୀବନୀ ଲେଖିଲା ପରି ନିଜ ମନର ଭାବ ପ୍ରକାଶ କରି ଚାଲେ । ଫଳରେ ତା'ର ନିଜର ଶୈଳୀ ବା ମନର ଭାବ ପ୍ରକାଶ କରିବା ଢାଞ୍ଚା ଗଢ଼ିହୁଏ । ଯେ କୌଣସି ଲେଖକ କିମ୍ବା ଶିକ୍ଷକ ପିଲାର ଅଳ୍ପ କିଛି ଦିନର ଏଇ ଲିଖନ ଅଭ୍ୟାସ ଦେଖିଲେ ଏହା ବୁଝିପାରିବେ, ଶୈଳୀ କିପରି ଆପେ ଆପେ ରୂପ ନେଇଥାଏ । ପାଞ୍ଚ ବର୍ଷିଆ ପିଲାଙ୍କର ଶୈଳୀ ବେଶ୍ ସ୍ପଷ୍ଟ । ପିଲାଏ ନିଜ ଶୈଳୀରେ ଅନେକ ବିଷୟରେ ଲେଖନ୍ତି । ସବୁ ବିଷୟ ସେଇ ନିଜ ଢାଞ୍ଚାରେ ଲେଖି ପିଲା ତା' ଅଜାଣତରେ ଅଭ୍ୟାସ ଗଢ଼ି ନିଏ । ପଦକୁ ଥରକୁ ଥର ବ୍ୟବହାର କରି ନିଜର ଶୈଳୀରେ ନିଜର ନାନା ଭାବନାକୁ ପ୍ରକାଶ କରିବା ଫଳରେ ତା'ର ନିଜର ଶୈଳୀ ଦୃଢ଼ ହୋଇଯାଏ । ମୋଠାରୁ ପ୍ରାୟ କିଛି ଶିକ୍ଷା ନପାଇ, ପିଲେ ନିଜ ପଦ ଜରିଆରେ ବନାନ, ଶବ୍ଦରୂପ ଏବଂ ରଚନା ଲିଖନ ଶିଖନ୍ତି । ଏହା ହିଁ ପିଲାର ନିଜ ମନର ନୂଆ ନୂଆ ଭାବନାର ପ୍ରକାଶ ।

ପିଲା ନିଜ ପଦ-ତାଲିକା ଶିଶୁ ଶ୍ରେଣୀରେ ପଢ଼ି ଲେଖି ନିଜକୁ ଆଗେଇ ନିଏ । ପ୍ରଥମେ ଏଇ ପଦ ତା' ମନର ଅଂଶ ଥାଏ । ଲେଖିଲା ବେଳକୁ ତାହା କେବଳ ଦୋହରେଇଲା ପରି ସେ ଅନୁଭବ୍ କରେ । କିନ୍ତୁ ଏଇ ଲିଖନ ଆବୃତ୍ତି ହେଲେ ହିଁ ତା' ନିଜକୁ ବାହାରେ ପ୍ରକାଶ କରେ । ଏଇ ସବୁ ପଦ ଭିତରୁ ବଛା ବଛା ପଦ ସେ ତା' ନିଜ ଖାତା ପଛପଟରେ ଲେଖିଯାଏ । ଏଗୁଡ଼ିକୁ ପିଲା ତା' ଦରକାର ଅନୁସାରେ ଓ ଆଲୋଚନାବେଳେ ଦେଖି ନେଉଥାଏ । ଏଥିରୁ ତା'ର ବନାନ ଶିଖିବା ସହଜ ହୁଏ ।

ଜଣ ଜଣଙ୍କର ପଦ ତାଲିକାରୁ ଏକ ସାଧାରଣ ପଦ ତାଲିକା ଗଢ଼ି ହୁଏ । ନିଜ ନିଜର ଭିତରେ ଆଲୋଚନା ଓ ପରସ୍ପରକୁ ପଢ଼େଇବା ଭିତରେ ଏଇ ସାଧାରଣ ପଦ ତାଲିକା ପଢ଼ି ପିଲାଏ ସଚେତନ ଥାଆନ୍ତି । ଆଗ ପଛ ହେଲେ ହେଁ ସମସ୍ତେ ଏଇ ସାଧାରଣ ପଦ ତାଲିକା ଜାଣି ଯାଆନ୍ତି : ପରେ, ଓ, ରଖ, ଗଲେ, ଗଉଡ଼, ଟ୍ରକ୍, ମୁଁ, ମୋତେ , ଭିତର, ବାହାର, ଛବି, ଜାଗା, କହିଲେ, ମାଆ, ବାପା, କାରଣ,....

କିଛି ଦିନରେ ନିଜ ପଦରୁ କିଛି କିଛି ଲେଖି ଜାଣିଲା ପରେ ସେମାନେ ପହିଲେ ବାକ୍ୟ ଲେଖନ୍ତି । ପହିଲେ ନିଜ ବିଷୟ ଦୁଇଟି ବାକ୍ୟରେ ଓ ପରେ



ପରେ ତିନୋଟି ବାକ୍ୟରେ ଲେଖିବା ଶିଖନ୍ତି । ଛଅ ବର୍ଷ ବେଳକୁ ଦିନକୁ ଅଧା ପୃଷ୍ଠା ଓ ସାତ ବର୍ଷ ହେଲା ବେଳକୁ ଗୋଟିଏ ପୃଷ୍ଠା ଏବଂ ତା'ଠାରୁ ଅଧିକ ଲେଖି ପାରନ୍ତି । ମୁଁ ଏହାକୁ ଶିକ୍ଷା ବୋଲି କହେ ନାହିଁ । ମୋ ମତରେ ଏହା ତାଙ୍କର ନିଜର ସୃଜନାତ୍ମକ ବିକାଶ । କାରଣ ଏହା ତାଙ୍କ ନିଜ ଭିତରୁ ଆସେ, ମୁଁ କହି ନଥାଏ । କ୍ରମେ ବନାନ, ରଚନା ଲେଖା ଆଦି ବିଭିନ୍ନ ବିଷୟ, ବିଭିନ୍ନ ମାଧ୍ୟମରେ ଆପେ ଆପେ ପିଲାଏ ଶିଖନ୍ତି । ଅଲଗା ଶିଖିବା ଦରକାର ହୁଏ ନାହିଁ ।

ଏଇ ଖେଳ (ନାଟକ, ଅଭିନୟ) କୌଣସି କିଣା ପୁସ୍ତକରୁ ମିଳି ପାରିବ ନାହିଁ । ଯେତେ ଭାବି ଚିନ୍ତି ଲେଖାଯାଇପାରିଥିବା ବହିରୁ ବି ଏଇ ମଜା ମିଳିବ

ନାହିଁ । ଶିଶୁ ଶ୍ରେଣୀରେ ପ୍ରତିଦିନ ସକାଳେ ପିଲାମାନେ ଏତେ ବିଷୟ ଏବଂ କେତେ ଭିନ୍ନ ଭିନ୍ନ ଢାଞ୍ଚା ଜଣେଇ ଥାଆନ୍ତି ଯେ ତାହା ଗୋଟିଏ ପାଠ୍ୟ ପୁସ୍ତକରୁ ମିଳିବା କେବେ ସମ୍ଭବ ନୁହେଁ । ତା'ପରେ ଏଠାରେ ପିଲାଙ୍କ ନିଜ ଭାଷାରେ, ତାଙ୍କ ଢାଞ୍ଚାରେ ହିଁ ଲେଖାଯାଏ । ସେମାନେ ଯାହା ଲେଖନ୍ତି, ତାହା ଏକାବେଳକେ ନାଟକୀୟ, କରୁଣ ଓ ବର୍ଣ୍ଣାଢ୍ୟ । ମୁଁ ସବୁବେଳେ ତାହା ହିଁ ଦେଖି ଆସୁଛି ।

କିନ୍ତୁ ସେଗୁଡ଼ିକ ସେମାନଙ୍କର ବ୍ୟକ୍ତିଗତ, ନିଜସ୍ୱ । ସେଥିରେ ଭରି ରହିଛି ସେମାନଙ୍କ ବିଶ୍ୱାସ । ଆମେ ତା'ର ସମାଲୋଚନା କରିବା ନାହିଁ । ଆମେ ହୁଏ ତ ଦେଖିବା, ଜଣେ ସ୍କୁଲକୁ ନାକ ଟେକେ, ଜଣେ ମୋ ଘରଟିକୁ ପୋଡ଼ି ଦେବାକୁ ଚାହେଁ । ଗତ ରାତିରେ ତାଙ୍କ ଗାଆଁରେ ଘଟିଥିବା ଘଟଣା..... ଇତ୍ୟାଦି । କିନ୍ତୁ ଆମ ପାଇଁ କିଏ କ'ଣ ଓ କ'ଣ କହିଛନ୍ତି, ତାହା ଦରକାର ନାହିଁ । ଆମେ ଆଶା କରିବା କେବଳ କହିବାର ସ୍ୱାଧୀନତା ।

ମୁଁ କେବେ କୌଣସି ବିଷୟରେ କିଛି କହିଲା ପରେ ତାହା ଲେଖିବାକୁ କହି ନାହିଁ । କାରଣ ଏପରି କଲେ ପିଲା ଉପରେ କିଛି ଲଦି ଦେଲା ପରି ହେବ । ଏହାକୁ କଳା କିମ୍ବା ଶିକ୍ଷାଦାନ କୁହାଯାଇ ପାରିବ ନାହିଁ । ପିଲା ତା' ନିଜ ବିଷୟରେ ଯାହା କିଛି ଲେଖିଲେ, ତାହା ତା' ନିଜ ଭିତର ସବୁ ଭାବନା ଓ ଦେହର ଅନୁଭୂତି ନେଇ କସରତ କରିବ, ନିଜକୁ ଗଢ଼ିବ, ଆଗେଇ ନେବ; ସେ ନିଜେ ଯେତିକି ଅଧିକ ନିଜକୁ ଜାଣିବ, ପ୍ରକାଶ କରିବ, ସେତିକି ଅଧିକ ନିଜକୁ ଗଢ଼ିବ, ବୁଝି ପାରିବ । ତାହା ତା'ର ନିଜର ଦେହ ମନର ଅଂଶ । ଏହା ନିଜ ଶୈଳୀରେ ପ୍ରକାଶ ପାଇ ତା'କୁ ଗଢ଼ିବ । କିନ୍ତୁ କିଛି ଭାବ, କିଛି ପଦ ଓ ସଂକେତ ଦେଇ ତା' ଦ୍ୱାରା ପୃଷ୍ଠାଟିଏ ଲେଖାଇଲେ, ତା' ଏଣୁତେଣୁ ଗୋଟେଇ ଆଣି ମିଶେଇଲା ପରି କେବଳ ହେବ । ସାଧାରଣ ଭାବେ ଆମେ ଏହା ଦେଖିଥାଉଁ । ଆମ ନିଜର ଲେଖା ଓ କଥାଭାଷାରେ ଆମେ ଏଇ ଏଣୁତେଣୁ ଭାବନା ଯନ୍ ସହକାରେ ଯୋଡ଼ିବାରେ ଏକ ପ୍ରକାର ଅଭ୍ୟସ୍ତ ହୋଇ ପଡ଼ିଛୁ ।

ଏଇ ଢାଞ୍ଚାରେ ନିଜକୁ ପ୍ରକାଶ କରି ଲେଖିବା ପାଇଁ ବେଶ୍ ସମୟ ଲାଗେ । ତେଣୁ ସକାଳ ଓଳିର ପ୍ରଥମ ଭାଗରେ ମୁଁ ଏହାକୁ ରଖିଛି । ଅନେକ ସମୟରେ ଯା' ଭିତରେ ନାଚ ଆରମ୍ଭ ହୋଇଯାଏ । ସେତେବେଳେ ମୁଁ ଲେଖିବା

କାମ ବନ୍ଦ କରିଦିଏ । କାରଣ ନାଚରେ ଦେହ କଥା କହେ । ମୁଁ ଜାଣେ, ଅନେକେ ଏହାକୁ ଭଲ ପାଆନ୍ତି । ରଚନା ଲେଖିବାରେ ଏହା ସାହାଯ୍ୟ କରେ ବୋଲି କହନ୍ତି । ମୁଁ ଜାଣେ ନାହିଁ । ଏଇ ସବୁ କାମ ଦ୍ୱାରା ପିଲାର ଲେଖା ଦେଇ ତା'ର ଭାବନା ରୂପ ନିଏ- ସୃଜନାତ୍ମକ ଶକ୍ତି ଚେଇଁ ଉଠିଲେ ନୂଆ ନୂଆ ଭାବ ପ୍ରକାଶ ପାଏ । ମନର ଗହୀରରେ ଥିବା ଚେତନା ଚେଇଁ ଉଠେ । ଫଳରେ ପିଲା ସେସବୁ ଝିଲା ନିଜ ଶୈଳୀରେ ପ୍ରକାଶ କରେ । ଏଇ କସରତ ଯୋଗୁଁ ତା'ର ଭିତର ଆଖି, ମନର ଆଖି ଫିଟେ । ଆଉ ଶିଶୁର ଅସଲି ମଣିଷ-ପଣିଆ (ବ୍ୟକ୍ତିତ୍ୱ) ତା'ର ନିଜ ଢାଞ୍ଚାରେ ବଢି ଚାଲେ । ନିଜର ଦେହ ଓ ମନରୁ ଜାତ ହୋଇ ଏହା ତାର ଦେହ ଓ ମନ ସହିତ ଚେତନାକୁ ଗଢ଼େ, ବଳୁଆ କରେ ଓ ବଢ଼ାଏ । ନିଜସ୍ୱ ଶକ୍ତିର ପ୍ରାକୃତିକ ବିକାଶରେ ଶିଶୁ ବିଚାରବନ୍ତ ମଣିଷଟିଏ ହେବାକୁ ଆଗକୁ ମାଡ଼ି ଚାଲେ ।

## ସହଜ ଲିଖନ

ସକାଳ ଦଶ ଘଣ୍ଟା ବେଳ ହେଉଛି ଅଣ୍ଟା-ପିଠି ବଥେଇବା ସମୟ । ସେତିକିବେଳକୁ ଆପଣ ଅଧ ଘଣ୍ଟା ସମୟ ପିଲାଙ୍କ ଟେବୁଲ ଉପରକୁ ନଇଁ ପଡ଼ି ତାଙ୍କ ଲେଖା ଯାଞ୍ଚ କରିଥିବେ । ଆପଣ ସେମାନଙ୍କ ପଦଗୁଡ଼ିକ ଖାତା



ପଛ ପଟରେ ଲେଖି ଦେବେ। ଆଉ ତା ସାଥିରେ ସୁନ୍ଦର ଭାବେ ଲେଖିବା, ଛାଡ଼ି ଛାଡ଼ି ଲେଖିବା, ବ୍ୟାକରଣ ନିୟମ ମାନି ଲେଖିବା ଆଦି ଦେଖିବା ସହ ପିଲାଙ୍କୁ ଉତ୍ସାହିତ କରିଥିବେ,- ତାଙ୍କର ଭାବନାକୁ ପ୍ରକାଶ କରିବା ପାଇଁ, ସତର୍କତା ସହିତ ତାଙ୍କର ମନର ପଦ ତଳୁ ମନର ଭାବନା ଆପେ ଆପେ ପ୍ରକାଶ ପାଇବା ପାଇଁ ଆପଣଙ୍କୁ ଭାବି ଚିନ୍ତି ଉସୁକେଇବାକୁ ପଡ଼ିଥିବ। ସମୟର କାମ ସହ ସବୁରକମର ଭୁଲ ସୁଧାରିବାକୁ ଆଖି ରଖିବାକୁ ପଡ଼ିଥାଏ।

ଏହି ସମୟରେ ଟେବୁଲ ପାଖରେ ବସି ପିଲାଙ୍କୁ ଧାଡ଼ିରେ ଆସିବାକୁ କହିବାରେ କେବେ ଭଲ ଫଳ ମିଳେ ନାହିଁ। ଆପଣଙ୍କୁ ହିଁ ଘୁରିବାକୁ ପଡ଼ିବ ଏବଂ ପ୍ରତି ପିଲା ପାଖରେ ପଂହଚିବାକୁ ହେବ। ଆପଣଙ୍କ ଚାଲିଚଳଣି ଓ ସଚେତନତାରୁ ସବୁ ପିଲା ସବୁଠାରେ ସବୁବେଳେ ଆପଣଙ୍କ ସାହାଯ୍ୟ ପାଉଛନ୍ତି ବୋଲି ଅନୁଭବ ଓ ବିଶ୍ୱାସ କରିବେ। ମୋ ମତରେ, ଏଇ ଦେହ ମନ ଲଗାଇ ଲେଖା କାମଟିରେ ଶିକ୍ଷକ ଝାଳ ଲାଳ ହୋଇ ଯାଇ ପାରନ୍ତି; ହେଲେ ଅନ୍ୟାନ୍ୟ କଳା କୌଶଳ ଅପେକ୍ଷା ଏଥିରେ ସଫଳତା ଅଧିକ ମିଳେ। ତେଣୁ ଅଣ୍ଟା ବଥା ହେଲେ ବି ସାଧାରଣ ଭାବରେ ସବୁ ପିଲାଙ୍କୁ ସମାନ ଉପକାର ମିଳେ।

ଜଣେ ଶିକ୍ଷକଙ୍କ ପାଇଁ ବାର ଜଣ ଶିଶୁ ବେଶ ଅଧିକ। ଆଠ ଜଣ ହେଉଛି ଠିକ୍ ସଂଖ୍ୟା। ଉନ୍ନତି ପାଇଁ କେତେକ ଶ୍ରେଣୀରେ କାମ ଚାଲୁଥିଲା ବେଳେ ପିଲେ ନିଜ ଉପରେ ପ୍ରାୟ ନିର୍ଭର କରିଥାନ୍ତି। ମୁଁ ସେ ସମୟରେ କିଛି ପିଲାଙ୍କୁ ନେଇ ଲେଖାଲେଖି କରେଇ ନିଏ। ଅନ୍ୟପିଲାଙ୍କ ପାଟିତୁଣ୍ଡରେ କିଛି ଯାଏଆସେନା। ଅନ୍ୟମାନଙ୍କ ପରି ପିଲାଙ୍କ ଲେଖା ମଧ୍ୟ କଥାଭାଷା ପରି। ମୁଁ ସେମାନଙ୍କୁ ସେପରି ଲେଖିବାକୁ ଛାଡ଼ି ଦିଏ। ଦେହ ମନକୁ ନେଇ ଦିଆ ଯାଉଥିବା ଶିକ୍ଷାରେ ପିଲାଙ୍କୁ ଆଦୌ ଚାପ ଦେବା ଠିକ୍ ନୁହେଁ।

ମୋ ସାଥିରେ ଜଣେ କନିଷ୍ଠ ଶିକ୍ଷୟିତ୍ରୀ ଥିଲେ, ଆମେ ଦୁହେଁ ମିଶି କାମରେ ଲାଗୁ। କିନ୍ତୁ ଏକା ଥିଲେ ମୁଁ ଦୁଇ ଜଣ ବଡ଼ ପିଲାଙ୍କ ସାହାଯ୍ୟ ନିଏ। ଏଇଟା ସପ୍ତାହରେ ଥରେ। ବଡ଼ ପିଲା ଦୁଇ ଜଣ ପଦଗୁଡ଼ିକୁ ଲେଖି ଦିଅନ୍ତି। ମୁଁ ଛାଡ଼ି ଛାଡ଼ି ଲେଖିବା, ବ୍ୟାକରଣ ଓ ବିଚାରଧାରା ପ୍ରତି ଦୃଷ୍ଟି ଦିଏ। ଅନେକ ଲୋକ ଜାଣି ପାରି ନଥାନ୍ତି ଯେ, ଛୋଟ ପିଲାଙ୍କର ମଧ୍ୟ ବିଚାର-ଧାରା ରହିଛି।

କିନ୍ତୁ ଉପରେ ଲେଖା ଯାଇଥିବା କାମରୁ ଭଲ ଭାବେ ଜାଣି ହୁଏ ଯେ, ଶିଶୁର ବିଚାର-ବୋଧ ଥାଏ ।

ଏଇ ଅର୍ଗାନିକ୍ (Organic) ବା ଜଣକିଆ ପିଲାର ମନକୁ କେନ୍ଦ୍ର କରି ଶିକ୍ଷା ଦେବା ପ୍ରଣାଳୀରେ, କଥୋପକଥନ ସମୟରେ ବେଶ୍ କିଛି ଅସୁବିଧା ଦେଖାଦିଏ । କାରଣ ଏହି ସମୟରେ ଶିଶୁ ତା'ର ସାଥି ବା ପଡ଼ୋଶୀକୁ ବହୁତ କିଛି କହି ପକାଏ- ଯାହା ସବୁ ସେ କହିବାକୁ ଚାହେଁ । କିନ୍ତୁ ଏହା ଫଳରେ କହି ସାରିଥିବା ବିଷୟରୁ ଅନେକ କିଛି ଛାଡ଼ି ଦେଇ ସେ ଲେଖେ; ବେଳେବେଳେ ସେ ବିଷୟ ପୂରା ଛାଡ଼ି ଅନ୍ୟ ବିଷୟ ଲେଖି ଚାଲେ । '' ତା'ପରେ ମୁଁ ଘରକୁ ଗଲି''- ଏପରି ହଠାତ୍ ବିଷୟଟିରେ ଲିଖନକୁ ଶେଷ (ସମାପ୍ତ) କରି ଦିଆଯାଏ । ଅବଶ୍ୟ ଏପରି ସ୍ଥଳରେ ମୁଁ ବିରୋଧ କରେ ନାହିଁ କିମ୍ବା ଲେଖିବାକୁ ଅନୁମତି ଦିଏ ନାହିଁ । ''ତା'ପରେ ମୁଁ ଘରକୁ ଗଲି'' ବାକ୍ୟରେ ବିଷୟଟିକୁ ବାଦ୍ ଦିଆଯାଇଛି ଏବଂ କୌଣସି କାରଣ ମଧ୍ୟ ଦିଆଯାଇ ନାହିଁ । ତେଣୁ ସେମାନେ ଲେଖା ଆରମ୍ଭ କରିବେ, ''ମୁଁ ଗାଆଁକୁ ଗଲି ।'' ଏହାପରେ ଲେଖାଯିବ, ସେଠାରେ କ'ଣ ହେଲା । ଏପରି ଭାବରେ ଥରେ ଏ ଅଡୁଆ ତୁଟେଇ ଦେଲେ, ପିଲାର ବିଚାର-ବୋଧ ବେଶ୍ ସରଳ ଭାବରେ ମନର ଭାବ ଲେଖିଚାଲେ । କିନ୍ତୁ ଏହା ସବୁବେଳେ ଘଟୁଥିବା ବିପଦ ନୁହେଁ ।

ମୁଁ ଆଗରୁ ଭାବୁଥିଲି ଯେ ପିଲା ତା'ର ଲେଖାଟିଏ ଗୋଟିଏ ବୈଠକ (ପିରିଅଡ୍)ରେ ହିଁ ପୂରା ଲେଖିବା ଭଲ; କୌଣସି କାରଣରୁ ମଧ୍ୟ ମଝିରେ ଲେଖାକୁ ବନ୍ଦ କରି ଦିଆଯିବ ନାହିଁ । କିନ୍ତୁ ଏକ ନିର୍ଦ୍ଦିଷ୍ଟ ସମୟ ଭିତରେ ଯେତିକି ଲେଖା ଯାଇପାରିଲା, ସେତିକିରେ ସ୍ଥଗିତ ରଖିଲେ, ତା'ପର ପିରିଅଡ୍‌ରେ ପିଲା ବେଶ୍ ଠଉରେଇ ନେଇ ପୂର୍ବ ଦିନର ଲେଖାକୁ ମନେ ପକାଇପାରେ । ଏଥିରେ ସେ କୌଣସି ଅସୁବିଧା ଭୋଗି ନଥାଏ । ଏତିକି କେବଳ ହୁଏ ଯେ, ପିଲା ଅଧାଲେଖା ବିଷୟଟିକୁ ପୁଣି ଥରେ ପଢ଼ି ନିଏ ଏବଂ ଲେଖା ପୂରା କରିଦିଏ । କିନ୍ତୁ ଏପରି ଅବସ୍ଥାରେ ପ୍ରାୟ ଅଧିକ ସମୟ ଦିଆଯାଇଥାଏ । ତେବେ, ଶିକ୍ଷାଦାନର ସଫଳତା ଆପଣଙ୍କ କାମ କରିବା ଢାଞ୍ଚା ଉପରେ ନିର୍ଭର କରେ- ଅର୍ଥାତ୍ ଆପଣ କେତେ ଭଲ ଭାବରେ କାମଟି ପୂରା କରେଇଲେ ଏବଂ ସେ ଅନୁସାରେ ଆପଣ କେତେ ସେପରି ଲେଖାଇ ପାରିଛନ୍ତି ।

ମୋର ପିଲାମାନଙ୍କର ପାଇଁ ମୁଁ କିନ୍ତୁ କେବେହେଲେ ଏପରି ନିଜେ କହି ଆରମ୍ଭ କରିନାହିଁ। ମୋର ଅସଲି ପଦ-ତାଲିକା ଏବଂ ଦୁଇପଦିଆ ଓ ତିନିପଦିଆ ବାକ୍ୟରେ ପିଲେ ଏତେ ଅଭ୍ୟସ୍ତ ହୋଇ ପଡ଼ିଥାନ୍ତି ଯେ, ସେମାନେ ଆପେ ନିଜେ ଆରମ୍ଭ କରି ଦିଅନ୍ତି। ବେଳେ ବେଳେ, ଏବେ ମଧ୍ୟ ମୁଁ କହିଥାଏ, ''ତୁମେ କ'ଣ କହିବାକୁ ଚାହୁଁଛ ?'' ମାତ୍ର ଏପରି ପଚାରିବାକୁ ପ୍ରାୟ

ଦରକାର ପଡ଼େ ନାହିଁ । କିନ୍ତୁ ଜଣେ ଯଦି ପ୍ରକୃତରେ ସେପରି ଏକ ଅବସ୍ଥାରେ ରହିଛନ୍ତି, ତେବେ ସେ ଯେଉଁ ଢାଞ୍ଚାରେ ସେ ଯାଏଁ ସବୁ କାମ କରି ଆସିଛନ୍ତି, ସେ ଢାଞ୍ଚାରେ ହିଁ ଆଗେଇ ଚାଲନ୍ତୁ । କଥୋପକଥନରେ ପିଲା ସହ ଲାଗି ଯାଆନ୍ତୁ ଦେଖିବେ ଖୁବ୍ କମ ସମୟ ଭିତରେ ପିଲାର ମନରୁ ତା'ର ବିଚାରଧାରାଟି ଦୂରେଇ ଯାଇଛି ।

ତଥାପି କେତେକ ସମୟରେ ବିଷୟଟିଏକୁ ଆରମ୍ଭ କରି ହୁଏନାହିଁ । ଏଥିରେ ପିଲାଟିର ଜମା ମନ ରହେନାହିଁ । ବିଷୟଟି ଅତି ଭଲ ବୋଲି ଆପଣ ତ ଯେ କୌଣସି ସମୟରେ ତାହା କହି ଦେଇପାରିବେ ନାହିଁ- କହିବା ପାଇଁ ବି ଉଚିତ୍ ସମୟ ମିଳିବା ଦରକାର । କେତେକ ଅବସ୍ଥାରେ ପିଲାଟି ବିମୁଖ ହୋଇ କହି ପକାଏ, ''ମୁଁ ଲେଖିବାକୁ ଚାହେଁ ନାହିଁ ।'' ଏହାର କାରଣଟି ହେଲା : ଆପଣ ନିଜେ ତାହାକୁ ଲେଖେଇବାକୁ ଚାହାଁନ୍ତି ।'' ମୁଁ ଲେଖିବାକୁ ଚାହେଁ ନାହିଁ ।'', ଶୁଣି ଆପଣ ଯଦି ପଚାରନ୍ତି, ''କାହିଁକି ?'' ତେବେ ଦେଖିବେ ପିଲା ତା'ର ଅସୁବିଧା, ଆପତ୍ତି ଇତ୍ୟାଦି ବଖାଣି ବସିବ । ପ୍ରକୃତରେ ଅସଲି ଭାବନାକୁ ନାନା ପେଖନାରେ ଘୋଡ଼େଇ ସେ ନିଜ ମନ ଭିତରେ ଅନିଚ୍ଛା ଓ ଅନାଗ୍ରହକୁ ହିଁ ପ୍ରକାଶ କରିବ ।

ଏହା ଭଲ କିମ୍ବା ମନ୍ଦ ବୋଲି କହିବା ଆପଣଙ୍କ ପକ୍ଷେ ଦରକାରୀ ନୁହେଁ । ଏହାର କିଛି ଭଲ ପ୍ରଭାବ ନାହିଁ । ଅସଲ କଥା ହେଉଛି, ଆଉ ଜଣଙ୍କର ମନର ବିଚାରକୁ ସମୀକ୍ଷା କରିବାକୁ, ଆପଣଙ୍କର ଅଧିକାର ନାହିଁ । ପିଲା ତ ତା' ମନଟାକୁ ନିଜେ ଗଢ଼ି ନାହିଁ । ସେ ସେପରି ରହିଛି / ପାଇଛି । ଆପଣଙ୍କର କାମ ହେଲା, ତା' ଭିତରେ କ'ଣ ଅଛିଜାଣିବା । ନିଜ ମନ ମୁତାବକ ଆଗ୍ରହ ନେଇ ସେ ଯାହା ଲେଖି ଚାଲିଛି, ତାହାକୁ ଠିକ୍ ବୋଲି ପିଲାକୁ ଆଗେଇ ଯିବାକୁ ଦେବା ହିଁ ଆପଣଙ୍କର ପକ୍ଷରେ ଉଚିତ୍ କାମ । କଥୋପକଥନ ବିଷୟ ନିଆଯାଉ ।-ମୁଁ ତାଙ୍କ ଖାତାରେ କୌଣସି ଦାଗ ଦିଏ ନାହିଁ, ତାଙ୍କର କୌଣସି ଲେଖାକୁ କାଟି ଦିଏ ନାହିଁ କିମ୍ବା ଠିକ୍ ଭୁଲ ଚିହ୍ନ ଦିଏ ନାହିଁ । ବରଂ ଭୁଲଟିକୁ ରବରରେ ଲିଭେଇ ଠିକ୍ ଭାବରେ ଲେଖି ଦେବାରେ ସାହାଯ୍ୟ କରେ । ହସ୍ତାକ୍ଷର ଆଉ ଲିକ୍ଷନ ଢାଞ୍ଚାକୁ ଖରାପ ହୋଇଥିଲେ ବି ସେପରି କହେ ନାହିଁ । ଜଣେ ବନ୍ଧୁଙ୍କର ସେପରି ଏକ ଚିଠିକୁ ଆମେ କ'ଣ ବିରୋଧ କରୁଁ ? ବରଂ ବନ୍ଧୁତାର

ମଧୁରତା ଅନୁଭବ କରୁଁ । ସେପରି ପିଲାର ଲେଖାରେ ମଧ୍ୟ ବିଷୟବସ୍ତୁ ବିଚାର କରିବା ଉଚିତ୍ ।

ପିଲାଙ୍କର କାମରେ ମୋର ମନୋଭାବ ଗୁରୁତ୍ୱପୂର୍ଣ ନୁହେଁ । କାରଣ ତାଙ୍କ ମନରେ ଯାହା ଅଛି, ସେମାନେ ତାହା ଲେଖିବେ । ସେମାନେ ଯଦି ଲେଖନ୍ତି କିମ୍ବା ଯଦି ନ ଲେଖନ୍ତି- ସେଥିପାଇଁ ଭଲ ବା ମନ୍ଦ : ଆପଣ ଶିକ୍ଷା ଦେବା ବ୍ୟକ୍ତି କଥା ଭାଷାରେ ଭଲ ହୁଅନ୍ତୁ ବା ନ ହୁଅନ୍ତୁ, ପ୍ରତିଭାବାନ ହୁଅନ୍ତୁ ବା ନ ହୁଅନ୍ତୁ ଏବଂ ଜ୍ଞାନୀ ହୁଅନ୍ତୁ ନା ନ ହୁଅନ୍ତୁ ସେ ଅନ୍ୟର କଥା ଶୁଣିବାରେ, ଅନ୍ୟର ବିଚାରଧାରାକୁ ସଜାଡ଼ିବାରେ ତଥା ସାଇତିବାରେ- ତାଙ୍କରି କ୍ରିୟାର ପ୍ରତିକ୍ରିୟା ପ୍ରତିଫଳିତ ହୁଏ । ଆଉ ତାହା ହିଁ ଶିକ୍ଷାଦାତାଙ୍କ ସ୍ୱଭାବ ଚିହ୍ନାଇ ଦିଏ । ମୋର କନିଷ୍ଠ ସହକର୍ମୀମାନଙ୍କ ମଧ୍ୟରୁ ଯେଉଁମାନେ ବେଶ୍ ଭଲ,ସେମାନେ ସରଳ, ଭଦ୍ର,ସଂଯତ ଓ ନିଜକୁ ସୁଧାରିବାପାଇଁ ସଚେତନ, କିନ୍ତୁ ଆଉ ଜଣେ ବୁଦ୍ଧିମତୀ ହେଲେ ହେଁ କୁହାଳିଆ ଏବଂ ନିଜର ପାରିବାରପଣିଆଁ ଦେଖେଇ ହେଉଥିବାରୁ ପିଲାଙ୍କ ପାଖରେ ବିଫଳ । ଆଉ ସେଇ ବର୍ଷ ମୋର ଏଇ ଜଣ ଜଣକର ମନକୁ ନେଇ ଶିକ୍ଷା ଦେଉଥିବା ଶିଶୁ ଶ୍ରେଣୀରେ ସବୁଠାରୁ କମ୍ ମାନର ଉନ୍ନତି ହୋଇଥିଲା ।

ଦଶଟାବେଳ ତ ଅଣ୍ଡା ବଥା ସମୟ । କିନ୍ତୁ ଯେ କୌଣସି ସଫଳ ଅଭିଯାନ କ'ଣ ଆମକୁ ନୁଆଁଇ ଦେଇ ନଥାଏ ? ''ଦେହର ଏଇ ପୀଡ଼ା ଆମ ଆକାଂକ୍ଷିତ ଲକ୍ଷ୍ୟ ପାଇଁ ପରିଶ୍ରମ ।''

## ସହଜ ପଠନ (ରଚନାତ୍ମକ ପଠନ)

*''ଜଣେ ଶିଶୁର ପ୍ରକୃତ ବିକାଶ ହୁଏ, ଯେତେବେଳେ ସେ ଧୀରେ ବଢ଼ି ଚାଲିବା ସହିତ ଧୀରେ ଧୀରେ ଉନ୍ନତି କରିଥାଏ ।''*

-ଡ. ବରୋ (Dr. Burrow)

ଦୁଃଖର ସହିତ କହିବାକୁ ପଡୁଛି ଯେ : ଶିଶୁମାନଙ୍କ ଅକ୍ଷର/ପଦ ଶିକ୍ଷା ପାଇଁ ଲେଖା ଯାଇଥିବା ସବୁ ପୁସ୍ତକର ପଦଗୁଡ଼ିକ ପ୍ରାଣହୀନ, ମୃତ । ତଥାପି ମୁଁ କହୁଛି । କାରଣ, ଜୀବନର ଉନ୍ନତି ପାଇଁ ପରିବର୍ତ୍ତନ ଦରକାର; ଅଥଚ ଏଇ ପୁସ୍ତକଗୁଡ଼ିକର ପଦଗୁଡ଼ିକ ଜମା ବଦଳେ ନାହିଁ । ଶୀତ ହେଉ ବା ଗ୍ରୀଷ୍ମ କାଳ ହେଉ, କଳା ହେଉ ବା ଗୋରା ଲୋକଙ୍କ ପାଇଁ ହେଉ, ପିଲାମାନଙ୍କ ମତିଗତି ସ୍ଥିର କି ଅସ୍ଥିର ହେଉ, ଶ୍ରେଣୀର ସେହି ସମୟର ମାନସିକ ଅବସ୍ଥା ସହିତ ମେଳ ଖାଉ ବା ନ ଖାଉ- ଦିନକ ପାଇଁ ସେ ସବୁ ପୁସ୍ତକରେ ପଢ଼ିବା-ଶିଖିବା ପାଇଁ ପାଠ ଠିକ୍ କରି ଦିଆଯାଇଥାଏ । ଏଇ ଅସୁବିଧା ଦୂର କରିବା ପାଇଁ ମୁଁ ବହୁତ ଚେଷ୍ଟା କରିଛି । ମେଳ ଖାଉ ନ ଥିବା ପଦଗୁଡ଼ିକ ବଦଳରେ ପଢ଼ା ଯାଇଥିବା ବିଷୟ ଓ ଉପସ୍ଥିତ ଶ୍ରେଣୀର ମାନସିକ ଅବସ୍ଥା ସହିତ ଖାପ ଖାଇବା ପରି ନୂଆ ପଦ ବଦଳରେ ପୁଣି ଏକ ମୃତ ପଦ-ତାଲିକା ଧରେଇ ଦେଲା ପରି ମୁଁ ଅନୁଭବ କରିଛି । ମୁଁ ଏପରି ଭାବେ ମିଶାଇ ନେବାକୁ ବାଛିଥିବା ପଦଗୁଡ଼ିକ ମୋ ଶ୍ରେଣୀର ମାଓରି ଶିଶୁମାନଙ୍କ ମନ ପାଖର ପଦ ହେଲେ ହେଁ ପିଲାଙ୍କୁ ଆଗେଇ ନେବାରେ ସାହାଯ୍ୟ କରେ ନାହିଁ । ପୁସ୍ତକର ପଦଗୁଡ଼ିକ ତ ଉଚ୍ଚ ମଧ୍ୟବିତ୍ତ ଇଂରେଜ ଲୋକଙ୍କ ପାଇଁ । ସେଥିରେ ଭାବିଚିନ୍ତି ଯେତେ ଯାହା ପଦ ମିଶେଇଲେ ବି ଉନ୍ନତି ଦେଖା ଦିଏ ନାହିଁ । ତେଣୁ ବର୍ଷ ବର୍ଷ ଧରି ମୁଁ ନିଜକୁ ପ୍ରଶ୍ନ କରିଛି : ପିଲାଙ୍କ ଦେହ ଓ ମନର ଉନ୍ନତି ପାଇଁ କେଉଁ ପଦଗୁଡ଼ିକ ପଢ଼ିବା ଦରକାର ?

ଶେଷରେ ମୁଁ ଜାଣିଲି । ପ୍ରାଥମିକ ଶ୍ରେଣୀରେ ତାଙ୍କ ପାଇଁ ସେଇ ପିଲେ ହିଁ ନିଜେ ପୁସ୍ତକ ଲେଖନ୍ତି ।

ସକାଳୁ ପହିଲେ ଶିଶୁ ଶ୍ରେଣୀରେ ପିଲେ ନିଜ ପଦ ଲେଖନ୍ତି । ପର ପିରିଅଡ଼୍‌ଗୁଡ଼ିକର ପଢ଼ା ପାଇଁ ମୁଁ ତାଙ୍କର ସେଇ ନିଜ ପଦଗୁଡ଼ିକ ସହିତ ସମ୍ପର୍କ



ରଖି ପଢ଼ାଏ । ବେଶ୍ ଦୁଇ ଦୁଇ ପଦରୁ ପୃଷ୍ଠାଏ ଯାଏଁ କାହାଣୀ ପିଲାଏ ଗଢ଼ି ପାରନ୍ତି । ପୁସ୍ତକରେ ପଦ ତାଲିକା ବାଦ୍ ପଡ଼ିଯାଇଥାଏ । ସକାଳେ ନିଜ ପରିବାର ଓ ସମାଜରୁ ଆସିଥିବା ସେଇ ଶିଶୁମାନେ ନିଜକୁ ଓ ନିଜ ପରିବେଶକୁ ସହଜ ସରଳ ଭାବେ ପ୍ରକାଶ କରନ୍ତି । ମନ ଉପରେ ବାହାର ପ୍ରଭାବ ପଡ଼ି ନଥାଏ । ସେଇ ପଦଗୁଡ଼ିକ ନେଇ ପରେ ପରେ ସେଇ ଦିନ ପାଇଁ ବେଶ୍ ନୂଆ ନୂଆ କାହାଣୀ ଗଢ଼ି ହୋଇଯାଏ । ପୁସ୍ତକରେ ପଦ ତାଲିକା ଦରକାର ହୁଏ ନାହିଁ ।

ସକାଳେ ପିଲାମାନେ ଯେଉଁ ପଦ ମାଗି ନିଅନ୍ତି, ତାହା ତାଙ୍କ ଖାତାର ପଛପଟେ ତ ଲେଖି ଦିଆଯାଏ, ସେମାନେ ସେଗୁଡ଼ିକ କଳାପଟାରେ ଲେଖନ୍ତି । ଗୋଟିଏ ଦୁଇଟିରୁ ଦଶୋଟି ଯାଏଁ ପଦ ପ୍ରତି ପିଲା ଲେଖେ । ପରେ ଯେତେବେଳେ ଅଳ୍ପ ସମୟର ଅବସର (Recess) ପରେ ସେମାନେ ଶ୍ରେଣୀକୁ ଆସନ୍ତି, ସେତେବେଳେ ସେମାନେ ତାଙ୍କର ସେଇ ପଦଗୁଡ଼ିକୁ ପୁଣି ବିଚାର କରନ୍ତି। ଦଶ ମିନିଟ୍ ଭିତରେ ସେମାନେ ସେସବୁ ପଦ ପଢ଼ନ୍ତି ଓ ବନାନ କହନ୍ତି । ସେମାନେ ସେଗୁଡ଼ିକ ପୂରା ବୁଝି ମନେ ରଖି ପାରିଛନ୍ତି କି ନାହିଁ, ମୁଁ ଜାଣିବାକୁ ଚାହିଁ ନାହିଁ । ପଦଗୁଡ଼ିକ ତାଙ୍କ ପାଇଁ ଯେତିକି ଦରକାର, ସେତିକି ଭଲ ଭାବେ ଓ ସେ ଅନୁସାରେ ସେତିକି ସମୟ ଯାଏଁ ତାଙ୍କ ମନରେ ରହିବ । ପିଲାଏ

କେଉଁ ପଦଗୁଡ଼ିକୁ ଗୁରୁତ୍ୱ ଦିଅଛି, ତାହା ମଧ୍ୟ ମୁଁ ଚିନ୍ତା କରେ ନାହିଁ । ମୁଁ କେବେ ହେଲେ କହେ ନାହିଁ, ''ପେରୀ, ବନାନ କର, 'ଛବି' ।'' ମୁଁ କହିଥାଏ, ''ପେରୀ, ତୁମର ପଦ ଭିତରୁ ଗୋଟିଏ କହ ।'' ଏହା ଦ୍ୱାରା ମୁଁ ପିଲାର ଅସଲି ପଦ ଓ ଠିକ୍ ବନାନ ପାଇଥାଏ । ପ୍ରକୃତରେ ଏ ବାଟରେ ମୁଁ ତାଙ୍କୁ ହିଁ ଧରେଇ ଦିଏ । ସମସ୍ତେ ପଦଗୁଡ଼ିକ୍ ଓ ବନାନ ଶୁଣନ୍ତି । ଦି' ପହରର ଖାଇଛୁଟି ବେଳ ହୋଇଗଲେ, ଏଇ ପଦଗୁଡ଼ିକ ବେଶ୍ ଚଞ୍ଚଳ ଗତିରେ ଅଡ଼ାଡ଼ି ହୋଇପଡ଼େ । କିନ୍ତୁ ସକାଳବେଳା ପିଲାଏ ଲେଖିବାକୁ ଓ ପଢ଼ିବାକୁ ଯେତେ ସବୁ ପଦ ବାଛିଥାନ୍ତି, ସେଥିରେ ନୂଆ ନୂଆ ପଦ ଓ ଭିନ୍ନ ଭିନ୍ନ ଦିଗ ଅତି ଆଶ୍ଚର୍ଯ୍ୟଜନକ ଭାବେ ଅଧିକ ହୋଇଥାଏ । ସେମାନଙ୍କର ଦେହ ଆଉ ମନର ସବୁ ସମ୍ପର୍କ ଯେପରି ନାନା ପ୍ରକାରର ପଦ ଭିତର ଦେଇ ଆଲୋଚନା ପାଇଁ ପାଟିକୁ ଆସିଯାଏ ।

ପ୍ରତିଦିନ ଉପରବେଳା କଳାପଟା ପୋଛି ସଫା କରି ଦିଆଯାଏ- ନୂଆ, ପୁରୁଣା ସବୁ ପଦ । ସକାଳେ ପୁଣି ପିଲାଙ୍କ ମନରେ ନୂଆ ନୂଆ ପଦ ଲେଖାଯାଏ । ଆମ ପାଇଁ ଏଇ କାମ ବେଶ୍ ମଉଜିଆ ହୁଏ । ସକାଳେ ଲେଖିବାକୁ ଥିବା ପଦଗୁଡ଼ିକ କଣ ହୋଇ ଥାଇପାରେ, କେହି ଆଗରୁ ଜାଣେ ନାହିଁ । ପ୍ରତିଦିନ ନୂଆ ନୂଆ ପଦ । ଗଲାରାତି ବା ତା' ଆଗରୁ ତାଙ୍କ ଆଦିବାସୀ ଗାଆଁରେ ଘଟିଥିବା ଘଟଣା କିମ୍ବା ଦେଖିଥିବା ସିନେମାରୁ କିମ୍ବା କଥାରୁ ସବୁବେଳେ କେତେ କେତେ ବିଚିତ୍ର ପଦ କଳାପଟାରେ ଲେଖାଯାଏ । ହେଲିକପ୍ଟର, ମାଇପିଜାଗା, ଗଉଡ଼ ପିଲା, ପଚା କାନ, ମାଛ, ମଇଳା, କେପ୍ଟନ୍ ମାର୍ବଲ୍, ଗାଲୁଆ, ସୁପର୍ ମେନ୍, ରକେଟ୍ ରାଜା...... ।

ସକାଳର ଏଇ ପଦଗୁଡ଼ିକ ସେଇ ଦିନରେ ଲେଖା ପଢ଼ାର ଅସଲି ପାଠ । ପିଲାଙ୍କ ନିଜର ପଦଗୁଡ଼ିକ ଲେଖାପଢ଼ାବେଳେ ତାଙ୍କ ମନ ଭିତରେ ତା'ର ଅସଲି ଛବି ଆଙ୍କି ଦେଇଥାଏ । ସେଇଥି ପାଇଁ ସେମାନଙ୍କ ପଦଗୁଡ଼ିକରୁ ସେମାନଙ୍କର ନିଜ କଥା, କାହାଣୀ ବୁଣା ହୋଇଯାଏ । ନିରସ ହୁଏ ନାହିଁ । ଆଲୋଚନା ମଧ୍ୟ ସରସ ଓ ଆନନ୍ଦଦାୟକ ହୋଇଥାଏ ।

ଜଣେ ନିଜର କାହାଣୀ ପଢ଼ିଲାବେଳେ ତା'ର ପଦଗୁଡ଼ିକ ସହିତ ତା' ବିଷୟ ମଧ୍ୟ ସମସ୍ତେ କଥା ହୁଅନ୍ତି । କିନ୍ତୁ ଲେଖକକୁ ଏହା କେବେହେଲେ

ଆଘାତ କରେ ନାହିଁ । ବରଂ ଲେଖକର ଭାବନାର ନୂଆ ଦିଗ ଜାଣିବାରେ ସମସ୍ତଙ୍କ ପାଇଁ ସୁବିଧା ହୁଏ । ବେଶ୍ ଖୋଲାଖୋଲି ଭାବରେ ଆଉ ସରାଗଭରା ତେଜରେ ପଢ଼ା ସହିତ ଆଲୋଚନା ଚାଲେ । ମୁଁ କେବେ କେଉଁଥିରେ ବାଧା ଦିଏ ନାହିଁ ।

ଏଇ କାହାଣୀ ଗଢ଼ାରେ ଲେଖକର ନିଜ କଥା ସହିତ ସେମାନଙ୍କର ପରିବେଶ ଓ ସାମାଜିକ ଚିତ୍ର ଜୀବନ୍ତ ଭାବେ ଆଙ୍କି ହୋଇଯାଏ । ସେଇଥିପାଇଁ ଏଇ ଶ୍ରେଣୀଟି ଆନନ୍ଦଦାୟକ ହୁଏ ଏବଂ ପିଲାଏ ସେପରି ବୁଝନ୍ତି, ଶିଖନ୍ତି, ଅଭ୍ୟସ୍ତ ହୁଅନ୍ତି । ଏଥିରେ ସୁନ୍ଦର ଛପେଇ, ଛାଡ଼ି ଛାଡ଼ି ସଜା ହୋଇଥିବା ଧାଡ଼ି ଇତ୍ୟାଦିର ପ୍ରଭାବ ଅପେକ୍ଷା ପିଲାଏ ବେଶ ପ୍ରଭାବିତ ହୁଅନ୍ତି । ନୂଆ ପଦଗୁଡ଼ିକ ଆଉ ସବୁ ପ୍ରଣାଳୀର ଶିକ୍ଷାଦାନ ଅପେକ୍ଷା ଏଇ ଶ୍ରେଣୀରେ ବେଶ୍ ସହଜ ସରଳ ଭାବେ ପିଲାଙ୍କ ମନରେ ବସା ବାନ୍ଧନ୍ତି । କେତେ ସମୟ ଆଉ କେତେଥର ପଦଟିଏ ପାଇଁ ଲାଗିବ, ତା' ଜାଣନ୍ତି ନାହିଁ । ସେମାନେ ନିଜ ଆଗ୍ରହ ଅନୁସାରେ

ଆଲୋଚନା କରି ପାରନ୍ତି; ନୂଆ ବନ୍ଧୁଟିଏ ପରି ବ୍ୟବହାର କରନ୍ତି । ଆଗ୍ରହ କମିଗଲେ ରଖିଦିଅନ୍ତି । ଏଇଥିପାଇଁ ମୁଁ କହେ, ପିଲାଙ୍କର ଏଇ ପଦଗୁଡ଼ିକ ଜୀବନ୍ତ ପଦ ତାଲିକା କାମରେ ତାହା ହିଁ ଘଟିଥାଏ ।

ଏଇ ଲିଖନ ଶ୍ରେଣୀରେ ଠିକ୍ ଭାବେ ପଢ଼ିବା ଶିକ୍ଷା ଦିଆ ଯାଉଥିବାରୁ ବ୍ୟାକରଣ, ବାକ୍ୟ ଗଠନ ଆଦି ପ୍ରତି କଡ଼ା ନଜର ରଖା ଯାଇଥାଏ । ସୁନ୍ଦର ହସ୍ତାକ୍ଷର କହିଲେ, ମୁଁ ବୁଝିବାରେ, ପ୍ରତ୍ୟେକ ପିଲା ନିଜେ ଯେତେ ଭଲ ଭାବେ ଲେଖିପାରିବ, ସେଥିପ୍ରତି ସଚେତନ ରହିବା ଦରକାର । ତାହା ହିଁ ହୁଏ । ପୁସ୍ତକ ବଦଳିଲା ବେଳକୁ ପିଲାର ସେଇ ଚେଷ୍ଟା ଥିବା ଦେଖାଯାଏ । ଫଳରେ ହସ୍ତଲିପିରେ ମଧ୍ୟ ସୃଜନାତ୍ମକ ଉଦ୍ୟମ ପିଲାର କାମରେ ପ୍ରତିଫଳିତ ହୁଏ ।

ମୋର ଏଇ ଜଣ-ଜଣକିଆ ପିଲାର ନିଜ ମନର ପଦ ନେଇ ପଠନ ଶିଖାଇଲା ବେଳେ ପିଲା କେବଳ ନିଜ ପାଇଁ ପଢ଼େ ନାହିଁ । ଜଣେ ଯେପରି ସେତିକି ସମୟ ପାଇଁ ଶ୍ରେଣୀରେ ନେତା ହୋଇଯାଏ । ଫଳରେ ପିଲାର ଜଣକିଆ କାମ, ଶ୍ରେଣୀ ବା ଦଳର ଭିତରେ ମିଳିମିଶି କାମ କରିବା ମନୋଭାବକୁ ତେଜି ଦିଏ, ଜଣାରୁ ଅଜଣା ଆଡ଼କୁ ଆଗେଇ ନିଏ ଏବଂ ପ୍ରତିଟି ପିଲା ତା' ନିଜର ଜଣକିଆ ଖୋଳ ଭିତରୁ ବାହାରି ପଡ଼ି ବାହାର ସମାଜ ଭିତରେ ନିଜକୁ ଖାପ ଖୁଆଇବା ଅଭ୍ୟାସ କରେ (from the organic to the inorganic) । ଏପରି ଭାବରେ ଶିଶୁ ଶ୍ରେଣୀରୁ ଉପର ଶ୍ରେଣୀକୁ ଗଲାବେଳେ ପିଲାର ଏଇ ଜଣକିଆ ଶିକ୍ଷା ବେଶ୍ ଶ୍ରେଣୀଗତ ହୋଇ ସହଜ ସରଳ ଭାବରେ ସମାଜମୁଖୀ ହୋଇ ଯାଇଥାଏ । ଶିଶୁ ଶ୍ରେଣୀରୁ ନିଜେ ଖୁସିରେ ଆଗେଇ ଚାଲିଥିବା ପିଲା, ଉପର ଶ୍ରେଣୀଗୁଡ଼ିକରେ ତା'ର ସୁଫଳ ଅଧିକରୁ ଅଧିକ ଲାଭ କରିଥାଏ । ସ୍ୱଭାବ ସୁଲଭ ଗତିରେ ଆଗେଇ ଚାଲିବାରୁ ଅଭ୍ୟାସକୁ ବଜାୟ ରଖିବାରେ ଶିଶୁ ଶ୍ରେଣୀର ଏଇ ଅଭିଜ୍ଞତା ବେଶ୍ ସହାୟକ ହୁଏ ।

## ସହଜ ବନାନ

ସକାଳ ଦଶ ଘଣ୍ଟା ସମୟର ନୂଆ ପଦ ପଢ଼ା-ଲେଖା; ଆଉ ଖେଳ ପରେ ଏଗାରଟା ବେଳକୁ ଆମେ ଆମର ନୂଆ ନୂଆ ପଦଗୁଡ଼ିକ ଆଡ଼କୁ ଟାଣି ହୋଇଯାଉ । ପିଲାଏ କଳାପଟା ପାଖକୁ ଧାଇଁ ଯାଆନ୍ତି ଏବଂ ନିଜ



ନିଜ ପୁସ୍ତକରୁ ସକାଳ ଲିଖନର ନୂଆ ପଦଗୁଡ଼ିକ କଳାପଟାରେ ଲେଖନ୍ତି । ମଝିରେ ବେଶି ସମୟ ବିତି ନଥାଏ, ତେଣୁ କିଛି ହେଲେ ପାଶୋର ଯାଇ ନଥାଏ । ପିଲେ ପ୍ରକୃତରେ ଯାହା ଓ ତାଙ୍କ ମନ ଯାହା ଚାହୁଁଥାଏ, ସେଥିରୁ ଅଳ୍ପ କିଛି ଦରକାର ପଡୁଥିବାରୁ, ସେମାନେ ଭୁଲି ଯିବାର ଆଶଙ୍କା ଅତି କମ୍ ।

ସବୁ ପିଲା କାନ୍ଥ କଳାପଟା ପାଖରେ ଠିଆ ହେଲାବେଳେ, ମୁଁ ଗୋଟିଏ ସ୍ଥାନରୁ ସମସ୍ତଙ୍କ ଲେଖା ଦେଖିପାରେ । ସେମାନେ ଲେଖନ୍ତି, ଭୁଲ ସୁଧାରନ୍ତି ଏବଂ ବଡ଼ ପିଲାମାନେ ବନାନ ପଢ଼ିଲେ, ସେମାନେ ଖାଲି ପାଳି ଧରନ୍ତି । କିନ୍ତୁ ପ୍ରତ୍ୟେକ ପିଲା ନିଜ ଢାଞ୍ଚାରେ ନିଜର ସ୍ତରରେ ହିଁ କାମ କରେ । କେତେଜଣ ମୋତେ ପଢ଼ି ଶୁଣାନ୍ତି । ଏଇଟା ଅବଶ୍ୟ ସେତେବେଳେ କରାଯାଇଥାଏ, ଯେତେବେଳେ ଅଧିକ ପିଲା ଥାଆନ୍ତି ଓ କଳାପଟାରେ ସମସ୍ତେ ଲେଖି ପାରନ୍ତି ନାହିଁ । କିନ୍ତୁ ପ୍ରତ୍ୟେକର କଥା ସମସ୍ତେ ଶୁଣନ୍ତି । 'ତୁମର ଆଉ ମୋର'- ଦରକାର ହେଉଥିବା କାମଟି ସୁରୁଖୁରୁରେ ହୋଇଯାଏ । ଅବଶ୍ୟ ଏ ସମୟରେ ଅଧିକ ହୋ-ହଲ୍ଲା ହୁଏ,- ହେଲେ, ଢ଼େର କାମ ତ ହୁଏ !

ବେଳେବେଳେ ମୁଁ କହେ, ''କିଏ ଏ ପଦଟିର ବନାନ କହି ପାରିବ ?'' ମୁଁ ଭାବିଚିନ୍ତି ତାଙ୍କରି ପଦ ତାଲିକାରୁ ପଦ ବାଛିଥାଏ । ସେଇଟା ତାଙ୍କରି ପ୍ରବୃତ୍ତି ଓ ପରିବେଶ ସହିତ ମେଳ ଖାଏ ଏବଂ ପିଲା ପାଖରେ ସେଇ ପଦ ଯେପରି ଅର୍ଥବୋଧକ ଓ ଆକର୍ଷଣୀୟ ହୋଇଥାଏ । ପିଲା ବନାନ କହିବାକୁ ଆଗେଇ ଆସୁ ଆସୁ ସେତିକିବେଳେ ତା' ମନ ଭିତରେ ଆପେ ଆପେ ସେଇ ପଦକୁ ନେଇ ଚିତ୍ରଟିଏ ଭଲ ଭାବେ ଆଙ୍କି ହୋଇ ଯାଇଥାଏ । ଫଳରେ ବନାନକୁହା ସହଜ ଓ ଆନନ୍ଦଦାୟକ ହୁଏ । ଏ କଥା ସତ ଯେ, ବେଳେବେଳେ ପିଲାଙ୍କ ବୟସ ପଦଟିକୁ ବୁଝିବାରେ ବାଧା ଦେଉଥିବା ଦେଖିଲେ ମୁଁ ସେପରି ପଦକୁ ବାଦ୍ ଦିଏ । କିନ୍ତୁ ଆଉ କେତେକ ସମୟରେ, ନିର୍ଦ୍ଦିଷ୍ଟ ପଦ ସହିତ ପିଲାଙ୍କର ଆବେଗଗତ ସମ୍ପର୍କ ଥିଲେ ସେମାନେ ବୟସ ଦୃଷ୍ଟିରୁ ନ ପାରିଲେ ମଧ୍ୟ କଠିଣ ପଦଟିକୁ ବୁଝାଇବାରେ ଲାଗି ପଡ଼ନ୍ତି । ମୋର ବିନା ସାହାଯ୍ୟରେ ''ସ୍କାଇରକେଟ୍'', ''କଂକାଳ'', ଆଦି ପଦଗୁଡ଼ିକୁ ସେମାନେ ବୁଝାନ୍ତି । କିନ୍ତୁ ''ଗାଈଆଳ'' ପରି ପଦ ବନାନରେ କିଛି ପିଲା ପଛରେ ଯାଆନ୍ତି । ଶିକ୍ଷକଙ୍କ ପାଇଁ ଏ ପିରିଅଡ୍ କଷ୍ଟକର ହୁଏ ନାହିଁ । ଦେବା ଅପେକ୍ଷା ନେବା ଏଠାରେ ଅଧିକ ମନେହୁଏ, ସତେ ଯେପରି ପିଲାଙ୍କର ଭିତରର ବଳ ଏଇଠି ପ୍ରକାଶ ପାଏ । ଚେଇଁ ଉଠେ । ଶିକ୍ଷା ଦାନରେ ଶିକ୍ଷକଙ୍କୁ ସାଧାରଣ ପିଲାଏ  ବିରୋଧ କରନ୍ତି- ଦାନ କରୁଥିବା ଜ୍ଞାନକୁ ଗ୍ରହଣ କରିବାରେ କୁଣ୍ଠିତ ହୁଅନ୍ତି !! କିନ୍ତୁ ମୋର ଏଇ ପିରିଅଡ୍‌ରେ ତା'ର ଓଲଟା ଘଟେ- ଏଠାରେ ତ ସେମାନେ ହିଁ ଯାହା କିଛି କରନ୍ତି !! ପିଲା ଭିତର ସୁପ୍ତ ଶକ୍ତି ମୁକ୍ତି ପାଇ ଜାଗ୍ରତ ହୋଇଉଠେ-କେଡ଼େ ଭୟଂକର ସତେ !! ଅବଶ୍ୟ ଏ ଶ୍ରେଣୀରେ କୋଳାହଳ ଥାଏ । ପେଷାଦାର ଶିକ୍ଷକମାନେ ତା'ର ବିରୋଧ କରିପାରନ୍ତି । କିନ୍ତୁ ଏଇ 'ପଢ଼େଇବାକୁ' ମୁଁ କ'ଣ କେଉଁବେ ''ପେଷା ବୋଲି ଦାବି କରିଛି ?''

ଏଇ ଲେଖିବା ଆଉ ବନାନ କରିବା କାମ ପ୍ରାୟ ପନ୍ଦର ମିନଟ୍ ଧରି ଚାଲେ । ଆଗରୁ ତାଙ୍କ ପାଇଁ ଗୋଲେଇ ହୋଇ ବସିବାକୁ ସାନ ସାନ ଚୌକୀ ସଜା ଯାଇଥାଏ । ପିଲାଏ ସେଠାକୁ ଧାଆଁନ୍ତି । ଏଇଠି ପଢ଼ିବା ସହିତ ପରସ୍ପର ମଧ୍ୟରେ ଭାବ ବିନିମୟ ହୁଏ ।

## ସହଜ ପଠନ

ପଠନ ପାଇଁ ପ୍ରାୟ ପନ୍ଦର ମିନିଟ୍ ଲାଗେ । ପିଲାଙ୍କର ପୁସ୍ତକ ଆଉ ପଠନ ଦେଖି ଆପଣ କହିପାରିବେ ଯେ, ନିଜେ ସେମାନେ ପ୍ରତିଦିନ ଲେଖୁଥିବା ସେଇ ସବୁ ପୁସ୍ତକ ପଢ଼ି ଜଣକିଆ ପ୍ରଣାଳୀରେ ପିଲାଏ ଉନ୍ନତି କରୁଛନ୍ତି କି ନୁହେଁ । ବିଦ୍ୟାଳୟର ଶ୍ରେଣୀ ବଖରାରୁ ଇଏ ଅଲଗା । ଏଠି ପିଲେ ଖେଳନ୍ତି । ନିକଟରେ ଜଣେ ଶିକ୍ଷକ ମୋତେ କିଛି ବହି ଦେଇଥିଲେ । ମୁଁ ଜାଣିଥିଲି, ମୋ ଜଣକିଆ (Organic) ପଢ଼ା ଢ଼ାଞ୍ଚାର ମୂଳ ନିୟମଟିକୁ ସେହି ସବୁ ବହିରେ ବାଦ୍ ଦିଆ ଯାଇଛି ।ମୋ ପ୍ରଣାଳୀରେ ପିଲେ ପରସ୍ପରର ପଢ଼ନ୍ତି ଓ ଆଲୋଚନା କରନ୍ତି । କଳା ମାତ୍ରକେ ସଂଚାର ସାପେକ୍ଷ । ଆମେ କେବେହେଲେ କେବଳ ନିଜ ପାଇଁ ସବୁ କିଛି କରି ନଥାଉ । ପୁସ୍ତକ ହେଲା ଅନ୍ୟର ପଢ଼ିବା ପାଇଁ ।

ମୋ ପାଖରେ ଜଣେ ସହକାରୀଶିକ୍ଷୟିତ୍ରୀ ଥିଲାବେଳେ, ପିଲାଙ୍କର ପୁସ୍ତକଗୁଡ଼ିକୁ ମରାମତି କରିବାକୁ ତାଙ୍କୁ ଦାୟିତ୍ୱ ଦିଏ । କିନ୍ତୁ ସାହାଯ୍ୟ କରିବାକୁ କେହି ନଥିଲେ, ମୁଁ କିଛି ଅଠା କାଗଜ, (Cello tape), ପେନ୍‌ସିଲ୍, ରବର ଓ ବ୍ଲେଡ଼ଟିଏ ଧରି ଶ୍ରେଣୀ ବୁଲିବା ସମୟରେ ପୁସ୍ତକ ଗୁଡ଼ିକ ମରାମତି କରିଦିଏ । ପହିଲେ ପହିଲେ ଛିଣ୍ଡା, ମୋଡ଼ାମୋଡ଼ି ପୁସ୍ତକ ଗୁଡ଼ିକୁ ପରିଦର୍ଶକ(Inspector)ଙ୍କୁ ମୁଁ ଦେଇ ପାରୁନଥିଲି । କିନ୍ତୁ କ୍ରମେ ଏହା ଉପରେ ଆଉ ଗୁରୁତ୍ୱ ଦେଉନି । ଆଗରୁ ଥରେ ପତଳା ଡ୍ରଇଂକାଗଜର ଖାତା ଛାପାଖାନାରେ ତିଆରି କରିଥିଲି । ଭାବିଥିଲି, ଏଥିରେ ଚିରାଚରିତ ଲୋଚା-କୋଚା କମ୍ ହେବ । ହେଲେ, ଖର୍ଚ୍ଚ ସିନା ଅଧିକ ହେଲା, ପ୍ରାୟ ସେତିକି ଦିନରେ ଖାତା ଗୁଡ଼ିକସେଇ ଲୋଚାକୋଚା ଅବସ୍ଥାକୁ ଆସିଗଲା । ଡ୍ରଇଂ କାଗଜଟିକିଏ ଓଜନିଆ, କିନ୍ତୁ ଖର୍ଚ୍ଚ ଅଧିକ । ତେବେ, ଏ ଦିଗରେ କେଉଁଟି ଭଲ, ତାହା ପରିଚାଳନା ସମିତିର ପାଣ୍ଠି ଠିକ୍ କରିବ - ଅଠା, କାଗଜ, ରବର୍ ଇତ୍ୟାଦି ନା ଡ୍ରଇଂ କାଗଜ ।

ଜଣେ ଯୁବ ଶିକ୍ଷୟିତ୍ରୀ ମୋ ସାଥିରେ କାମ କରି ଏଇ ଜଣିକିଆ (Organic) ଶିକ୍ଷା ଦାନରେ ଗବେଷଣା କରୁଥିଲେ । ତାଙ୍କର ଅସୁବିଧା କଥା ସେ କହିଥିଲେ । ଖାତାଗୁଡ଼ିକ ମରାମତି ନ ହେଲେ ସେ କାମ କରି ପାରୁନଥିଲେ । ତେବେ ତାଙ୍କ ଅସୁବିଧା ମୁଁ ବୁଝିଲି- ଏଇ କାମଟି ବିଧିବଦ୍ଧ ଭାବେ ହେବା ଦରକାର ।

ଗୋଲାକାର ଭାବରେ ସଜା ଯାଇଥିବା ଛୋଟ ଚୌକୀରେ ବସି ପିଲାଏ ପହିଲେ ନିଜର ନିଜେ ପଢ଼ନ୍ତି ଓ ପରେ ପରସ୍ପରକୁ ପଢ଼ି ଶୁଣାନ୍ତି । ମୁଁ ନିୟମିତ ଭାବେ ସେମାନଙ୍କୁ ଉପଦେଶ ଦିଏ, ବଡ଼ ପାଟିରେ ସମସ୍ତେ ଶୁଣିଲା ଭଳି ପଢ଼ିବାକୁ । କିନ୍ତୁ ଏଥିରେ ସତର୍କତା ଦରକାର । କାରଣ ଏହା ପରେ ପରେ ଆଲୋଚନା କରିବା ନିହାତି ଦରକାର । ଆଉ ଆଲୋଚନା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଏହି ଜଣିକିଆ ଶିକ୍ଷାପ୍ରଣାଳୀର ଉଦ୍ଦେଶ୍ୟ ଅନୁସାରେ ଆଲୋଚନାଟି ସର୍ବୋଚ୍ଚ



ଲକ୍ଷ୍ୟ ସାଧନର ମାଧ୍ୟମ । ଏ ଆଲୋଚନା ସମୟରେ ଅତି ଛୋଟ ପିଲାଙ୍କୁ ମୁଁ ଖେଳିବା ଅବା କାହାଣୀ ଶୁଣିବା ପରି କାମରେ ଜଣେ କନିଷ୍ଠ ସହକାରୀ କିମ୍ବା ଜଣେ ବଡ଼ ଛାତ୍ରଙ୍କ ଦାୟିତ୍ୱରେ ଛାଡ଼ି ଦିଏ । ଏଇ ପ୍ରଣାଳୀରେ ଲେଖି ଶିଖିଥିବା ପିଲାଙ୍କ ପାଇଁ ଆଲୋଚନାଟି ମନର ଭାବ ପ୍ରକାଶରେ ଅଧିକ ସାହାଯ୍ୟ କରେ ଏବଂ ପିଲାର ମାନସିକ ଚେତନା ଓ ଶକ୍ତି ଉନ୍ନତି ଲାଭ କରି କଥା କହିବାରେ ସଫଳ ହୁଏ । ଏହା ନ ହେଲେ ଭାବ ପ୍ରକାଶ ପୂରା ବଢ଼ିପାରେ ନାହିଁ । ସାଧାରଣ ଭାବେ ମନୋରଂଜନ କରିବା ସଙ୍ଗେ ସଙ୍ଗେ ମନର ଉତ୍ତେଜନାକୁ

ରୂପ ଦେବା ପର୍ଯ୍ୟନ୍ତ ଏହି ଆଲୋଚନା ପିଲାର ବ୍ୟକ୍ତିତ୍ୱକୁ ପ୍ରକାଶ କରିପାରେ। ଏଥିରେ ଆମେ ସାଧାରଣ ଭାବେ ଆଗ୍ରହ ଦେଖେଇବା ଛଡ଼ା, କୌଣସି ମତାମତ (ମନ୍ତବ୍ୟ) ଦେବା ଉଚିତ୍ ନୁହେଁ। କାହାରିକୁ ପ୍ରଶଂସା କରିବା କି ଦୋଷ ଦେବା ଆଦୌ ଦରକାର ନାହିଁ। ଆମେ ଖାଲି ଦେଖଣାହାରୀ। ବିନା ବାଧାରେ ପିଲା ନିଜକୁ ଆପେ ପ୍ରକାଶ କରୁ, ତା'ର ଭିତରର ସବୁ କିଛି ଭାବନା, କାମନା କଥାରେ ପ୍ରକାଶ କରୁ। ଆମେ ତାହା ହିଁ କରେଇବା। ନ ହେଲେ କାହିଁକି ଏ ଶିକ୍ଷା ଦାନ ?

ପନ୍ଦର ମିନିଟ୍‌ର ପଢ଼ିବା ସମୟ ସାଢ଼େ ଏଗାରଟା ଯାଏଁ ଗଡ଼ି ଚାଲେ। ତା' ପରେ ପନ୍ଦର ମିନିଟ୍‌ର ଆଲୋଚନା। ଏହାକୁ ମୁଁ କହେ, କଥାଭାଷା (Talk)। ବିଦ୍ୟାଳୟରେ ଏତେ ସମୟ କଥାଭାଷାରେ ଖଟେଇବା ଅନେକଙ୍କୁ ଭଲ ଲାଗି ନପାରେ। କିନ୍ତୁ ଏଥିରୁ ହିଁ ମୁଁ ମୋର ବିଷୟ-ବସ୍ତୁ ପାଇଥାଏ। ମୁଁ ଜୋର ଦେଇ କହିପାରିବି ଯେ, ଆବେଗ ସହିତ ଭାବ ବିନିମୟ ଯୋଗୁଁ କୌଣସି ଦିଗରୁ କ୍ଷତିହୁଏ ନାହିଁ।

ଏଗାରରୁ ବାର ଘଣ୍ଟା ଭିତରେ ଘଣ୍ଟାଏ ସମୟର ଶେଷ ପନ୍ଦର ମିନିଟ୍‌ରେ ପିଲାମାନେ ମାଓରି ଶିଶୁମାନଙ୍କ ପାଇଁ ଲେଖା ଯାଇଥିବା ପ୍ରାଥମିକ ପାଠ୍ୟ ପୁସ୍ତକ ପଢ଼ନ୍ତି। ଏସବୁ କାମରେ ପିଲାଏ ବେଶ୍ ଶିଖନ୍ତି। ଶିଖିବା ପାଇଁ ଏ ବ୍ୟବସ୍ଥା ଏଇ ଏଗାର ଘଣ୍ଟାରୁ ବାରଟା ଭିତରେ କୌଣସି କାମ ପାଇଁ ମୁଁ ଆଦୌ ଲଜ୍ଜିତ ନୁହେଁ।



# ମାଓରି ପିଲାଙ୍କ ପଠନ-ଧାରା

ମୋର ଅସଲି (ମାଓରି) ପଦ-ତାଲିକା ଓ ସେଇ ପିଲାମାନଙ୍କ ଲେଖାଗୁଡ଼ିକଦେଇ ମୁଁ ପାଞ୍ଚ ବର୍ଷିଆ ମାଓରି ପିଲାମାନଙ୍କ ମନ ଭିତରର ସବୁ ଗଳିକନ୍ଦି ଦେଖି ପାରିଛି । ମୁଁ ଜାଣେ ସେ ସବୁ ତାଙ୍କ ଭିତରର କାନ୍ଥ ଟପି ବାହାରକୁ ଆସି ଯାଇଛି । ସେଇ ମାଟିଆ ଆଦିବାସୀ ପିଲେ ନିଜକୁ ନେଇ ନିଜ ବିଷୟରେ ଯାହା ସବୁ ଲେଖି ଯାଇଛନ୍ତି, ସେ ସବୁ ହିଁ ମୋର ଅସଲି ପାଠ୍ୟ ପୁସ୍ତକ । ପଦଗୁଡ଼ିକ ସେଇ ପିଲାଙ୍କ ମନ ଭିତରର ପୂରା ଭାବନାକୁ ଛବି ଆଙ୍କିଲା ପରି କେତେବେଳେ ବାକ୍ୟଟିଏ ତ କେତେବେଳେ କାହାଣୀଟିଏ ପରି ମନେ ହୁଅନ୍ତି । ସେମାନଙ୍କର ଲେଖା କେବଳ ପ୍ରମାଣ ନୁହେଁ । ସେମାନଙ୍କର ସହିତ ପ୍ରତିଦିନ ମିଳିମିଶି କାମ କରି ଆମେ ଶିଖି ପାରିଛୁ; ସେମାନଙ୍କ ରୀତି-ନୀତି, ତାଙ୍କ ଛାତି ତଳର ବ୍ୟଥା-ବେଦନା ଆଉ ତାଙ୍କ ଇଚ୍ଛା-ଅଭିଳାଷ ।

ଏଇ ମାଟିର ଏଇ ପରିବେଶକୁ ନେଇ ମାଓରି ପିଲାଙ୍କ ପାଇଁ ଭିନ୍ନ ଭିନ୍ନ ସ୍ତରରେ ପାଠ୍ୟ ପୁସ୍ତକ ଲେଖା ହୋଇଛି । ମୁଁ କହିବାକୁ ଚାହେଁ ଯେ ସେ ସବୁ ପୁସ୍ତକ ସେମାନଙ୍କଠାରୁ ହିଁ ଗଢ଼ି ଉଠିଛି । ଛଅ ବର୍ଷର ପରୀକ୍ଷା ନିରୀକ୍ଷା ସହିତ ଶହେ ଖଣ୍ଡ ଅନ୍ୟାନ୍ୟ ବହିର ପ୍ରୟୋଗ ପରେ ଏଇ ପୁସ୍ତକଗୁଡ଼ିକ ଲେଖା ହୋଇଛି । ଅନେକ ସମୟରେ ପୁସ୍ତକଟିଏ ଛପାହୋଇ ସେଥିରୁ ରଙ୍ଗ ଶୁଖିବା ଆଗରୁ ପିଲାଙ୍କ ହାତରେ ଦେଇ ମୁଁ ସେମାନଙ୍କ ପ୍ରତିକ୍ରିୟା ଲକ୍ଷ୍ୟ କରେ । ଅନେକ ସମୟରେ ଅନ୍ଧ ଭାବେ ମଧ୍ୟ ମୁଁ ସଫଳତା ଅନୁଭବ କରିଛି ।

ମାଓରି ଗାଆଁର ମନୋଭାବକୁ ଏସବୁ ପୁସ୍ତକରେ ଦିଆଯାଇଛି । ସେଥିରେ ରହିଛି, ସେମାନଙ୍କର ପ୍ରାକୃତିକ ଓ ପ୍ରବୃତ୍ତିଗତ ଜୀବନଯାପନ ପ୍ରଣାଳୀ, ସେମାନଙ୍କ ଭାବ ଓ ଆବେଗଜନିତ କାର୍ଯ୍ୟକଳାପ, ପରସ୍ପର ପ୍ରତି ସହାନୁଭୂତି ଓ ହିଂସା-ଦ୍ୱେଷ । ସେମାନଙ୍କ ଗାଉଁଲି ଜୀବନରେ ଭରି ହୋଇରହିଛି : କାନ୍ଦ, କୋମଳତା, କଳହ, ମାଦକ ଦ୍ରବ୍ୟ, ପ୍ରେମ ଆଉ ସଂଗୀତ । ମୁଁ ସେଥିରେ ମିଶି ତା'ର ଗୋଟେ ଅଙ୍ଗ ହୋଇ ଯାଇଛି, ତେଣୁ ଜାଣିପାରିଛି । ଏବେ ବି ମାଓରି ଗାଁରେ ଲୁହ ତା'ର ଆକର୍ଷଣ ବଂଚେଇ ରଖିଛି । କିନ୍ତୁ ୟୁରୋପୀୟମାନେ ତ ବହୁ ଦିନରୁ ସେଇଟା ହରେଇ ବସିଛନ୍ତି ।

ମାଓରି ପିଲାଙ୍କ ଶିଶୁ ଶ୍ରେଣୀରେ ପଢ଼ିବା ପଦ ଭିତରେ ''ଦୁଃଖ'' ପଦଟି ବାଦ୍ ପଡ଼ିଯାଇଛି କାହିଁକି ? 'ଚୁମା' ଓ 'କାନ୍ଦ' ପଦ କାହିଁ ? ଆଉ ବେଶ୍ ଉତ୍ତେଜନା ଆଣୁଥିବା 'ଭୂତ' ଏବଂ 'ପ୍ରିୟ' ? ଅଥଚ ୟୁରୋପୀୟମାନଙ୍କ ପରି ମାଓରି ପରିବାରରେ ମଧ୍ୟ କେତେକ ମନଛୁଆଁ ଇଂରେଜୀ ଗଳ୍ପ ଉପନ୍ୟାସ ସମାନ ଭାବରେ ସୁଖ, ଦୁଃଖ ଭାବ ଫୁଟାଇ ପାରିଛନ୍ତି । କିନ୍ତୁ ମାଓରି ଶିଶୁ ଶ୍ରେଣୀ ଅଲଗା । ଏଠାରେ ଅତି ସତର୍କ ଭାବେ ସରଳ ଭାଷାରେ ଦୁଇ ଦିଗକୁ ଲକ୍ଷ୍ୟ ରଖି ପହିଲି ପଢ଼ା ବହିଗୁଡ଼ିକ ଲେଖା ହୋଇଛି । କାହିଁକି ଛୋଟ ପିଲାଙ୍କ ପହିଲି ପାଠ୍ୟର ବଡ଼ ଭାଗଟିଏ ଏତେ ଅଲଗା ? ଜୀବନରେ କ'ଣ ଏପରି ସମୟ ଅଛି, ଯେତେବେଳେ ଦୁଃଖ, ଆଉ ବିପଦ ନଥାଏ ? ମୁଁ ଅନେକ ସମୟରେ ଭାବେ ଯେ ମାଓରି ବସ୍ତିରେ ପିଲାମାନେ ମୋର ଏଇ ପୁସ୍ତକଗୁଡ଼ିକର ସରଳ ଆନନ୍ଦର ଭାବଧାରା ସହିତ ମେଳ ଖୁଆଇ ପଢ଼ନ୍ତି । ମୋର ବିଶ୍ୱାସ, ମାଓରି, ପିଲାଙ୍କ ପାଠ୍ୟ ପୁସ୍ତକ ଲେଖିବାରେ ରହିଥିବା ମୋର ଚିନ୍ତା ଓ ଚେତନା ପିଲାଏ ଅବିକଳ ସେପରି ଅନୁଭବ କରନ୍ତି । ଶବ୍ଦ ବିଶେଷଜ୍ଞମାନେ ପଦଗୁଡ଼ିଏ ମିଳେଇ ପାଠ୍ୟ ପୁସ୍ତକ ରଚନା କରନ୍ତି । ସେମାନେ କ'ଣ ଧରି ନେଇଛନ୍ତି ଯେ, ଶାନ୍ତ ଭାବଧାରାର କିଛି ପୁସ୍ତକ ପିଲାଙ୍କ ହାତରେ ଧରେଇ ଦେଲେ, ଶାନ୍ତିପୂର୍ଣ୍ଣ ଜୀବନ ଯାପନରେ ତାହା ପ୍ରଭାବ ପକେଇବ ? ମୁଁ କିନ୍ତୁ ଏହାକୁ ଭିନ୍ନ ଆଖିରେ ଦେଖେ । ସମ୍ଭ୍ରାନ୍ତ ପଦ-ସମ୍ଭାର, ଛନ୍ଦହୀନ କାହାଣୀଗୁଡ଼ିକରେ କୌତୁକିଆ ଭାବ ସହିତ ନାଟକୀୟ ଆବେଗ ଓ ଉତ୍ତେଜନା ଦେଖି ବହୁ ଅଭିଭାବକ ପିଲାଙ୍କ ହାତରେ ସେ ପୁସ୍ତକ ଦେବାକୁ ବିଜ୍ଞତା ମନେ କରନ୍ତି । କିନ୍ତୁ ପିଲାଏ ସେ ଭାବଧାରାରୁ ଦୂରେଇ ରହନ୍ତି । ତେଣୁ ମୁଁ ଅନ୍ୟ ଦିଗରୁ ଏ ସବୁ ଚିନ୍ତା କରେ ।

ବେଳେବେଳେ ଆଖି ବୁଜି ସପନ ଦେଖିବାକୁ ମୁଁ ପିଲାଙ୍କୁ ପ୍ରବର୍ତ୍ତାଇ ଥାଏ । ପିଲେ ଦେହ ମନକୁ ହାଲୁକା କରି ସପନ ଦେଖି ଚେଇଁ ଉଠିଲେ, ମୋତେ ଶୁଣାନ୍ତି । ସେ ଭିତରେ ଯେଉଁ ତୀବ୍ର ଉତ୍ତେଜନା ଥାଏ, ତାହା ଶୁଣିଲେ ହିଁ ବିଶ୍ୱାସ କରିହେବ । ସେ ଉତ୍ତେଜନାର ବଡ଼ ଭାଗ ପୁଣି ମୋ ବିରୁଦ୍ଧରେ-ବେଶ୍ ଖୁସିରେ ସେମାନେ ମୋତେ ଶୁଣାନ୍ତି : ମୁଁ ବଡ଼ ବିପଦରେ ପଡ଼ି ଯାଇଛି; ମୋ ଘର ଜଳିପୋଡ଼ି ଯାଇଛି; ମୋ ଉପରେ ବୋମା ପଡୁଛି । ଅନେକ ପ୍ରକାରର ବନ୍ଧୁକରୁ ମୋ ଉପରକୁ ଗୁଳି ମାଡ଼ ହେଉଛି; ମୋତେ ଗରିବଙ୍କ ହାତରେ ଦିଆ

ହେଉଛି । ଯାହା ବୁଝା ପଡୁଛି, ଏ ସବୁ ହେଉଛି ମୁଁ ପ୍ରତିନିଧିତ୍ୱ କରୁଥିବା କର୍ତ୍ତୃପକ୍ଷ ଓ ଶୃଙ୍ଖଳାର ପ୍ରତିଫଳନ ।

ପିଲାଙ୍କର ମନ ଭିତରେ ବିଷୟବସ୍ତୁ ଏବଂ ଆମର ପାଠ୍ୟ ପୁସ୍ତକର ବିଷୟବସ୍ତୁ ମଧ୍ୟରେ ଥିବା ଦୂରତା କିଛି କମ୍ ନୁହେଁ । ଭାବିଲେ ଭୟ ଲାଗେ । ମୁଁ ବିଶ୍ୱାସ କରି ପାରୁନି ଯେ ଜେନେଟ୍ ଓ  ଜନ୍ କେବେ କେଉଁଠି ପଡ଼ି ଯାଇ ନଥିବେ; ତାଙ୍କର ଆଣ୍ଠୁ ଛିଣ୍ଡି ଯାଇ ନଥିବ ଏବଂ ସେମାନେ କାନ୍ଦି କାନ୍ଦି ମାଆ ପାଖକୁ ଧାଇଁ ନଥିବେ । ମୁଁ ଜାଣି ପାରୁନି କାହିଁକି ତାଙ୍କର ମାଆ କେବେ ହେଲେ ଚୁମା ଦେଉ ନାହାନ୍ତି । 'ବାପ, ଧନ' ବୋଲି ଡାକୁ ନାହାନ୍ତି । ଜନ୍ କ'ଣ କେବେ ଅବୁଝା ହୋଇ ନଥିବ ? ଆମେରିକାର ପିଲାଙ୍କ ଭିତରେ କୌଣସି ଭୟ କ'ଣ ନାହିଁ ? ଆମେରିକାରେ କ'ଣ ବର୍ଷା ଆଉ ଝଡ଼ ହୁଏନି ? ତେବେ କାହିଁକି ସେ ସବୁ ଏଇ ପହିଲି ପଢ଼ା ବହିରେ ନାହିଁ । ସବୁବେଳେ ସତେ ଯେପରି ସବୁ କିଛି ସୁଖକର କେବଳ !! ମୋର ଏଇ ପ୍ରଶ୍ନ ସବୁ ଯଦି ସରଳ ଓ ଅକପଟ ହୁଏ, ତେବେ ଏହା ସେଇ ପାଞ୍ଚବର୍ଷିଆ ପିଲାଙ୍କ ମେଳରେ ମୁଁ ରହି ଆସିଥିବାର ସୁଫଳ ଭଗବାନ ଜାଣନ୍ତି । ମାଓରି ପିଲାଙ୍କ ଶିଶୁ ଶ୍ରେଣୀରେ ଆମର କେତେ ଯେ ଛାତିକୁ ଛୁଇଁଲା ପରି ଘଟଣା ଘଟି ଯାଇଛି ! ସେଠାରେ ଗ୍ଲିଗୋଳ, ହସ ଖୁସି ଆଉ ନୂଆ ନୂଆ ଆସୁଥିବା ପିଲାଙ୍କ ଭାବଭଙ୍ଗୀ ! କିନ୍ତୁ ମୁଁ ଦେଖୁଛି, ଆମର ସମ୍ଭ୍ରାନ୍ତ ତଥା ସୁଖ-ପାଠ୍ୟ ପାଠ୍ୟ ବହିଗୁଡ଼ିକ ସତେ ଯେପରି  ସେ ସବୁ ଉପରେ ଏକ ଘୋଡ଼ଣି ପକେଇ ଦେଇଛି- ଏଡ଼େଇ ଦେଇଛି, ଲୁଚେଇ ଦେଇଛି, ଚପେଇ ଦେଇଚି ।

ମୋର ଭିନ୍ନ ଭିନ୍ନ ସ୍ତର ଦେଇ ଯିବାକୁ ଥିବା ପିଲାଙ୍କ ପାଠ୍ୟ ପୁସ୍ତକ ଓ ଛବିରେ ମୁଁ କିଛିଟା ଏଇ ସବୁ ନାଟକ ମଧ୍ୟ ଭରି ଦେଇଛି : କିଛି କାନ୍ଦ, ବେଶ୍ କିଛି ଭୟ, କିଛି ହସ-ଖୁସି, ଆଉ ତା' ସହିତ ସଂସ୍କୃତିର ପ୍ରୟୋଗ । ଅସଲି ପଦ-ତାଲିକାର ବଳିଷ୍ଠ ପୃଷ୍ଠଭୂମି ଏବଂ ପିଲାଙ୍କ ନିଜ ମନର କଥା ଲିଖନରୁ ମୁଁ ବହୁତ କିଛି ଏଥିପାଇଁ ସାଉଁଟି ଆଣିଛି । ମୁଁ ନିଜେ ସେପରି ନଥିଲେ ବି ପିଲାଙ୍କ ଭିତରୁ  ସବୁ କିଛି ନାଟକୀୟ ବିଷୟବସ୍ତୁ ଯେପରି ପୁସ୍ତକକୁ ନେଇଆସିଛି । ମୋ ପାଇଁ ଏଇଟା ହିଁ ପରିପୂର୍ଣ୍ଣ ଜୀବନ, ସବୁ ଦିଗର ବିଚିତ୍ରତା ସହିତ ବିଥୋଭେନ୍ ଆଉ ଚାଇକୋସ୍କି ମଧ୍ୟ ସେଇପରି ବାଟରେ ଦେଖି ପାରିଥିଲେ ।

ତେବେ, ମୁଁ ଏବେ ବେଶ୍ ଖୁସି, ଏକ ଅଧିକ ପବିତ୍ର ସମାବେଶରେ ନିଜକୁ ମିଶେଇ ଦେଇ ପାରିଥିବାରୁ ।

କହିବା ବାହୁଲ୍ୟ, ମାଓରି ଶିଶୁ ଶ୍ରେଣୀରେ ଆନନ୍ଦର ସହିତ ମୁଁ ''ଜେନେଟ୍ ଓ ଜନ୍'' ପାଠ୍ୟ ପୁସ୍ତକକୁ ସ୍ଥାନ ଦେଉଛି । ଏ ପୁସ୍ତକଗୁଡ଼ିକର ରଖିବା କିମ୍ବା ବ୍ୟବହାର କରିବା ବିଷୟଟି ସମସ୍ୟା ନୁହେଁ । ସରଳ କଥାରେ ସମସ୍ୟାଟି ହେଉଛି : କୋମଳମତି ମାଓରି ଶିଶୁମାନଙ୍କୁ ଗୋଟିଏ ପରିବେଶରୁ ଅନ୍ୟ ଏକ ନୂଆ ପରିବେଶକୁ ବାଟ ବତେଇ ନେବା, ଗୋଟିଏ ସଂସ୍କୃତିରୁ ଅନ୍ୟ ଗୋଟିଏକୁ- ମାଓରି ଗାଆଁରୁ ୟୁରୋପୀୟ ଶିକ୍ଷାକୁ ।

ଜଣେ ପାଞ୍ଚବର୍ଷିଆ ପିଲା ଜୀବନରେ ପ୍ରଥମ ଥର ପାଇଁ ଯେତେବେଳେ ପଦଗୁଡ଼ିକ ସହିତ ପରିଚିତ ହୁଏ, ସେତେବେଳେ ସେଇ ପଦ ତା' ପାଇଁ ଗଭୀର ଭାବ ଓ ଅର୍ଥ-ବୋଧକ ହେଉ ଏବଂ ସେ ସେଇ ପଦକୁ ସେହି ସମୟରୁ ହିଁ ଭଲ ପାଇ ପଢ଼ିବାକୁ ଭଲ ପାଉ । ଦ୍ୱିତୀୟ ମୁଖ୍ୟ ବିଷୟ ହେଉଛି ପଢ଼ିବାକୁ ଭଲ ପାଇବା, ଆଉ ପୁସ୍ତକକୁ ଭଲ ପାଇବା । ମାଓରି ଶିଶୁମାନେ ''ଜେନେଟ୍ ଓ ଜନ୍'' ପୁସ୍ତକ ପଢ଼ିବାବେଳେ, ମୁଁ ସେମାନଙ୍କୁ ଅନୁଧ୍ୟାନ କରିଛି । ମଉଜିଆ କାହାଣୀ ବହିଟିଏ ପଢ଼ି କେତେ ସମୟ ସେମାନେ ଆନନ୍ଦ ଲାଭ କରିଥାନ୍ତି- ତାହା ମଧ୍ୟ ଏଥିସହ ମୁଁ ପର୍ଯ୍ୟବେକ୍ଷଣ କରି ବିଚାର କରିଛି । ସେ ସବୁ ପୁସ୍ତକପଢ଼ାର ଆନନ୍ଦ ଦୀର୍ଘସ୍ଥାୟୀ ହୁଏନାହିଁ ଏବଂ ପରେ ପରେ ଏକ ପ୍ରକାର ଅବହେଳା-ପ୍ରବଣତା ପ୍ରକାଶ ପାଏ । ପୁସ୍ତକଟିଏ ଯେତେ ଆନନ୍ଦଦାୟକ ଓ ଆକର୍ଷଣୀୟ ହେଲେ ହେଁ ମାଓରି ପିଲାଙ୍କ ମତି-ଗତି ସହିତ ମେଳ ନ ଖାଇଲେ, ସେମାନେ ସେଥିପ୍ରତି ଆକୃଷ୍ଟ ହୁଅନ୍ତି ନାହିଁ । ଫଳରେ ଗୋଟିଏ ସ୍ତରରୁ ଆଉ ଗୋଟିଏ ସ୍ତର ବା ଶ୍ରେଣୀ ଉତ୍ତୀର୍ଣ୍ଣ ପରି ପରିସ୍ଥିତିରେ ମାଓରି ପିଲେ ବିଫଳ ହୁଅନ୍ତି, ପୁସ୍ତକ ପଢ଼ିବାକୁ ଆଗ୍ରହୀ ହୁଅନ୍ତି ନାହିଁ । ତାଙ୍କର ନିଜର ପରିଚିତ ପରିବେଶ ଓ ଚଳଣି ସହିତ ଖାପ ଖାଉଥିବା ପାଠ୍ୟ ବିଷୟ ତାଙ୍କୁ ଆକୃଷ୍ଟ କରେ; ପଢ଼ିବାପାଇଁ ଆଗ୍ରହୀ କରେ । ଏଥିପାଇଁ ବଛା ବଛା ତାଙ୍କ ମନର ପଦଗୁଡ଼ିକର ତାଲିକାରେ ତାଙ୍କରି ଗାଆଁ ଓ ତାଙ୍କ ନିଜ କଥା ତାଙ୍କୁ ପଢ଼ିବାରେ ଉତ୍ସାହିତ କରିଥାଏ । ତାହା ମୁଁ ବା, ତାଙ୍କ ଦେହ-ମନର ଶିକ୍ଷା ପ୍ରଣାଳୀ ।

ଉପର ଶ୍ରେଣୀକୁ ଉଠିଲାବେଳେ ସେମାନେ ପରିଚିତ ପରିବେଶକୁ କିଛିଟା ନୂଆଁ ଭିତରକୁ ବେଶ୍ ସହଜରେ ଗତି କରିପାରନ୍ତି ।

ସେମାନଙ୍କର ଉଦ୍ଦେଶ୍ୟ ହେଉଛି ଦୁଇଟି ସଂପ୍ରଦାୟର ସଭ୍ୟତା ମଧ୍ୟରେ ସଂଯୋଗ ସ୍ଥାପନ କରିବା । ଇଂରେଜୀ ଶିକ୍ଷା ଦେବା ମୁଖ୍ୟ ନୁହେଁ । ଦୁଇଟି ସଂପ୍ରଦାୟ ଭିତରେ ଦୁଇ ହଜାର ବର୍ଷର ଦୂରତା ରହିଛି।ଏଇ ଦୁଇ ସଂପ୍ରଦାୟର ସଂଯୋଗ ପାଇଁ ମୁଁ ମାଓରି ଗାଁକୁ ସେତୁ ରୂପେ ବ୍ୟବହାର କରିଛି । ମାଓରି ଗାଆଁର ଭାଷା ବ୍ୟବହାର କରି ସଫଳ ହୋଇ ପାରିଛି ।

ମାଓରି କଥା ଭାଷାରେ ''ୟେଃ'' (eh) ପଦଟି ବହୁଳ ଭାବରେ ବ୍ୟବହାର ହୁଏ । କଥା ହେଲାବେଳେ ବାକ୍ୟ ଶେଷରେ ଏଇ ପଦ ଗୋଟିଏ ''ଏହା ନୁହେଁ କି ''? ''ଆମେ ନୋହୁଁ କି ?'' ''ସେମାନେ ନୁହନ୍ତି କି ?'' ତୁମେ ଭାବୁ ନାହଁକି ?'' ଇତ୍ୟାଦି ବୁଝାଏ । ମାଓରି ପିଲେ କଥାଭାଷା ହେଲାବେଳେ କେତେବେଳେ ବାକ୍ୟର ଆରମ୍ଭରେ ଏବଂ ଆଉ କେତେବେଳେ ବାକ୍ୟ ମଝିରେ ବା ଶେଷରେ ଏଇ ଧ୍ୱନୀ ବ୍ୟବହାର କରିଥାନ୍ତି । ଏହାକୁ ସେମାନେ ବେଶ୍ ଅର୍ଥ-ବୋଧକ ଓ ଆନନ୍ଦ-ଦାୟକ ମନେ କରନ୍ତି । ନୂଆ ଶ୍ରେଣୀର ପାଠ୍ୟ ପୁସ୍ତକଗୁଡ଼ିକରେ ତେଣୁ ଏଇ 'ୟେଃ' ଶବ୍ଦର ବ୍ୟବହାର ବେଶ୍ ଦରକାରୀ ଅଟେ । ମାଓରି ପିଲେ ସେଇ ଶବ୍ଦ ଥିବା ପାଠ୍ୟପୁସ୍ତକ ପଢ଼ିଲାବେଳେ ଯେପରି ଖୁସି ହୁଅନ୍ତି, - ତାହା ହିଁ ସଫଳତାର ପୁରସ୍କାର, 'ୟେଃ' ଧ୍ୱନି ବ୍ୟବହାର କରିବାର ସାହସ ପାଇଁ । ''ଆମେ ଖେଳିବା, ୟେଃ ?'' ''ତୁମେ ଆଉ ମୁଁ, ୟେଃ ?'' ''ତୁମେ ପାଖରେ ରହିବ, ୟେଃ, ବାପା ?'' ଧ୍ୱନିଟି ସତେ ଯେପରି ବଥଉଥିବା କାନ ପାଇଁ ଓଷ ପରି କାମ କରେ । ସେମାନଙ୍କ ମୁହଁରେ ଆନନ୍ଦ ପ୍ରକାଶ ପାଏ । କିନ୍ତୁ ଏଇ କେତୋଟି ବାକ୍ୟ ପଢ଼େଇ ସେମାନଙ୍କୁ ପରଖ କରି ଦେଖନ୍ତୁ ତ : ''ଆସ, ଆମେ ଖେଳିବା'', ''ସେମାନେ ଘରେ ଅଛନ୍ତି'', ''ମା' ଘରେ ଅଛନ୍ତି ''.... ।

ଏବର ଏକ ନୂଆ ପାଠ ପୁସ୍ତକରୁ ମୁଁ 'ଠକ ବତକ'ର କଥାଭାଷା ପଢୁଥିଲି :-

''ମୁଁ ଗଡ଼ିଆକୁ ଭଲ ପାଏ ନାହିଁ । ମୁଁ ଏଠାରେ ବାସ କରିବାକୁ ଚାହେଁ ନାହିଁ ।''

ସଂକଳକ ମହାଶୟ କ'ଣ କେବେ ହେଲେ "ନୁହେଁ କି ?" (don't) ଶୁଣି ନାହାନ୍ତି ? ସେ ସ୍ୱର୍ଗରେ ରୁହନ୍ତୁ, କି ନର୍କର ହୁଅନ୍ତୁ,- ଏପରି କ'ଣ କେହି କହେ ? "ବାଃ" ! ଏ ପଦ କ'ଣ କେହି ଶୁଣି ନାହାନ୍ତି ? କେହି କ'ଣ କବିତା ପଢ଼ନ୍ତିନି ? ପାଞ୍ଚ ବରଷିଆ ପିଲାର ସହଜ ପଠନର ଢ଼ଙ୍ଗ ବଦଳାଇ ଜଟିଳ କାହିଁକି କରାଯିବ ? ମୁଁ ଜାଣି ପାରୁନି, ମୁଁ ଜାଣି ପାରୁନି, ମୁଁ ଜାଣେନି ....... ।

ମୋ ବିଚାର ପିଲାଙ୍କୁ ଜଣାଇଲାବେଳେ ମୁଁ କେବେ ଡ଼େରି କରେ ନାହିଁ । ମୁଁ କଥିତ ଭାଷାକୁ ସେଇ ଢ଼ାଞ୍ଚାରେ ପ୍ରକାଶ କରେ । ଇଂରାଜୀରେ He is, I will..... ଆଦି ସ୍ଥାନରେ He's...., Where's...., He'll...., I'll.... ଆଦି ଯେପରି ସାଧାରଣ ଭାବେ ବ୍ୟବହାର କରାଯାଏ, ତାହା ପିଲେ ମୂଳରୁ ଜାଣିବା ଭଲ।ବୟସ୍କମାନେ ଉପନ୍ୟାସରୁ ଏଇ କଥିତ ଢ଼ାଞ୍ଚାର ଆନନ୍ଦ ଉପଭୋଗ କରୁଥିବା ବେଳେ ପାଞ୍ଚ ବରଷିଆ ପିଲାଙ୍କୁ ତା' ବଦଳରେ ଜଟିଳ ବାକ୍ୟ ପଢ଼ିବାକୁ ଦିଆଯାଉଛି । ଯେପରି Let us play କିନ୍ତୁ ପ୍ରକୃତରେ ମାଓରି ପିଲେ କ୍ୱଚିତ୍ ଏପରି Let... ବାକ୍ୟ କହନ୍ତି । ବରଂ ସାଧାରଣ ଭାବେ କହିଥାନ୍ତି We play, eh (ଆମେ ଖେଳିବା, ୟେଃ.....(ଅର୍ଥାତ୍ କ'ଣ କହୁଛ ? / ରାଜି ତ ? ଖେଳିବା କି ?......))

କଥିତ ଭାଷା ଓ ଅଭ୍ୟସ୍ତ ଢ଼ାଞ୍ଚା ପାଠକକୁ ପଢ଼ିବାରେ ଆଗ୍ରହୀ କରାଏ । ଅନ୍ୟ ପଦ ଅପେକ୍ଷା ପରିଚିତ ପଦ ବ୍ୟବହାର କଲେ ବିଷୟଟି ଅଧିକ ସହଜ ହୁଏ । ସ୍ୱାଭାବିକ ଭାବରେ ମନର ଭାବଧାରା ପରିଚିତ କଥିତ ଶୈଳୀରେ ପ୍ରକାଶ ପାଏ । ଏଥିପାଇଁ ମୋତେ ପୁଣି କହିବାକୁ ପଡୁଛି ଯେ, ପୁସ୍ତକ ପଢ଼ିବା ପାଇଁ ଆଗ୍ରହୀ ହେବାକୁ ଆମେ ପିଲାଙ୍କୁ ପଢ଼ାଇଥାଉଁ ।

ପଦକୁ ଥରକୁ ଥର ବ୍ୟବହାର କରିବା, ଦୈର୍ଘ୍ୟରେ ବାକ୍ୟ ଓ ପୃଷ୍ଠାର ପରିମାଣ ସ୍ଥିର କରିବାରେ ଆମେରିକାର ପୁସ୍ତକ ଲେଖାକୁ ଖୋଲାଖୋଲି ଭାବେ ପ୍ରଶଂସା କରେ । ମୁଁ ମଧ୍ୟ ସମ୍ମାନ ଦେଇ ଦାସଟିଏ ପରି ମାଓରି ପୁସ୍ତକ ଲିଖନରେ ସେଇ ଢ଼ାଞ୍ଚା ଅନୁସରଣ କରେ । ଆମେରିକାର ବହୁତ ଭଲ କାମ ପରି ପୁସ୍ତକ ଲିଖନ ଓ ପ୍ରକାଶନ ବି ବେଶ୍ ଭଲ । କିନ୍ତୁ କେବଳ ବିଷୟବସ୍ତୁ ନିର୍ଣ୍ଣୟରେ ମୁଁ ତଥା ମାଓରିମାନେ ସମ୍ମାନ ଦେବାରେ କୁଣ୍ଠିତ ।

ଭିନ୍ନ ଭିନ୍ନ ସ୍ତରରେ ପାଠ୍ୟ ବିଷୟ-ବସ୍ତୁ ପରି ପୁସ୍ତକଗୁଡ଼ିକର ଚିତ୍ରଗୁଡ଼ିକ ମଧ୍ୟ ଆମର ପ୍ରିୟ ନୁହେଁ। ଏଥିରେ ବିଚାର-ବୋଧ ନାହିଁ,- ଅଛି କେବଳ ଭିନ୍ନ ଭିନ୍ନ ଶ୍ରେଣୀ ପାଇଁ ଯୋଜନା ଅନୁସାରେ ଛବି। ଏଇଟା ବୋଧହୁଏ ପ୍ରବୃତ୍ତିଗତ। ମାଓରିମାନଙ୍କ ସହିତ ମୁଁ ମଧ୍ୟ ଏହାର ବିରୋଧି। ସମ୍ଭ୍ରାନ୍ତ ପ୍ରତି ହୁଏ ତ ଏହା ଏକ ସଠିକ୍ ପ୍ରତିକ୍ରିୟା। ଭିନ୍ନ ଭିନ୍ନ ଶ୍ରେଣୀ ପାଇଁ ଉପଯୁକ୍ତ ହେଲା ଭଳି ଛବି ବ୍ୟବହାର କରିବା ପାଇଁ ମୁଁ ମଧ୍ୟ ଆଗ୍ରହୀ। କିନ୍ତୁ ଚିତ୍ରଗୁଡ଼ିକ ଅର୍ଥ-ବୋଧକ ଓ ଶ୍ରେଣୀ ଉପଯୋଗୀ ହେବା ଦରକାର। କ୍ରମ ଉନ୍ନତି ଅନୁସାରେ ଯୋଜନା କରି ଛବି ବ୍ୟବହାର କଲେ ଉପକାର ମିଳେ। ମୁଁ ତାହାକୁ ଭଲପାଏ। ଏଥି ସହିତ ମୁଁ ପ୍ରୟୋଗ କରି ଦେଖିଛି ଯୋଜନା ଅନୁସାରେ ଆଙ୍କିଲେ ସାଧାରଣ ଅଙ୍କନ ମଧ୍ୟ ପିଲାଙ୍କର ଆବେଗ ଓ ଆଗ୍ରହ ବଢ଼ାଇଥାଏ। କଳାର ଏଇ ସଫଳତା ମୁଁ ପରୀକ୍ଷା କରିଛି। ଯୁବ ସଂପ୍ରଦାୟଙ୍କ ଉପଯୋଗୀ ତରଳ ଆବେଗଭରା କବିତାକୁ ମଧ୍ୟ ମୁଁ ଅଙ୍କନ ଜରିଆରେ ଦେଖାଇଛି। ମାଓରି ଶିଶୁମାନେ ତାଙ୍କର ସାଧାରଣ ସରଳତା ଭିତରେ କେବେହେଲେ ତ ତାହାର ଦୁର୍ବଳତାକୁ ବିରୋଧ କରିନାହାନ୍ତି ! କ୍ରମ ଉନ୍ନତି ଅନୁସାରେ ଚିତ୍ର ଆଙ୍କିବା ମାଓରିମାନଙ୍କ ନିଜସ୍ୱ ଗୁଣ, ଏହାର ଭାଷା ସେମାନେ ଭଲ ଭାବେ ବୁଝନ୍ତି, ନିଜ ନିଜ ଭିତରେ ପ୍ରକାଶ କରନ୍ତି। ସେଥିପାଇଁ ମୋର ସାଧାରଣ ଅଙ୍କନ ସେମାନଙ୍କର ମନକୁ ଛୁଇଁ ପାରିଛି।

ଶ୍ରେଣୀରେ ବ୍ୟବହାର କରାଯାଉଥିବା ମୋର କେତେକ ପୁସ୍ତକରେ ପିଲେ ନିଜେ ସବୁ ଛବି ଆଙ୍କିଛନ୍ତି; ତାହା ବେଶ୍ ମନଲାଖି ହୋଇଛି। ଅନ୍ୟମାନେ ଏହାକୁ ଉପହାସ କରି ପାରନ୍ତି। ଜଣେ ଚିତ୍ରକର ତା'ର ନିଜ ଢାଞ୍ଚାରେ ହିଁ ଆଙ୍କେ। ପିଲାମାନେ ନିଜେ ହେଉଛନ୍ତି 'ଭଲ ମନ୍ଦ'ର ବିଚାରକ। ପାଠ୍ୟ ପୁସ୍ତକ ଲେଖିଲାବେଳେ ମୁଁ ସେଇ ପିଲାଙ୍କ ସ୍ତରକୁ ଚାଲି ଯାଇଥାଏ। ଚିତ୍ର ଆଙ୍କିଲା ବେଳେ ମଧ୍ୟ। ତେଣୁ ଆମ ଦୁହିଁଙ୍କ (ପିଲାମାନେ ଓ ଲେଖିକା) ଭିତରେ ବେଶ୍ ମେଳ ରହେ। ଏହା ହେଉଛି ମନ ଓ ବିଚାରଧାରାର ମେଳ। ବୟସ୍କମାନେ ପିଲାଙ୍କର ଏଇ ଅଙ୍କନକୁ ଉପହାସ କରନ୍ତି। କିନ୍ତୁ ପ୍ରକୃତରେ ସେଇଟା ସେମାନଙ୍କର ଭାଷା ଓ ଭାବ ପ୍ରକାଶର ମାଧ୍ୟମ। ସେଇଟା ପ୍ରଶଂସା ପାଇବାର ଯୋଗ୍ୟ। ତେଣୁ ଏହା ମୋ ପାଇଁ ଏକ ବଡ଼ ପୁରସ୍କାର ପରି। ସେଇଠି ମୋର ସଫଳତା। କାରଣ ଛବି ଆଙ୍କିବା ଅନୁସାରେ ସେମାନଙ୍କର ପାଟିରୁ

ଭାଷା ବାହାରେ । ମୁଁ କହି ରଖିବାକୁ ଚାହେଁ ଯେ, ମୋ ମନର ଭାବଧାରା ସେମାନଙ୍କର କଥାରେ ପ୍ରକାଶ ପାଇଯାଏ ।

କାହାଣୀଟିଏ କହିଲାବେଳେ କଳାପଟାରେ ଚିତ୍ର ମଧ୍ୟ ଆଙ୍କିବାକୁ ପଡ଼େ । ତେଣୁ ତରତରରେ ଆଙ୍କିଲାବେଳେ ରେଖାଟିଏ ସଳଖ ଓ ସୁନ୍ଦର ହୁଏ ନାହିଁ । ଅଙ୍କାବଙ୍କା ବି ହୁଏ । ବେଗରେ କହିବା ସହିତ ଆଙ୍କିବା କିମ୍ବା ପୁସ୍ତକର ଛବିରେ ରଙ୍ଗ ଦେଲାବେଳେ ମଧ୍ୟ ସେଇପରି ହୁଏ । କିନ୍ତୁ ମୋର ସେଇ ଟିକି ଟିକି ବିଚାରକମାନେ କେବେହେଲେ ମୋତେ ଦୋଷ ଦେଇନାହାନ୍ତି ।

ରଙ୍ଗ ବିଷୟରେ ତ ମୁଁ ପ୍ରାୟ ଜାଣେନି । କିନ୍ତୁ ଡଜନ୍ ଡଜନ୍ ପୁସ୍ତକର ଛବିଗୁଡ଼ିକରେ ରଙ୍ଗ ଦେଇ ଚାଲିଲାବେଳେ ବେଶ୍ ତରତରରେ କାମ କରିବାକୁ ପଡ଼େ । ତେଣୁ ଧାଡ଼ିରେ ଅଙ୍କା ବଙ୍କା ରହିଲା ପରି ଏଥିରେ ମଧ୍ୟ ବେଖାପିଆ ରଙ୍ଗ ଲାଗେ । ଏହା ସେଇ ପୁରୁଣା ଢାଞ୍ଚା, ନ ହେଲେ ମୁଁ ମୋ ପାଞ୍ଚ ବରଷିଆଙ୍କ ସାଥିରେ ପାଦ ମିଳେଇ ଚାଲି ପାରି ନଥାନ୍ତି- ପଛରେ ପଡ଼ି ଯାଇଥାନ୍ତି; କେବଳ ଶାଗୁଆ ଗଛ ଆଉ ନେଳିଆ ଆକାଶ ଦେଖୁଥାନ୍ତି !! ମାଓରି ପିଲାଙ୍କ ଶିଶୁ ଶ୍ରେଣୀରେ ବର୍ଷ ବର୍ଷ ଧରି କାମ କରି ସେମାନଙ୍କ ସହିତ ମୁଁ ମଧ୍ୟ କାଳିଆ ଛାତ, କମଳା ରଙ୍ଗର ଘର, ଶାଗୁଆ କାନ, ହଳଦିଆ ମୁହଁ, ଗେରୁଆ ଟ୍ରକ୍ ଓ ଗୋଲାପି ରଙ୍ଗର ବରଷା ସହିତ ଏକାବେଳକେ ପରିଚିତ ହୋଇଗଲିଣି । ତେଣୁ ରଙ୍ଗଦେବାରେ ଏଇ ବ୍ୟତିକ୍ରମ ପାଇଁ ମୋତେ ଯଦି ଦୋଷ ଦିଆଯାଏ, ତା'ର ଉତ୍ତରରେ ମୁଁ କହିବି ଯେ : ଏହା କେବଳ ମୋର ସଙ୍ଗଦୋଷର ସୁଫଳ। ସେମାନେ ଯେପରି ଆଙ୍କନ୍ତି, ମୁଁ ସେପରି ଆଙ୍କିଥାଏ; ଆଉ ସେମାନେ ଯେପରି ଲେଖନ୍ତି, ମୁଁ ସେପରି ଲେଖେ ।

ମାଓରି ପିଲାଙ୍କ ବିଭିନ୍ନ ଶ୍ରେଣୀ ପାଇଁ କ୍ରମରେ ତାଙ୍କର ପ୍ରିୟ ପାଠ୍ୟ ପୁସ୍ତକଗୁଡ଼ିକୁ ଏପରି ଭାବରେ ଲେଖାଯାଇଛି, ଯେପରି ସେମାନଙ୍କ ପଢ଼ିବା ଅଭ୍ୟାସ ବଢ଼ି ଉଠିବ । ତା' ସହିତ ସେମାନେ ଅନୁଭବ କରିବେ ଯେ, ପଢ଼ିବାଟା ବେଶ୍ ବ୍ୟକ୍ତିଗତ । ଏଇ ପହିଲି (ପ୍ରାଥମିକ)ପଢ଼ା ପିଲା ମନରେ ଆତ୍ମବିଶ୍ୱାସ ଆଣିଦେବ ଏବଂ ନିଜ ଅନୁଭୂତିରୁ ସେଇ ବିଶ୍ୱାସ ସେମାନଙ୍କୁ ଆଉ ଯେ କୌଣସି ପୁସ୍ତକ ପଢ଼ିବାକୁ ନିଜ ଭିତରୁ ପ୍ରେରଣା ଦେବ । ସେଥିରେ ତା' ପରିବେଶର କଥାଭାଷା ଥାଉ ବା, ନ ଥାଉ, ସେଥିରେ ତୃତୀୟ ପୁରୁଷ ପ୍ରଭାବ ଥାଉ ବା,

ନ ଥାଉ, ତା' ଗାଆଁ ପରିବେଶ ଥାଉ ବା ନ ଥାଉ, ଆଉ ବେ-ରଙ୍ଗ ହଳଦିଆ ବରଷା ଛବି ଥାଉ ବା ନ ଥାଉ- ସେ ପଢ଼ିବାରେ ଯେଉଁ ଟିକକ ମଜା ପାଇଛି, ଆଉ ନିଜ ଭିତରେ ଆତ୍ମ-ବିଶ୍ୱାସ ଜାତ କରିଛି- ତା'ରି ବଳରେ ସେ ପଢ଼ି ଚାଲିବ,- ଏପରି କି ଆମେରିକାର ଡ୍ରାଞ୍ଚାର "ଜେନେଟ୍ ଏଣ୍ଡ ଜନ୍" ପୁସ୍ତକ ମଧ୍ୟ ଆନନ୍ଦରେ ପଢ଼ି ଚାଲିବ- ଆଗକୁ ଆଉ ଏକ ପାହୁଣ୍ଡ ।

ଏଇ ସବୁ ଆଲୋଚନାରୁ ମୁଁ ଆଉ ଗୋଟିଏ ବିଷୟ ବିଚାର କରୁଛି । ମାଓରି ପିଲାଟିଏ ମୋର ଏଇ ଗବେଷଣା ଶ୍ରେଣୀରେ ନିୟମିତ ଭାବେ ଯଦି ଉପସ୍ଥିତ ରହିଛି, ତେବେ ସେ ନିଶ୍ଚିତ ଭାବେ ଏଇ ପଢ଼ିବା ଅଭ୍ୟାସଟି ଗଢ଼ି ନେଇଛି । ପ୍ରାଥମିକ ଅବସ୍ଥାରେ ଏଇ ପହିଲି ଦୁଇ ବରଷର ପଠନ ଏକ ସହଜ ଓ ସରଳ ଅଭ୍ୟାସ ହୋଇ ଉଠିଛି । ମୋ ଶ୍ରେଣୀରେ ନିୟମିତ ଉପସ୍ଥିତ ରହୁଥିବା ପିଲାମାନେ ଏଇ ଦୁଇ ବର୍ଷରେ ପଢ଼ିବା ଅଭ୍ୟାସ ଗଢ଼ି ନେଇଥାନ୍ତି । ତେବେ ଗବେଷଣାରେ ମୁଁ ଏଇ ଚମତ୍କାରିତା ଉପରେ ଜୋର ଦିଏ ନାହିଁ । କାରଣ ଅନ୍ୟତ୍ର ମାଓରି ପିଲାମାନେ ଦୁଇ ବର୍ଷରେ ତାଙ୍କର ପ୍ରାଥମିକ ଶ୍ରେଣୀର ସବୁ ପୁସ୍ତକ ପଢ଼ି ପାରନ୍ତି । ତେବେ ମୋର ଏଇ ଗବେଷଣା ଶ୍ରେଣୀର ପିଲାଙ୍କ ପଠନ ଅଭ୍ୟାସ ସେମାନଙ୍କୁ ଉଚ୍ଚ ଶ୍ରେଣୀରେ ବିଶେଷ ଭାବେ ସାହାଯ୍ୟ କରିଥାଏ । ମାଓରି ପିଲାଙ୍କ ଅସଲ ସମସ୍ୟା ହେଉଛି : ହାଇସ୍କୁଲର ଉଚ୍ଚ ଶ୍ରେଣୀରେ ପହଞ୍ଚିଲାବେଳକୁ ସେମାନଙ୍କୁ ଚଉଦ / ପନ୍ଦର ବର୍ଷ ହୋଇ ଯାଇଥାଏ । ଏଇ ବୟସ ହାଇସ୍କୁଲର ଶ୍ରେଣୀ ପାଇଁ ନିଶ୍ଚୟ ଅଧିକ । କିନ୍ତୁ ଏ ବୟସରେ କୁଶଳୀ କାରିଗରଟିଏ ହେବା ମଧ୍ୟ ସମ୍ଭବ ନୁହେଁ । ତେଣୁ ଏଇ ଅବସ୍ଥାରେ ଥିବା ମାଓରି ପିଲେ ୟୁରୋପୀୟ ଶିକ୍ଷାପ୍ରଣାଳୀର ବିରୋଧି ହୋଇଯାଆନ୍ତି । ଫଳରେ ସେମାନେ ଅବାଟକୁ ଗଢ଼ି ଯାଆନ୍ତି; ଅପରାଧ-ପ୍ରବଣତା ମଧ୍ୟ ଦେଖା ଦିଏ ମୋର ଏଇ ଶିକ୍ଷା ଅବସ୍ଥାରେ, ଏପରି କି ପ୍ରାଥମିକ ଶ୍ରେଣୀଗୁଡ଼ିକର କ୍ରମ ଶିକ୍ଷାଦାନରେ ପିଲାଏ ବର୍ଷଟିଏ ଆଗରୁ ପହଂଚି ପାରନ୍ତି । ଅବଶ୍ୟ ସେମାନେ ଅନ୍ତତଃ ଛଅ ବର୍ଷ ବୟସରୁ ପଢ଼ିବା ଦରକାର ।

ତେବେ ଏତେ କମ୍ ବୟସରୁ ପଢ଼ିବା ଅଭ୍ୟାସ କରେଇନେବା କ'ଣ ସତରେ ଗୁରୁତ୍ୱପୂର୍ଣ ? ଏହା କ'ଣ ଭବିଷ୍ୟତର ମାଓରି ଯୁବକଟିକୁ ପଠନ-ବିରୋଧି ମନୋଭାବରୁ ରକ୍ଷା କରିଦେବ ? ପରବର୍ତ୍ତୀ ଜୀବନରେ ସେ ଶସ୍ତା ଆମୋଦ (କମିକ୍ସ) ବହି ଆଡ଼କୁ ଟାଣି ହୋଇ ଯିବନି ତ ? ସମ୍ଭବତଃ ନୁହେଁ । କାରଣ : ମୋ ମତରେ ସେଇଟା ଗୋଟିଏ ସାଂପ୍ରଦାୟିକ ବିକାଶ ଅଟେ ।

ମୋର ଏଇ ଗବେଷଣାରେ ମାଓରି ପିଲାଙ୍କ ପାଇଁ ବିଭିନ୍ନ ଶ୍ରେଣୀର ଯେଉଁ ସବୁ ପୁସ୍ତକ ଲେଖାଯାଇଛି, ସେଗୁଡ଼ିକ ଆମେରିକା ଢାଞ୍ଚାର ପାଠ୍ୟ ପୁସ୍ତକର ବିକଳ୍ପ ନୁହେଁ । ବରଂ ସେମାନେ ଏଇ ପୁସ୍ତକଗୁଡ଼ିକ ପଢ଼ି ଆମେରିକୀୟ ପୁସ୍ତକ ସ୍ତରରେ ପହଞ୍ଚି ସେଗୁଡ଼ିକ ଖୁସିରେ ଆପଣେଇ ନେବାପାଇଁ ଚେଷ୍ଟା କରାଯାଇଛି । ଏଇ ପୁସ୍ତକଗୁଡ଼ିକ ଭିନ୍ନ ଭିନ୍ନ ସ୍ତର(ଶ୍ରେଣୀ)ରେ ପଢ଼ି ମାଓରି ପିଲାଟି ''ଜେନେଟ୍ ଏଣ୍ଡ୍ ଜନ୍'' ଆଦି ଆମେରିକୀୟ ପୁସ୍ତକ ପଢ଼ିବାରେ ଆଗ୍ରହ ଓ ଅଭ୍ୟାସର ମାନସିକ ପ୍ରସ୍ତୁତି ଲାଭ କରି ପାରିଥାଏ । ମାଓରି ସଂପ୍ରଦାୟର ମାନସିକତା ଓ ଚଳଣି ଏବଂ ୟୁରୋପୀୟ ସଂସ୍କୃତି ଭିତରେ ଥିବା ତଫାତ୍‌କୁ ଯୋଡ଼ି ପଠନ ଅଭ୍ୟାସ ବଢ଼େଇବା ଦିଗରେ ମୋ ଗବେଷଣାର ପୁସ୍ତକଗୁଡ଼ିକ ବେଶ୍ କାମ କରିଛି । ଏଥିସହ ମାଓରି ମାନସିକ ଆବେଗ ଓ ଆଗ୍ରହ ମଧ୍ୟ ନିଜ ସ୍ଥାନରେ ଦୃଢ଼ ହେବା ସଙ୍ଗେ ସଙ୍ଗେ ୟୁରୋପୀୟ ସଂସ୍କୃତିର ଭଲ ଭାବଗୁଡ଼ିକୁ ଗ୍ରହଣ କରିବା ପାଇଁ ଭଲ ଭାବେ ପ୍ରସ୍ତୁତ ହୋଇଯାଇଥାଏ । ପିଲାର ପରବର୍ତ୍ତୀ ସାମାଜିକ ଜୀବନରେ ଏହାର ଦୃଢ଼ତା ପ୍ରତିଫଳିତ ହୁଏ । ମୁଁ ଜାଣେ, ସେମାନେ ମୋ ଶିଶୁଶ୍ରେଣୀର ସାହିତ୍ୟ ପାଠ୍ୟ ବିଷୟକୁ ପସନ୍ଦ କରନ୍ତି ନାହିଁ । ସେମାନେ ଭିନ୍ନ ମତ ପୋଷଣ କରନ୍ତି । କିନ୍ତୁ ମାଓରିମାନେ ମଧ୍ୟ ଆମଠାରୁ ସେଇ ଦୃଷ୍ଟିକୋଣରୁ ଭିନ୍ନ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି, ସେମାନେ ସଂଖ୍ୟାଗରିଷ୍ଠ ହୋଇଥିବାରୁ ସବୁବେଳେ ଭୁଲି ଯାଉଛନ୍ତି ଯେ, ତାଙ୍କର ୟୁରୋପୀୟ ସଂସ୍କୃତି ଓ ମାନସିକତା ପରି ମାଓରି ଜୀବନରେ ମଧ୍ୟ ସେମାନଙ୍କର ଏକ ସାଂସ୍କୃତିକ ଓ ମାନସିକତା ରହିଛି ।

ତେଣୁ କହି ରଖୁଛି : ମୁଁ କେବଳ ପାଞ୍ଚ ବରଷିଆ ମାଓରି ପିଲାମାନଙ୍କ ମାନସିକତା ପରଖ କରି ଏଇ ପାଠ୍ୟ ପୁସ୍ତକଗୁଡ଼ିକ ଲେଖିଛି ।





## ସୁନେଲି ବିଭାଗ

କେତେ ଶହ ବର୍ଷ ତଳରୁ ପ୍ଲାଟୋ ଓ ପାଇଥାଗୋରାସ୍ ସଂଖ୍ୟା ଭିତରେ ସୃଷ୍ଟିର ପ୍ରକୃତି ଏବଂ ସୌନ୍ଦର୍ଯ୍ୟର ରହସ୍ୟ ବାରି ପାରିଥିଲେ ।

କିନ୍ତୁ ବିଦ୍ୟାଳୟରେ ପ୍ରକୃତି ପର୍ଯ୍ୟବେକ୍ଷଣ (Nature Study) ଓ ସଂଖ୍ୟା ବା ଅଂକକୁ ଦୁଇଟି ଅଲଗା ବିଷୟ ଭାବେ ଶିକ୍ଷା ଦିଆଯାଉଛି । ଏଇ ଦୁଇଟି ବିଷୟ ପ୍ରକୃତରେ ଗୋଟିଏ ମୂଳ ନୀତିର ହୋଇଥିବାରୁ ଏହାକୁ ଏକାଠି ଶିଖିବା ଉଚିତ୍ । କାରଣ ପ୍ରକୃତିର ଭିନ୍ନ ଭିନ୍ନ ରୂପ ଓ ଆକାରରେ ସଂଖ୍ୟା କେବଳ ପରିଚୟ ଦିଏ । କିନ୍ତୁ ଆଉ କିଛି ନୂଆ କଥା ଶିଖାଏ ନାହିଁ ।

ଯାହା ହେଉ ପଛକେ, ଗୋଟିଏ ବିଷୟକୁ ଭଲ ଭାବେ ଶିଖି ଚାଲିଲେ ତା'ର ମୂଳନୀତି କୁ ବୁଝିହୁଏ । ସେତେବେଳେ ପ୍ରକୃତି ପର୍ଯ୍ୟବେକ୍ଷଣ ଓ ସଂଖ୍ୟା

କିପରି ଏକ ଓ ଅଭିନ୍ନ, ତାହା ଜାଣି ହୁଏ । କିନ୍ତୁ ଏହାକୁ ଦୁଇଟି ଭିନ୍ନ ବିଷୟ ରୂପେ ଶିକ୍ଷା ଦିଆଯାଉଛି । ଏପରି ଭିନ୍ନ ଭିନ୍ନ ଭାବେ ଏ ବିଷୟଟି ଶିକ୍ଷା ଦିଆ ଯାଉଥିବା ଦେଖିଲେ ମୋର ମନେ ହୁଏ, ଜୀବନକୁ ଯେପରି ଖଣ୍ଡ ଖଣ୍ଡ କରି ଦିଆଯାଉଛି । ଏଇ କଥା ଶ୍ରୀଯୁକ୍ତ ବୀବି (Mr. Beeby) ମଧ୍ୟ ସୂଚେଇଛନ୍ତି । ଯଦି ଟଲ୍‌ଷ୍ଟୟ ଏପରି ଶିକ୍ଷା ଦେଇଥାଆନ୍ତି, ତେବେ ତାହା ମୋ ପାଇଁ ଆଶ୍ଚର୍ଯ୍ୟଜନକ ହେବ ! ମୋ ମତରେ ଦୁଇଟିଯାକ ଅର୍ଥ ବୁଝେଇଲା ପରି ଗୋଟିଏ ବିଷୟ ନାଆଁ ବାଛିବା ଦରକାର । ଅନେକ ଅନ୍ୟାନ୍ୟ ବିଷୟ ସହିତ ଏ ଦୁଇଟିର ନିବିଡ଼ ସମ୍ପର୍କ ଥିଲେ ମଧ୍ୟ ପ୍ରକୃତି-ପାଠ (ପର୍ଯ୍ୟବେକ୍ଷଣ) ଓ ସଂଖ୍ୟା ଜ୍ଞାନ ଗଛଲତା ସହିତ ଯୋଡ଼ି ହୋଇ ଯେପରି ପୂରା ଗୋଟିଏ ବିଷୟର ରୂପ ନେଇଛି, ସେଇଥିପାଇଁ ତାହାକୁ ହିଁ ମୁଁ "ସୁନେଲି ବିଭାଗ" କହିଛି ।

ଏଇ ସୁନେଲି ବିଭାଗର ଭିନ୍ନ ଭିନ୍ନ ଭାଗ ଭିତରେ ସୁନ୍ଦର ଅନୁପାତ ରହିଛି । ଛୋଟ ଭାଗଟିଏ ସହିତ ବଡ଼ ଭାଗଟିଏର ସମ୍ପର୍କ ଥାଏ । ଉଦ୍ଭିଦ ଜୀବନର ଇଏ ଏକ ନିୟମ । କିନ୍ତୁ ଶିଶୁ ଶ୍ରେଣୀର ଛୋଟ ପିଲାଙ୍କୁ ଏଇ ନୀତି ନିୟମର ଧାରଣା ଦେବା ସହଜ ନୁହେଁ । ତେବେ ଏହାକୁ ବେଶ୍ ଭଲ ଭାବରେ ଅନୁଭବ କରିବା ଏବଂ ନିତିଦିନିଆ ପାଠପଢ଼ାରେ ଆଙ୍କିବା ଅତି ସହଜ । ଗଛଡାଳରେ ଆଗରେ ଥିବା କୁନିପତ୍ରଗୁଡ଼ିକ ଯେପରି ପାଖରେ ପାଖରେ ଥାଆନ୍ତି ତାହା ଫର୍ଣ ଜାତୀୟ ଉଦ୍ଭିଦର ପତ୍ର ଆଦି ଗଣନା ଶିଖିବା ପାଇଁ ସୁବିଧା ଦିଅନ୍ତି, ପିଲାଙ୍କୁ ନେଇ ବୁଲି ଗଲାବେଳେ ଏଇ ଗଛ ଗୁଡ଼ିକୁ ଖେଳଣା ପରି ବ୍ୟବହାର କରି ଗଣନା ଶିଖେଇବା ବେଶ୍ ସହଜ ଓ ମଉଜିଆ । ଏଥିରେ ଖର୍ଚ୍ଚ ବି ନାହିଁ । ରାସ୍ତା କଡ଼ରୁ ଗୋଟେଇ ଆଣିଲେ ହେଲା । ଏଇ ବାଟରେ ପ୍ରକୃତିର ନୀତି ନିୟମସବୁକୁ ସବୁ ସମୟରେ ସହଜରେ ଶିଖି ହୁଏ । ପିଲାଏ ହସି ଖେଳି ଶିଖି ପାରନ୍ତି: ପ୍ରକୃତି- ପାଠ ଆଉ ସଂଖ୍ୟା ।

ଯାହା ହେଲେ ବି ଆମକୁ ଶିଶୁ ଶ୍ରେଣୀ ଭିତରକୁ ଯିବା ଦରକାର । ଆମେ 'ବାହାରେ ବହୁତ ସମୟ ରହି ଗଲେଣି । ଏଇ "ବାହାର" (outside) ପଦଟି ଆମର ଜଣ ଜଣକିଆ ସହଜ ପଦ ତାଲିକା ଭିତରେ ଗୋଟିଏ ଟାଣୁଆ ପଦ । ଏଇ ବାହାରେ ବୁଲି,ଚାଲି,ଦେଖି, ଶିଖି ଓ ହାତ ଲଗାଇ ବୁଝିଲା ପରେ ଶ୍ରେଣୀ ଭିତରକୁ ଆସି ଆଙ୍କିବାକୁ ହୁଏ, ଲେଖିବାକୁ ହୁଏ- ସେଇ ହେଉଛି

ଆମ ସୁନେଲି ବିଭାଗର ଅସଲି ବାଟ । ଏଥିରେ ସଂଖ୍ୟା,ପ୍ରକୃତି ଆଉ ତା'ର ସୁନ୍ଦରପଣିଆ ସବୁ ମିଶି ଏକ ହୋଇଯାଇଥାଏ । ସେଥିରେ ମିଶି ରହିଥାଏ ସେ ସବୁର ନୀତି, ନିୟମ ।

ତଥାପି ଶିଶୁଶ୍ରେଣୀ ବଖରାରେ ସଂଖ୍ୟା ଶିଖିବା ପାଇଁ ଯାହା ସବୁ ଉପକରଣ ରହିଛି, ସେଥିରେ ସନ୍ଦେହ କରିବାର କିଛି କାରଣ ନାହିଁ । ଚାରିପାଖିଆ ଜିନିଷଠାରୁ ସମ ଓ ଅସମ ସଂଖ୍ୟା ଜାଣିବାକୁ ଅନେକ ଉପକରଣ ଏଠାରେ ଅଛି । କିନ୍ତୁ ଭଲ ଧାରଣା ମିଳେ "ବାହାରେ" । ଗଛଲତାର ପତ୍ର ସଜେଇ ହୋଇଥାଏ । କେଉଁଠି ଠିକ୍ ବିପରୀତ ଦିଗରେ ଦୁଇଟି ପତ୍ର ତ କେଉଁଠି ସମକୋଣ ଗଢି ବଢିଥାଆନ୍ତି । ଶିଶୁ ଶ୍ରେଣୀର କେତେକ ଉପକରଣରେ ଏକ କ୍ରମ ଥାଏ । କିନ୍ତୁ ଉଦ୍ଭିଦ ଜଗତ ପରି ତ ସୁନ୍ଦର ନୁହେଁ । ଭିନ୍ନ ଭିନ୍ନ ଗଛଲତାର ପତ୍ର ଅଲଗା ଅଲଗା ଢଙ୍ଗରେ ସଜେଇ ହେବା ସହ ତାଳର ଗଣ୍ଠିଗୁଡିକ ମଧ ଦୁଇ-ତିନି-ପାଞ୍ଚ-ଆଠ-ତେର ଇତ୍ୟାଦି ସଂଖ୍ୟକ ହୋଇଥାଏ । ଗୋଟି, ଗୋଲି କିମ୍ବା ମାଳି ଗୁନ୍ଥିଲା ପରି, ଗଛଲତାର ଏଇ ପତ୍ର ସଜ୍ଜାକୁ ଦେଖି ଦୁଇ, ତିନି ଆଦି ଶିଖିବା ଏବଂ ପରେ ଶ୍ରେଣୀରେ କଳାପଟାରେ ସେପରି ଦୁଇ ଦୁଇଟା, ତିନୋଟି ଏବଂ ପରେ ଦୁଇ, ତିନି ଗୁଣ ଇତ୍ୟାଦି ଖୁସିରେ ଶିଖିବା ଅଧିକ ସହଜ । ପିଲାଙ୍କ ପାଇଁ ବେଶ୍ ମଉଜିଆ ହୁଏ ।

ସୂତାରେ ଗୁନ୍ଥି ସେପରି ପତ୍ର ସଜ୍ଜା ଅନୁସାରେ ଦୁଇଟି, ତିନୋଟି ଆଦି ଏବଂ ତାହାର ଦୁଇ ତିନି ଗୁଣ ଆଦି କରି ଶିଖିବାରେ ପିଲାଏ ଅଲଗା ଉତ୍ସାହ ପାଇଥାନ୍ତି । ଏହାର ସବୁଠାରୁ ଅଧିକ ଉଦ୍ଦୀପନା ମିଳେ ସେଇ ପତ୍ର-ସଜ୍ଜାରୁ ପହିଲେ ଦଶଟି, ତା' ପରେ ନଅଟି,.... ଆଠଟି....ସାତଟି...ଓ ସବା ଉପରେ ଚୂଳପରି 'ଏକ' ସଜେଇ ତା'ର ଚିତ୍ର ଆଙ୍କି ଶିଖିବା । (ଲେଖିକା ଫର୍ଣ ଜାତୀୟ ଉଦ୍ଭିଦର ଉଦାହରଣ ନେଇଛନ୍ତି ।)

ଛୋଟ ଛୁଆଙ୍କୁ ସଂଖ୍ୟା ଶିଖେଇବାକୁ ଆପଣ ନିଜ ହାତ ଓ ଆଙ୍ଗୁଠି ଆଙ୍କି ପାଞ୍ଚ ଯାଏଁ ଶିଖେଇ ପାରିବେ । ପାଦ ଆଙ୍ଗୁଠି ମଧ ଗଣି ପାରନ୍ତି ଅଥବା ଫୁଲର ପାଖୁଡା ଗଣି ପାରନ୍ତି । ଫୁଲକୁ ଗଛରୁ ନ ତୋଳି, ବାହାରେ ବୁଲି, ପାଖୁଡା ଗଣି ଶିଖି ହୁଏ । ଆଉ ଟିକିଏ ବଡ ହେଲେ ସେଇ ଫୁଲକୁ ନେଇ ଅଙ୍କ କଷା ଯାଇପାରେ । କିନ୍ତୁ ଏ ସବୁ ବାହାରେ ବୁଲି ଏବଂ କିଛି ହେଲେ ନଷ୍ଟ କରି

ଶିଖିବା ଦରକାର । ସୁନ୍ଦର ପ୍ରକୃତିକୁ ଅନୁଭବ କରିବା ସହିତ ଫୁଲର ବାସ ମଧ୍ୟ ଶିଖିବା କାମକୁ ସରସ କରେ ।

ତିନି ଶିଖିଲାବେଳେ ତିନି ଗୋଟି ଲେଖାଏଁ ପତ୍ର ଥିବା (ଆମ ଦେଶରେ ବେଲ ଗଛ ଏହାର ଭଲ ଉପକରଣ । କାରଣ ତିନୋଟି ଉପ-ପତ୍ରକୁ ନେଇ ଅଧିକ ବେଲ ପତ୍ର ଦେଖାଯାଏ ।) ଗଛ ଅଧିକ ଉପକାରୀ ।ପଦାରେ ବୁଲି ଏହା ଶିଖିବାରେ ଅତି ମଉଜିଆ । ଏଥିରୁ କିଛି ଶ୍ରେଣୀକୁ ମଧ୍ୟ ଆଣି ଶିଖାଇ ହୁଏ । ଛୋଟ ପିଲାଏ ତିନି ଶିଖିଲାବେଳେ, ତାଙ୍କଠାରୁ ବଡ ପିଲାଏ ତିନି ସଂଖ୍ୟାର ଗୁଣିତକ ବା ଗୁଣନ ଖନ୍ଦା ଶିଖି ପାରିବେ; କିନ୍ତୁ ଉଡି ଯାଉଥିବା ଚଢେଇ ଦଳକୁ ଦେଖି ଏହା ଶିଖିବାରେ ଅଧିକ ମନୋଯୋଗ ଲୋଡା । ଅଳ୍ପ ସମୟ ଭିତରେ ସେମାନଙ୍କୁ ଦେଖି, ନିଜ ମନରେ ସେଇ ଚିତ୍ରକୁ ଧରି ରଖି ଶିଖିବାକୁ ପଡେ । ପରେ ଚିତ୍ର ଆଙ୍କି, କିମ୍ୱା ରଙ୍ଗ ଦେଇ କିମ୍ୱା ମାଟିରେ ଗଢି ସଂଖ୍ୟା ଶିଖିବା ପୂରା ହୁଏ ।

ଆମ ମନର ଯୋଜନା ଅନୁସାରେ ସବୁବେଳେ କାମ ହୋଇପାରେ ନାହିଁ । ବର୍ଷା ଋତୁରେ ପାଗ ଭଲ ଥିଲେ ଆମେ ସଭିଏଁ ନଈ କୂଳକୁ ଯାଉ । ଆମେ ସେଇଠି ଖେଳୁ । ଝିଅ କେତେ ଜଣ ବୋହୂ ସାଜି ବୋହୂ ବୋହୂକା ନାଚ-ଗୀତ ବି ଜମି ଉଠେ । ପତ୍ର ପିନ୍ଧି ଦି' ଜଣ ସେଥିରେ ଭାଗ ନେଇଥାନ୍ତି । ଖୋଲା ଜାଗାରେ ପ୍ରକୃତିକୁ ଦେଖି ଚିହ୍ନି ହୁଏ- ଚାରିଆଡେ ରଙ୍ଗ କିପରି ବଦଳି ଚାଲିଛି । ସହଜ ହୁଏ ଶିଖିବାକୁ- ଶରତ ଋତୁ ।

ପାଖରେ ଥିବା ପିଲାଙ୍କୁ ଗଣନା କରୁ । ପାଖରେ ନଥିବା ପିଲାଙ୍କ କଥା ଉଠେ । ଦୁଷ୍ଟାମୀ ଯୋଗୁଁ ସ୍କୁଲକୁ ପଠେଇ ଦିଆଯାଇଥିବା ପିଲାଙ୍କ ହିସାବ ହୁଏ । ତା' ପରେ ଫେରିଲା ବାଟରେ ଏଣେତେଣେ ବୁଲୁଥିବା ପିଲା ମିଶନ୍ତି । ଏ ସବୁକୁ ନେଇ ମିଶାଣ, ଫେଡାଣ ଶିଖି ହୁଏ । ଗତ ଥର ବୁଲି ଯାଇଥିଲାବେଳେ ଆମେ ସଭିଏଁ ଗୋଟିଏ ଗୋଟିଏ ଛୋଟ ଡାଳ ନେଇ ସେଥିର ପତ୍ର ଗଣିଥିଲୁ: ଛଅରୁ ସତର ଯାଏଁ ପତ୍ର ସେ ଡାଳଗୁଡିକରେ ରହିଥିଲା । ତା' ପରେ ସେଠାରେ ଲଗା ଯାଇଥିବା ଗଛକୁ ଛୁଇଁ ଶହେ ଯାଏଁ ଗଣିବାକୁ କହିଥିଲି । ଶେଷରେ ଆମେ ନଈ କୂଳର ବାଲିରେ ବସିଗଲୁ । କାଠିରେ ସେଇ ସଂଖ୍ୟାଗୁଡିକୁ ବାଲି ଉପରେ ଲେଖିଥିଲୁ । ଏ ସବୁ କାମ ଖୁସିରେ କରିବାକୁ ପିଲାଏ ଚାହୁଁଥିବା ହେଉଛି ଅସଲ

କଥା । ଫଳରେ ଶିକ୍ଷା ଦେବା ସହଜ ହୁଏ । ଖେଳ ପାଇଁ ମଧ୍ୟ ପିଲାଏ ସେତିକି ଆଗ୍ରହୀ । ସାପ ଓ ସିଡି ଖେଳ, ତଳ-ଉପର ଓଜନ ଖେଳ ଆଦି ସହିତ ଶୀତଦିନିଆ ବରଫ ଉପର ଖେଳ ପିଲାଙ୍କ ମନଲାଖି । ଏସବୁ ସହିତ ବରଷିଆ ପିଲେ କିଛି ଅଙ୍କ କଷି ନିଅନ୍ତି ଆଉ ଶହେ ଯାଏଁ ଲେଖି ଶିଖନ୍ତି । ମଝିରେ ମଝିରେ ପୁରୁଣା କଥା ମଧ୍ୟ ପଡେ । ପିଲାଏ ଶିଲିଂ ଆଉ ପେନି କଥା ବି ପଚାରନ୍ତି । ( ଆମ ଦେଶର ଟଙ୍କା ଓ ଅଣା କଥାବି ଉଠେ ।) ଶିଶୁ ଶ୍ରେଣୀରେ ଏ ସବୁ ଥାଏ । କାରଣ ପିଲାଏ ଏହା ଜାଣିବା ଦରକାର । ତାଙ୍କ ପୁରୁଣା ବିଷୟ;ଏମାନଙ୍କୁ ତ ମୁଁ ପ୍ଲାଷ୍ଟିକ୍ ଯୁଗର ପିଲା ବୋଲି କହେ । ତେବେ ଏଇ ପିଲାଙ୍କ ମନ ତାଙ୍କର ଅସଲି ମଣିଷର ରୂପରେ ଗଢି ହେବା ଆଗରୁ, ପ୍ରକୃତି ସହିତ ନିକଟ ସଂପର୍କ ରଖି ତ ।'ର ପ୍ରଭାବରେ କିଛିଟା ପ୍ରାକୃତିକ ହୋଇ ପାରିବ । ବଡ ହେଲା ବେଳକୁ ବଢି ଉଠୁଥିବା ସାମାଜିକତା ଓ ସମ୍ମାନବୋଧ ଏଇ ପିଲାଙ୍କ ପାଇଁ ଏବେ ଦୂରରେ । ଏବେ ସମୟ ଅଛି-ପ୍ରକୃତି ପ୍ରଭାବରେ ନିଜକୁ ଗଢ଼ିବାର ସୁଯୋଗ । ତେଣୁ ଆମେ ଲମ୍ବା ବାଟ ଚାଲିଚାଲି ନଈକୂଳକୁ ବୁଲିଯାଉ । ଏଇ ବୁଲିବାରେ ସବୁ କିଛି ସମ୍ଭବ । ଏହା ବେଶ୍ କୋଳାହଳପୂର୍ଣ ଆଉ ସରସ । ସେଇ ଅନୁଭୂତିରୁ ଲେଖିବା, ଆଙ୍କିବା ଆଉ ଆଲୋଚନା କରିବା କାମ ଆସିଯାଏ । ସେଇ ହେଉଛି ସୁନେଲି ବିଭାଗ, ଯାହାଠାରୁ ଲେଖିବା, ପଢିବା, ଆଙ୍କିବା ଓ ଆଲୋଚନା କରିବାକୁ ଅଲଗା କରି ହୁଏ ନାହିଁ । 'ତିନି ବତକର କାହାଣୀ', ଛବି ଅପେକ୍ଷା ସତ ତିନୋଟି ଚଢେଇର ଉଡାଣ ଛବି ମନକୁ ସହଜରେ ଛୁଏଁ ।

ମୁଁ ଭାବୁଛି, ଅଣ୍ଡା ଖୋଳପାରେ ମଂଜି ଗଜା କରାଇବା, ବୋତଲ କିମ୍ବା ଟିଣରେ ପିଆଜ, ଫୁଲ ଆଦି ଗଛ ବଂଚେଇବା ଆଦି ପରୀକ୍ଷାକୁ ଶ୍ରେଣୀ ଘରେ କରି ଆନନ୍ଦ ମିଳେ ନାହିଁ । ପ୍ରକୃତରେ ଅଣ୍ଡା ଖୋଳରେ ଅଣ୍ଡା, ଟିଣରେ ଆଚାର, ବଗିଚାରେ ପିଆଜ ଇତ୍ୟାଦି ସବୁ ଗଛ ଆଉ ବାଡ କଡରେ ଫୁଟିଥିବା ଫୁଲ ଆମକୁ ଭଲ ଲାଗେ । ମଂଜି ଗଜୁରିବା ଦେଖିବାକୁ ବାହାରେ ତ ଲକ୍ଷ ଲକ୍ଷ ସୁବିଧା ରହିଛି । ଛବି ଦେଖି ଶିଖିବାକୁ ମୋତେ ଭାରି ଖରାପ ଲାଗେ । ଯେଉଁ ସବୁ ଜିନିଷ ଆଡକୁ ପିଲାଙ୍କ ଆଗ୍ରହ ଆପେ ଆପେ ଯାଇଥାଏ, ଜିଅନ୍ତା ପ୍ରକୃତି ମୋତେ ଭଲ ଲାଗେ । ବାହାରେ ଥରେ ବୁଲି ଆସିଲା ପରେ ସିଧାସଳଖ

କାଗଜରେ ସେଇ ବଣ ପାହାଡର ଛବି ଆଙ୍କି ସେଥିରୁ ଗଛ ସବୁ ଗଣି ଲେଖି ନିଆଯାଇପାରିବ ତା' ପରେ ତା'କୁ ଆଗଥର ପାଇଁ ରଖି ଦିଆଯାଇପାରେ । ମୋତେ ଭଲ ଲାଗେ, ଏଇ ଅଳ୍ପ ସମୟର ଆବେଗ । ସେଇ କ୍ଷଣିକ ଆବେଗ ବହୁତ କିଛି ଶିଖାଏ ।

ସ୍କୁଲରେ ଆମେ ଅଧିକ ସମୟ ଦେଉ ନା' । ଆମର ପୁରୁଣା ଭାବନାକୁ କାଗଜରେ ଆଙ୍କି ରଖି ଦେଇଥାଉ । ସେଗୁଡ଼ିକ ଦରକାର ଅନୁସାରେ ଥରକୁ ଥର କାମରେ ଲାଗେ, -ବାସି ରୁଟି ପରିକା । ମଣିଷ ମନର ଭାବନା ପୁଣି ଦେଖା ଦେଲାବେଳକୁ ସେଇ ପୁରୁଣା ଢଙ୍ଗରେ ନଥାଏ । ବଡ଼ ବଡ଼ିଆଙ୍କ ମନ ବି ସେଇପରି । ଏକାପରି ଭାବିବାକୁ ଚେଷ୍ଟା କଲେ ବି ବଦଳି ଯାଇଥିବା ମନର ଅବସ୍ଥା ଓ ରୁଚି ଅନୁସାରେ ପୁରୁଣା ଭାବ ବା ଧାରଣାଟି କିଛିଟା ଭିନ୍ନ ରୂପ ନେଇଥାଏ । କିନ୍ତୁ ଜାଣିବା ଆଗ୍ରହରୁ ଧାରଣାଗୁଡ଼ିକ ଜାତ ହୋଇଥିଲେ ମଣିଷ ମନରେ 'ଭାବ' ଅଭାବ ହୁଏ ନାହିଁ । ତେଣୁ ଆମେ ପୁରୁଣା କାଗଜ ଓ ପୁରୁଣା ଛବିଗୁଡ଼ିକୁ ଫିଙ୍ଗି ଦେବା, ଆଉ ପୁରୁଣା ଧାରଣାଗୁଡ଼ିକୁ ମଧ୍ୟ ଭୁଲିଯିବା।ଏହା ଅଧିକ ସରଳ ଓ ନିର୍ମଳ ।

ଆମ ଅଂଚଳର ପକ୍ଷୀ : ଘର ଚଟିଆ, ବଣି, ବତକ, ହଂସ, କୁକୁଡ଼ା, କାଉ, କପୋତ....

ସ୍କୁଲକୁ ଆଣିଥିବା କୀଟପତଙ୍ଗଙ୍କ ଭିତରୁ ଏଗୁଡ଼ିକ ଘର ଭିତରେ ରହିବାକୁ ପସନ୍ଦ କରନ୍ତି ନାହିଁ: ଝିଣ୍ଟିକା, ସଁବାଳୁଆ, ଝିଙ୍କାରୀ, ପ୍ରଜାପତି, ଗୋବର ପୋକ.....

ସ୍କୁଲକୁ ନ ଆଣି ଆପେ ଆପେ ଆସିଥିବା କୀଟ ପତଙ୍ଗ : ବିରୁଡ଼ି, ଉକୁଣି, ମହୁମାଛି, ମାଙ୍କଡ଼ସା .......

ଥରେ, ଶରତ ଋତୁର ଆରମ୍ଭ ସମୟରେ, ଗୋଟିଏ ଗଛ ଉପରୁ ଆମକୁ ରାଜା-ପ୍ରଜାପତିର ସଁବାଳୁଆ ମିଳିଥିଲେ । ଏହା କିପରି ଭିନ୍ନ ଭିନ୍ନ ଅବସ୍ଥା ଦେଇ ପ୍ରଜାପତି ହୁଏ, ସେ କଥା ଲକ୍ଷ୍ୟ କରି ଦେଖିବାକୁ ଇଚ୍ଛା ଥିଲା । କିନ୍ତୁ ଆମର ମାଓରି ପିଲାଙ୍କ ଭିତରୁ କେତେ ଜଣ ଯୋଦ୍ଧାଙ୍କ ଆକ୍ରମଣ ଯୋଗୁଁ ପ୍ରଜାପତି ବାହାରି ପାରିଲେ ନାହିଁ; କିନ୍ତୁ ଛୋଟ ପିଲାଙ୍କ ଶ୍ରେଣୀରେ ପ୍ରଜାପତିମାନେ ବାହାରି ପାରିଲେ ।



କିଛି ବିରୁଡ଼ି ଆଣି ରଖିବା ଦିନଠାରୁ ମୁଁ ଭାବୁଛି, ଆମ ଶିଶୁ ଶ୍ରେଣୀର ପିଲା ଏବଂ କୀଟ-ପତଙ୍ଗ ଜଗତ ଭିତରେ ସହାନୁଭୂତିର ଅଭାବ ବୋଧହୁଏ ରହିଛି । ଗଲା ସପ୍ତାହରେ ଆରାପଟା (Arapata)କୁ ଟାଇଫଏଡ୍ ଜ୍ୱର ହୋଇଥିଲା । ଇଂଜେକ୍‌ସନ୍ ନେବାକୁ ସେ ଖେଳ ପଡିଆ ଦେଇ ଯିବାବେଳେ ତା'କୁ ବିରୁଡିଟିଏ ମାରିଦେଲା । ସେ ସାଙ୍ଗେ ସାଙ୍ଗେ ନର୍ସଙ୍କ ପାଖକୁ ଗଲା । କିନ୍ତୁ ଇଂଜେକ୍‌ସନ୍ ବଦଳରେ ବିରୁଡି ଆଘାତର ଚିକିତ୍ସା ପାଇଁ । ତା' ଦେହରେ ଇଂଜେକ୍‌ସନ୍ ଛୁଞ୍ଚି ଫୋଡ଼ିବାକୁ କେହିହେଲେ ବାଧ୍ୟ କଲେନାହିଁ । ସେ ଦିନ ସକାଳ ଓଳିଏ କାମ ବନ୍ଦ ରହିଲା । ଆଉ ଦିନେ ଶୃଙ୍ଖଳା ପାଇଁ ଜୋ' (Joe) କୁ ମୁଁ ଶ୍ରେଣୀ ବାହାରେ ଠିଆ କରାଇଥିଲି । ହେଲେ, ତା'ର ରଡି ଶୁଣି ଆମେ ବୁଝିଗଲୁ ଯେ ବିରୁଡିମାନେ ଆମ ଶୃଙ୍ଖଳା ରକ୍ଷା କାମକୁ ପୂରା କରି ଦେଇଛନ୍ତି । ଆମେ ପୁଣି ତା'କୁ ଶ୍ରେଣୀ ଭିତରକୁ ନେଇ ଆସିଲୁ । ଏହାପରେ ଆଉ କିଛି ସେପରି ଘଟି ନାହିଁ । ତେବେ ଏଇ ସବୁ ଘଟଣା ଉପରେ ବେଶ୍ ଉତ୍ତେଜନା ସହିତ

ବିରୁଡି ଓ ସେମାନଙ୍କ ସ୍ୱଭାବ ସମ୍ବନ୍ଧରେ ଆଲୋଚନା ଚାଲିଲା । ସେଇ ଆବେଗରେ କିଛି ଚିତ୍ର ଆଙ୍କିବା ହୋଇଗଲା ।

ଭାବ ଫୁଟାଇ ନାଚିବା କଳା- କଉଶଳ ଟିକକ ଆମକୁ ପକ୍ଷୀମାନଙ୍କର ଦାନ ବୋଲି କୁହାଯାଇପାରିବ । ଆମର ଏଠାରେ.... ମେଗ୍‌ପାଇ (Magpie) ନାଚ ଓ...ଲାର୍କ (Lark) ନାଚ ରହିଛି । ଆମେ ଅବଶ୍ୟ ଲାର୍କ୍ ଦେଖି ନାହୁଁ । ଅନ୍ୟ ସ୍ଥାନରେ ଲାର୍କ୍‌ଥିବା କଥା ଆମେ ଶୁଣିଛୁ । ତେବେ ଅତି ଉଚ୍ଚରେ ଉଡିବା ଓ ଉଚ୍ଚ ସ୍ୱରରେ ଗାଇବା କଥା ଆମକୁ କେହି କହିନାହାନ୍ତି । ଗଛ ପତ୍ରଝଡା ଦେଲାବେଳେ ଆମକୁ ନାଚର ଅନେକ ଠାଣି ଯୋଗେଇ ଦିଏ । ସେଥିରୁ କେତେକ ଚଳଣି ଅନୁସାରେ ତ ଆଉ କେତେକ ନୂଆ ଢାଞ୍ଚାର । ସେଇପରି ଶିଖାନ୍ତି ମାଛର ଡେଣା (Fin) ଚଳେଇବା, ଆଉ ବେଙ୍ଗମାନେ । ଥରେ ପର୍ଯ୍ୟବେକ୍ଷଣ କରି ଶିଖିବାକୁ ଆମେ ଶ୍ରେଣୀକୁ କିଛି କାଦୁଅ, ପାଣିଦଳ ସହିତ କିଛି ବେଙ୍ଗ ଗୋଟିଏ ଡବାରେ ଆଣିଥିଲୁ । ଏଥିରୁ ମଧ୍ୟ ମୋ ଶ୍ରେଣୀର ଟିକି ଟିକି ଯୋଦ୍ଧାମାନେ ଅତି ଆଦର ଦେଖେଇ. ଅତି କମ୍ ସମୟ ଭିତରେ ସେମାନଙ୍କର ଆୟୁଷ ସାରି ଦେଲେ । ଏଠାକାର ବେଙ୍ଗଗୁଡିକ ଭଲ ଡେଇଁ ପାରନ୍ତି । କେଜାଣି କାହିଁକି ବାହାରେ ଥିବା ଥଣ୍ଡା ପାଣି ଅପେକ୍ଷା ସେମାନେ ଆମ ମେସିନ୍ ପେଡି ଓ କୋଇଲା ଡବାକୁ ଅଧିକ ଆଦର କରନ୍ତି । ଆଉ ବେଳେବେଳେ କାଦୁଅ ବାଲି କିମ୍ୱା ପୁସ୍ତକଗୁଡିକ ସହ ମିଶି ରହିଥାନ୍ତି । ଏଇ ଅତିଥିମାନଙ୍କ ଭିତରୁ କେବଳ ଶାମୀଗେଣ୍ଡା (Sammy snail) ଚଲାକିରେ ଆମ ହାତପାଆନ୍ତା ନ ହୋଇ ଛାତର ରୁଅକୁ ଜାବୁଡି ଧରିଥାଏ । ଆମ ଶ୍ରେଣୀରେ ଗୋଟିଏ ଦୁଇଟି ଏଣ୍ଡିପୋକ କୋଷା ଥିଲା । ବିଲେଇଟିଏ ଶ୍ରେଣୀ ଭିତରକୁ ପଶି ଆସୁଥିଲେ ବି ଆମ ସାଥିରେ ଅଧିକ ସମୟ ରହୁ ନଥିଲା । ଆଉ ସେଇ ଗଞ୍ଜାକୁକୁଡାଟି ପୁଣି କେବେ ଆସିବ ବୋଲି ମୁଁ ଭାବୁନି ।

ଶିଶୁ ଶ୍ରେଣୀ ଭିତରକୁ ବେଳେବେଳେ ବୁଲି ଆସି ଯାଉଥିବା ଅତିଥିମାନେ ଥିଲେ; ଶାମୀ ଗେଣ୍ଡା, ଜିଂଜର ଗଂଜା କୁକୁଡା, ବିଲେଇ, ମଙ୍ଗୁର କୁକୁର, ଗୋଟିଏ କାପ୍ତା, ଗୋଟିଏ ମାଙ୍କଡ ।

ପିଲାଏ ଦେଖିବା ପାଇଁ ଆମେ କେତେକ ସୁନା ରଙ୍ଗର ମାଛ ରଖିଥିଲୁ । ସେମାନେ ବଡ଼ ପିଲାଙ୍କ ଶ୍ରେଣୀ ଘରେ ଥିଲେ । ଶିଶୁମାନଙ୍କ ପାଇଁ ଏହା ଏକ

ବଡ ଆକର୍ଷଣ ଥିଲା । ମାଛ ଥିବା ହାଣ୍ଡିଟି ଝରେଇବାରୁ ମାଛଗୁଡିକୁ ଆମେ ଗୋଟିଏ ଖୋଲା ପାତ୍ରରେ ଲୁଗାଧୂଆ ଘରେ ରଖିଦେଇଥିଲୁ । ଏଠାରେ ଆପେ ଆପେ ପାଣି ବଦଳି ପାରିବ ବୋଲି ଭାବିଥିଲୁ । କିନ୍ତୁ ଗୋଟେ ସଫେଇ ଦିନ ସେଥିରେ କିଛି ସାବୁନ ପଡିଗଲା ! ସବୁ ସଫା ହୋଇଗଲା !!

ସେ କେତୋଟି ବର୍ଷ ଭିତରେ ମୁଁ ଅନେକ ଚିତ୍ର ସଂଗ୍ରହ କରିଛି । ସେଗୁଡିକ ବିଭିନ୍ନ ବିଷୟରେ: କେତେକ ପଶୁମାନଙ୍କର , କେତେକ ପକ୍ଷୀ ଚିତ୍ର, ତା' ସହିତ କେତେକ ନାନା-ବାୟା ଗୀତ ଓ ଭିନ୍ନ ଭିନ୍ନ ଋତୁକାଳୀନ ଛବି । ମୁଁ ସେଗୁଡିକୁ ମଲାଟ ଦେଇ ଅଲଗା ଅଲଗା ମୁଣିରେ ରଖି ଦେଇଛି । ଏଗୁଡିକ ସବୁ ଦିନର ସମ୍ବଳ । ସେଗୁଡିକ ଆମର ଦୃଷ୍ଟିକୁ ବିସ୍ତାରିତ କରି ଦିଅନ୍ତି । ସେଥିରୁ ଗୋଟିଏ ମୁଣିରେ ପ୍ରାୟ ତିରିଶିଟି କେବଳ ଭାଲୁ ଚିତ୍ର ଅଛି । 'ତିନି ଭାଲୁ କାହାଣୀ' ପଢେଇଲା ବେଳେ ଏହା ଦରକାର ହୁଏ । ଶରତ ଋତୁର ଚିତ୍ର, ଘୋଡାମାନଙ୍କ ଚିତ୍ର, ପକ୍ଷୀମାନଙ୍କ ଚିତ୍ର ଓ ବିଲେଇମାନଙ୍କ ଚିତ୍ର । ଜିଅନ୍ତା ଜୀବ ନ ମିଳିଲେ ପର୍ଯ୍ୟବେକ୍ଷଣରେ ସେସବୁ ଚିତ୍ର ବ୍ୟବହାର ହୁଏ । ନଚେତ୍ ଜିଅନ୍ତା । ଜୀବଜନ୍ତୁ ହିଁ ଦରକାର, ଯିଏକି ଲାତ ମାରୁଥିବେ, ଘୋଷାରୁ ଥିବେ, ଗୀତ ଗାଉଥିବେ ଓ ଦଂଶନ କରୁଥିବେ ।

ଏଇ ସୁନେଲି ବିଭାଗଟିକୁ ମୁଁ ଉତ୍ପାଦନ ସମୟ (Output period) ର ଉପର ବେଳା ୧ ଘଣ୍ଟା ଠାରୁ ୨ଘଣ୍ଟା ଯାଏଁ ରଖିଥାଏ ତ କେତେବେଳେ ବାହାରେ ବୁଲି ଆସିବାରେ ପୂରା ସମୟ ଲଗାଏ ତ କେତେବେଳେ ବାହାରେ ସଂଖ୍ୟା ଶିଖେଇ ଶ୍ରେଣୀକୁ ଆସି ଲେଖିବା ପାଇଁ ଲଗାଏ;କେତେବେଳେ ତାହାର ଅଧା ସମୟରେ ଏହି କାମ କରିଥାଏ । ଅନେକଟା ନିର୍ଭର କରେ ମାନସିକ ଅବସ୍ଥା, ପାଗ ଆଉ ପିଲାଙ୍କ ଉପସ୍ଥାନ ଉପରେ । କିନ୍ତୁ ଚିତ୍ର ଦେଖିବାର ସମୟ ହେଉଛି: ଏଗାର ଘଣ୍ଟାରୁ ବାର ଘଣ୍ଟା ଭିତରେ ଅସଲ ଶିକ୍ଷାଦାନ (intake period) ସମୟରେ ।

ସାଧାରଣ ଅଙ୍କ ଶିକ୍ଷାଦାନ ପାଇଁ କାର୍ଯ୍ୟ ନିର୍ଘଣ୍ଟରେ ସମୟ ରଖା ଯାଇଛି । ଏଇ ସମୟଟି ସକାଳ ଓଳିରେ ବେଶ୍ ରଚନାତ୍ମକ ହୁଏ ।

ପ୍ରତ୍ୟେକ ଶିକ୍ଷକ କମ୍ ସମୟ ଭିତରେ ବିଭିନ୍ନ ଋତୁକାଳୀନ ଗୀତ, ପଶୁପକ୍ଷୀ ଓ ଜଳବାୟୁ ସମ୍ବନ୍ଧୀୟ କାହାଣୀ କବିତା ସଂଗ୍ରହ କରି ନିଅନ୍ତି ।

*(ସେଇ ସଂଗ୍ରହର ଉଦାହରଣ ଦେଇ ଲେଖିକା ଇଂରାଜୀ ସାହିତ୍ୟରୁ ବିଭିନ୍ନ ଋତୁ ଉପରେ ଲେଖା ଯାଇଥିବା ସରଳ ଶିଶୁ ଗୀତ, କାହାଣୀ ଓ କବିତାର ତାଲିକା ଦେଇଛନ୍ତି । ତା' ସହିତ ଋତୁକାଳୀନ ଫୁଲ, ଫଳ, ଆଦି ବି ଲେଖିଛନ୍ତି ।)*

*..........ଅନୁବାଦକ*

ସୁନେଲି ବିଭାଗର ସୁନ୍ଦର କାହାଣୀ ହେଉଛି ତାହାର ଅଭିଜ୍ଞତା ଓ ଲିଖିତ ବିବରଣୀ । ଏଥିରେ ବୟସ, ସମୟ କିମ୍ବା ପାଠ-ପଢ଼ାର ପରିମାଣକୁ ନେଇ କୌଣସି କଟକଣା ଜାରି କରିବା ପାଇଁ ବିଭାଜନ କରାଯାଇପାରେ ନାହିଁ । ଭଲ ଭାବେ ଭାବି ଚିନ୍ତି ଯୋଜନା ଅନୁସାରେ ଅଂକ ଶିକ୍ଷା ଓ ପ୍ରକୃତି ପର୍ଯ୍ୟବେକ୍ଷଣ ଶିକ୍ଷା ଦେଲେ, ସେଇ ଜ୍ଞାନ ପିଲାର ହୃଦୟକୁ ଭେଦକରେ ଓ ଗଭୀର ଭାବେ ପ୍ରଭାବିତ କରେ । ଫଳରେ ଜ୍ଞାନ ଅର୍ଜ୍ଜନ ଏକପାଖିଆ ନ ହୋଇ ସବୁ ବିଷୟର ଧାରଣା ଦୃଢ଼ ହୁଏ ବୋଲି ମୁଁ ଭାବୁଛି । ମୁଁ ଏହା ଭଲ ଭାବେ ଅନୁଭବ କରିଛି । ମୋର ବିଶ୍ୱାସ, ଶିଶୁ ଶ୍ରେଣୀରେ ଅଙ୍କ ଓ ପ୍ରକୃତି ପର୍ଯ୍ୟବେକ୍ଷଣ ଏକାଠି ଏଇପରି ଭାବରେ ଶିକ୍ଷା ଦେଲେ, ସୁନେଲି ବିଭାଗ ପିଲାଙ୍କୁ ଏପରି ଭାବରେ ଗଢ଼ି ପାରିବ ଯେ, ସେମାନେ ସେଇ ସ୍ପଷ୍ଟ ଧାରଣା ବଳରେ ଅନ୍ୟ ସବୁ ବିଷୟ ଶିଖିବାରେ ନିଜକୁ ନିଜେ ସାହାଯ୍ୟ କରି ପାରିବେ ।





## ତାଳ-ଲୟ

### ''ଏକ ନିସ୍ତବ୍ଧ କେନ୍ଦ୍ର''

- ଟି.ଏସ୍. ଇଲିଅଟ୍

(ଇଂରାଜୀ ଭାଷାରେ ''ଟୋନ୍'' ଶବ୍ଦ ଶିକ୍ଷାପଦ୍ଧତିରେ ଯେପରି ଭାବରେ ବ୍ୟବହୃତ ହୋଇଛି, ତାହାର ଓଡ଼ିଆ ପ୍ରତିପଦ ଦେବା ସମ୍ଭବ ନୁହେଁ । ମଣିଷର ମଣିଷ-ପଣିଆ ଓ ବ୍ୟକ୍ତିତ୍ୱ ପରି, ଏହି ଶବ୍ଦ ଶିକ୍ଷକ, ଶିକ୍ଷାର୍ଥୀ ଓ ଶିକ୍ଷାୟତନର ଚେତନା, ତାଳ-ଲୟ, ସାମଗ୍ରିକ ଉନ୍ନତି ଇତ୍ୟାଦିକୁ ସୂଚାଏ । ତେଣୁ ଏଠାରେ 'ସଚେତନତା' ଶବ୍ଦ ବ୍ୟବହାର କରାଯାଇଥିଲେ ହେଁ, ତାହା ପୂର୍ଣତଃ ଅର୍ଥବୋଧକ ନୁହେଁ । ......ଅନୁବାଦକ)

ସଚେତନତା (Tone) ହେଉଛି ସାଧନ ବ୍ୟବସ୍ଥାର ଏକ ଅଂଶ ଏବଂ ଏହାକୁ ହାସଲ କରାଯାଇପାରେ ।

ଏହା କେବଳ କୌଣସି ଶ୍ରେଣୀକକ୍ଷ ସହିତ ବଂଧା ନୁହେଁ । ଏହା ଏପରି ଏକ ବ୍ୟବସ୍ଥା ଯାହା ଏକାଠି କାମ କରୁଥିବା ଦଳେ ଲୋକ, ଶିଶୁ ଶ୍ରେଣୀଠାରୁ ପୂରା ଶିକ୍ଷାବିଭାଗ ଏବଂ ବୃହତ୍ତର ଲୋକ-ସମନ୍ୱୟଠାରୁ ବହୁ ଦେଶ ପ୍ରତି ମଧ

ଏକା ପରି ପ୍ରଯୁଜ୍ୟ । କାରଣ: ଏ ସବୁର କାର୍ଯ୍ୟକାରିତା ଭିତରେ ସଚେତନତା ହିଁ ମୂଳ ଚାବି-କାଠି । ଗୋଟିଏ ଗୋଷ୍ଠୀର ବାହାର ଆକାର ପ୍ରକାରରେ ମଧ୍ୟ ଏହା ପ୍ରତିଫଳିତ ହୋଇଥାଏ ।

ତେବେ ଏଇ ବ୍ୟବସ୍ଥା ଦୁଇ ପ୍ରକାରର । ଆମେ କେଉଁଟି ଦରକାର କରୁ ? ଯେଉଁ ସଚେତନ.ତା ଶେଷରେ ସମ୍ଭ୍ରାନ୍ତ ଲକ୍ଷ୍ୟରେ ସମାପ୍ତ ହୁଏ ? ଅଥବା, ଉପରୁ ଅଜାଣତ ଅବସ୍ଥାରେ ଯାହା କୋଳାହଳମୟ ରୂପରେ ଦେଖାଯାଏ ? ଏଇ ଦୁଇଟିଯାକ ପ୍ରଶ୍ନର ପାର୍ଶ୍ୱରେ ଏକ ସ୍ୱତନ୍ତ୍ର ଭାବଧାରାର ଜଗତ ରହିଛି ।

ଏଇ ସଚେତନତା(tone)ର ମୂଳକୁ ଅନୁସରଣ କଲେ ଏହା ମଣିଷର 'ପ୍ରକୃତି' ବା ମତିଗତିରେ ରହିଥିବା ଦେଖାଯାଏ । ଆମେ ଜାଣିପାରୁ ଯେ, ସଚେନତା (tone) ଲାଭ କରିଥିବା ମଣିଷ ଆବେଗ ଦ୍ୱାରା ବିଚଳିତ ହୁଏ ନାହିଁ । ଏହି ମତିଗତି ବା ପ୍ରକୃତି (ସ୍ୱଭାବ)କୁ ଅଧିକ ଗଭୀର ଭାବେ ଅନୁଧ୍ୟାନ କଲେ, ଏହା ଜୀବନର ଏକ ବିସ୍ତୃତ ପରିସରର ପରିଚୟ ଦିଏ, ଯାହା ଆମ୍ଭର ଏକ ନିର୍ଦ୍ଦିଷ୍ଟ ଅବସ୍ଥା ଓ ପରିବେଶ।ଚେକୋସ୍ଲୋଭାକିଆର କାରିଗର ହନ୍‌ଜିଗ୍ (Honzig) ଗୋଟିଏ ଘର ତିଆରି ପୂରା ଶେଷ କରିବା ପର ଅବସ୍ଥାକୁ କହନ୍ତି, ''ଏହା ବିଶ୍ରାମ ନେବା ଉପଯୁକ୍ତ ଏକ ଅବସ୍ଥା ।''

ଶିକ୍ଷକମାନେ ଏହାର ଯେ କୌଣସି ବ୍ୟବସ୍ଥାକୁ ଉଚିତ ବୋଲି ଭାବିଲେ ମଧ୍ୟ, ଏଇ ସଚେତନତା (tone) ହେଉଛି ପ୍ରକୃତରେ ସେଇ ତିନୋଟିଯାକ ଗୁଣରେ ସମ୍ପନ୍ନ - ତାହାହେଲେ ଶିକ୍ଷକଙ୍କ ବ୍ୟକ୍ତିତ୍ୱ, ଛାତ୍ରଛାତ୍ରୀଙ୍କ ବ୍ୟକ୍ତିତ୍ୱ ଏବଂ ବ୍ୟବହୃତ ପଦ୍ଧତି ।

ମୁଁ ଏପରି ଜଣେ ଶିକ୍ଷୟିତ୍ରୀଙ୍କୁ ଜାଣେ, ଯିଏ ଯେଉଁଠିକି ଗଲେ ମଧ୍ୟ ନିଜର ସଚେତନତା(tone)କୁ ସାଥିରେ ନେଇଯାଆନ୍ତି; ତାହା ଏକ ସୁପ୍ରତିଷ୍ଠିତ ବିଦ୍ୟାଳୟର ଶିଶୁଶ୍ରେଣୀ ହେଉ, କିମ୍ୱା ପୌରଶାଳାର ଏକ ଉତ୍ସବମୁଖରିତ ପରିବେଶ ହେଉ କିମ୍ୱା ରେଡ୍‌କ୍ରସ୍ ପ୍ରଦର୍ଶନୀର ଏକ ପ୍ରଦର୍ଶନ - ଫାଟକ ହେଉ । ତାଙ୍କୁ ଆପଣ ବୈଠକ ଘରେ କିମ୍ୱା ଶିଶୁ ଶ୍ରେଣୀରେ କିମ୍ୱା ସାହି ଭିତରେ କିମ୍ୱା ରଙ୍ଗ ମଞ୍ଚ ପଛରେ ଭେଟିଲେ ମଧ୍ୟ ଆପଣ ତାଙ୍କର ସେହି ନିର୍ଦ୍ଦିଷ୍ଟ ସଚେତନତା ଅନୁଭବ କରିବେ । ମୁଁ ଆହୁରି ଜଣେ ପ୍ରଧାନ ଶିକ୍ଷକଙ୍କୁ ବି ଜାଣେ । ସେ, ଯେ କୌଣସି ଶ୍ରେଣୀରେ ଆଦୌ ଚେଷ୍ଟା ନ କରି ବି ଶାନ୍ତି ଆଣି ପାରନ୍ତି । ଆଉ



ମୋର ଛଅ ଜଣ ସହକାରୀଙ୍କ ଭିତରୁ ଦୁଇ ଜଣ ପ୍ରକୃତରେ ଏଇ ସଚେତନତା ସୃଷ୍ଟି କରିବା କାର୍ଯ୍ୟକ୍ରମ ବିଷୟରେ କିଛି ଜାଣନ୍ତି ନାହିଁ । କିନ୍ତୁ ସତେ ଯେମିତି ଏଇ ସଚେତନତା ଟିକକ ତାଙ୍କ ହାତମୁଠାରେ ଥାଏ । ଏଇ ଲୋକମାନଙ୍କ ଭିତରୁ କେହି ଜଣେ ହେଲେ ଆବେଗର ଉତ୍ତେଜନାରେ ବିଚଳିତ ହୋଇ ପଡନ୍ତି ନାହିଁ । ସେମାନଙ୍କର ହିଁ ସଚେତନତା ଥିଲା-ଉଭୟ ଭିତରେ ଆଉ ବାହାରେ ।

ଯାହାହେଉ, ଆନନ୍ଦର ବିଷୟ ହେଉଛି: ଏହା ଶିକ୍ଷକ ମଣିଷଟି ହିଁ ଗୋଟିଏ ଶ୍ରେଣୀର ସଚେତନତା ଜାଗ୍ରତ କରିବା ବ୍ୟବସ୍ଥାର ସମୁଦାୟ ନୁହେଁ । ସେଥିରେ ଛାତ୍ରଛାତ୍ରୀଙ୍କ ସଚେତନତା, ଆଉ ଜିଲ୍ଲା ବା ଅଞ୍ଚଳର ସଚେତନତା ମଧ୍ୟ ଅଂଶୀଦାର ଅଟେ । ଆମେ ପୂର୍ବ ଉପକୂଳରେ କିଛି ଦିନ ରହିଥିଲୁ । ଦୁଇ ପାଖିରେ ଆମର ଦୁଇ ପଡୋଶୀ ଥିଲେ; ଗୋଟିଏ ପଟେ ଅପିରନା ନ'ଗାଟା, ଆଉ ଆର ପଟେ ରେଓ୍ୱେଟି କୋହେରେ । ସ୍କୁଲରେ ବହୁତ ଘଟଣା ତ ଘଟୁଥିଲା । ହେଲେ ସେମାନଙ୍କ ଉପରେ ଏହାର କିଛି ବି ପ୍ରଭାବ ପଡୁନଥିଲା । ସ୍କୁଲର ସଚେତନତା(tone) ଦୃଢ଼ ଥିଲା । ତେଣୁ କୌଣସି ଛୋଟ ବଡ଼ ଘଟଣା ତା' ଉପରେ ଆଞ୍ଚ ଆଣି ପାରୁନଥିଲା । ସେ ଜିଲ୍ଲାରେ ସଚେତନତା ଥିଲା । ସେପରି ଲୋକେ ଉଚିତ ଲୋକଙ୍କୁ ନେତା ରୂପେ ବାଛୁଥିଲେ । ସେଇ ନେତାମାନଙ୍କଠି

ସଚେତନତା ଥିଲା । ଜଣେ କୁଶଳୀ ପ୍ରଧାନ ଶିକ୍ଷକଙ୍କ ବ୍ୟକ୍ତିତ୍ୱ ଯେପରି ସମୁଦାୟ ବିଦ୍ୟାଳୟକୁ ପ୍ରଭାବିତ କରିଥାଏ, ସେଇପରି ସେଇ ନେତା ମହାଶୟଙ୍କ ସଚେତନତା ସାରା ଅଞ୍ଚଳର ଲୋକଙ୍କୁ ଚେତନାଯୁକ୍ତ କରି ରଖିଥିଲା ।

କିନ୍ତୁ ଏ ଅଞ୍ଚଳ ଅଲଗା । ଏ ଜିଲ୍ଲାରେ ସେପରି ଜଣେ ନେତା ନ ଥିଲେ କି ନାହାନ୍ତି । ମାଓରିମାନେ ଆପଦ ବିପଦକୁ ଜଗି ରଖି ଚଳନ୍ତି । ଗୋରା ଓ କଳା (ମାଟିଆ) ଲୋକଙ୍କ ଭିତରେ ଜମା ମେଳ ନାହିଁ । ଏଠାରେ ଉପକୂଳ ଜିଲ୍ଲାର ଲୋକଙ୍କ ଆସ୍ଥା ଓ ଚେତନା ଆଦୌ ନାହିଁ । ଏଠାରେ ଆଦିବାସୀମାନଙ୍କର ଆସ୍ଥା ହଜି ଯାଇଛି । ଫଳରେ ଏଇ ଜିଲ୍ଲାରେ ଶାନ୍ତି ନାହିଁ । ଶୃଙ୍ଖଳା ବି ନାହିଁ । ତେଣୁ ଏଠାରେ ଶିକ୍ଷକ ଯଦି ନିଜ ବ୍ୟକ୍ତିତ୍ୱ ବଳରେ ସମାଜର ଏଇ ଅଭାବଟିକକୁ ପୂରଣ କରି ନ ପାରନ୍ତି କିମ୍ବା ନିଜ କାମ କରିବା ଢ଼ଙ୍ଗରେ ସମାଜରେ ଆସ୍ଥା ସ୍ଥାପନ କରି ନ ପାରନ୍ତି, ତେବେ ଏଠାରେ ବିଶୃଙ୍ଖଳା ସୁନିଶ୍ଚିତ । ପ୍ରତିଟି ଦିବସରେ ଭରି ରହିବ ଅଶାନ୍ତି ଆଉ ଉତ୍ତେଜନା ।

କିନ୍ତୁ ଏଇ ସଚେତନତା(tone)କୁ ଯେ କୌଣସି ଉପାୟରେ ଯେ ଆଣିବାକୁ ହିଁ ହେବ, ଏପରି ବାଧ୍ୟବାଧକତା ନାହିଁ । ଯଦି ଶିକ୍ଷକଙ୍କ ପାଖରେ ଏହା ନଥାଏ, ଆଉ ପିଲାଙ୍କ ପାଖରେ ବି ନଥାଏ, ତେବେ ଅନ୍ୟ ଉପାୟ ଅବଶ୍ୟ ରହିଛି । ତାହା ହେଉଛି ବାହାର ଆକାର ପ୍ରକାରକୁ ଏଡି ଦେଇ ପ୍ରତ୍ୟେକର ଅବଚେତନ ମନରେ ଚେତନା ଜାଗ୍ରତ କରିବା । ଏଇଟା ସହଜ । ପିଲାଙ୍କୁ କାମରେ ଲଗେଇ ରଖିପାରିଲେ ହେଲା । ତା' ଫଳରେ ଶ୍ରେଣୀ ଘରଟିରେ କୋଳାହଳ ଓ ବିଶୃଙ୍ଖଳା ଆଖିକୁ ଦେଖାଯାଇପାରେ । କିନ୍ତୁ ଭିତରେ ଅନୁଭୂତି ଅଲଗା ହେବ । ବାହାରର ସବୁ ହୋ-ହଲ୍ଲା ଭିତରେ ବି ମନ ଭିତରେ ଗଠନମୂଳକ ଭାବଧାରା ଗଢ଼ୁଗି ପାରିବ । ରଚନାତ୍ମକ କାମରେ ଶ୍ରେଣୀର ପାଟିତୁଣ୍ଡ କିଛିଟା ବାଧା ଦେଇପାରେ । କିନ୍ତୁ ଶିକ୍ଷକ ସଚେତନ ଥିଲେ ପିଲାଙ୍କ ମନ ସରସ ସୁନ୍ଦର ଭାବେ ନିଜ ନିଜ ଭାବନାକୁ ରୂପ ଦେବାରେ ଲାଗି ପଡ଼ିବ । ମନ ଭିତରେ ଶାନ୍ତି ଆସିବ । ବିଦ୍ୟାଳୟର ଅସଲି କାମ କରି ଶିଖିବା ସମୟ(Period)ରେ ଏକ ପ୍ରକାର କୋଳାହଳମୟ ଶାନ୍ତି ରହିଥାଏ । ତେଣୁ ଉପରକୁ ଦେଖା ଯାଉଥିବା କୋଳାହଳ ଭିତରେ ବି ମନରେ ଶାନ୍ତି ଥାଏ, କାମ ହୁଏ ଓ ପିଲା ଶିଖି ଚାଲେ । ଶିଶୁ ଶ୍ରେଣୀର ବେଶି ପିଲା ତ ଗାଆଁରୁ ଆସିଥାନ୍ତି । କିନ୍ତୁ ଏଥିପାଇଁ ମୁଁ କେବେ

ନିରାଶ ହୋଇ ନାହିଁ । ଆପଣ ପ୍ରତ୍ୟେକ ବିଷୟକୁ ଗଠନମୂଳକ ଭାବେ ଥୋଇ ପାରିବେ, ଯେପରି ପ୍ରତ୍ୟେକ ପିଲା ତା' ମନର ଭାବନାକୁ ପ୍ରକାଶ କରିବାକୁ ଲାଗି ପଡ଼ିବ । ଫଳରେ ସବୁ ଶକ୍ତି ସେଇ ଗୋଟିଏ ଲକ୍ଷ୍ୟରେ ନିୟୋଜିତ ହୋଇ ସାରା ଦିନଟି ରଚନାତ୍ମକ କାମରେ ବିତିଯିବ । ବେଳେବେଳେ କୋଳାହଳ ଭୟଙ୍କର ହୋଇ ଉଠେ, - ତେବେ ଆପଣଙ୍କୁ ତ ପୁଣି କିଛି ଦେବାକୁ ପଡ଼ିବ । ମୁଁ ପିଲାଙ୍କର କେତେକ ଅବାଞ୍ଛିତ ଅଭ୍ୟାସକୁ ଦୂର କରେ, ବାଗେଇ ନିଏ ଓ ଦରକାର ହେଲା ପରି ତାଲିମ୍ ଦିଏ । ଶ୍ରେଣୀରେ ପହଞ୍ଚିବାର ଢେର ଆଗରୁ ମୁଁ ନିଜକୁ ସେଥିପାଇଁ ଯୋଜନା କରି ପ୍ରସ୍ତୁତ କରିଥାଏ । ମନ ଭିତରେ ଅଭ୍ୟାସ କରିଥାଏ । ସେଇ ପିଲା ଓ ମୋ ଭିତରେ ସମ୍ମାନ ଓ ବିଶ୍ୱାସ ଦେଣ-ନେଣର ଏକ ବିନିମୟ ପ୍ରକ୍ରିୟା ଯେପରି କାମ କରିପାରିବ, ସେଥିପାଇଁ ମୁଁ ଚେଷ୍ଟା କରିଥାଏ । ଏ ଦିଗରେ ମୁଁ ବହୁତ ବାଟ ଯାଇପାରେ, ସବୁ କିଛି କରିପାରେ । ପିଲାଙ୍କର କାମ କରିବା ଢାଞ୍ଚାକୁ ଅନୁସରଣ କରେ, ଯାଞ୍ଚ କରେ, ଆଉ ଲଗାଏତ ଭାବେ ଦରକାର ଅନୁସାରେ ସୁଧାରି ନିଏ - ଫଳରେ ସାରା ଶ୍ରେଣୀ ଘରଟିରେ ସେଇ କାମର ଝୁଂକ ଅନୁଭୂତ ହୁଏ । ତେବେ ଜଣେ ଶିକ୍ଷକଙ୍କ ପାଖରେ ଯଦି ତାଙ୍କର ନିଜସ୍ୱ ସଚେତନତା ଥାଏ, ତେବେ ତାଙ୍କୁ ଏପରି ଲାଗି ପଡ଼ିବା ଦରକାର ହୁଏ ନାହିଁ । କିନ୍ତୁ ଆଦିବାସୀ ସମାଜର ଅସ୍ଥିରତା, ସେଇ ଗାଁର ବିଶୃଙ୍ଖଳା ପରିବେଶ ଏବଂ ମୋ ନିଜ ଛାତି ଭିତରେ ଜଳି ଉଠୁଥିବା ଗବେଷଣାର ଉତ୍ତାପ - ଏସବୁ ଭିତରେ ବି ମୁଁ ବେଶ୍ ଏକ ସୁସ୍ଥ ଶୃଙ୍ଖଳା ଅନୁଭବ କରେ । ମୋ ମନର ଆତଙ୍କିତ ଚେତନା ଭିତରେ ଏହା ଏକ ଗଭୀର ଆଶାବାଦ ।

ଆଉ, ଏହାପରେ ଆପଣ ଯେତେବେଳେ ସଚେତନତା ବିଷୟ ଚିନ୍ତା କରିବେ, ଆପଣଙ୍କ ଭାବନାରେ ଏହାର ଦୁଇଟି ରୂପ ଦେଖାଦେବ: ଜାଣତ ଓ ଅଜାଣତ ସଚେତନତାର କାର୍ଯ୍ୟ । ଏହା ଭିତରୁ ଗୋଟିଏ ହିଁ ପ୍ରକୃତ ଅନ୍ତରର ଗଭୀରତମ ଅଞ୍ଚଳରେ ଛପି ରହିଥିବା ନିୟନ୍ତ୍ରଣ କେନ୍ଦ୍ର । ଶିକ୍ଷକ ତଥା ଛାତ୍ରଛାତ୍ରୀଙ୍କ ମନୋଭାବ ଯେ କୌଣସି ଅବସ୍ଥାରେ ଥିଲେ ମଧ୍ୟ ତାହା ଏହାର ଶକ୍ତି ଦ୍ୱାରା ପ୍ରଭାବିତ ହୋଇଥାଏ । ଆମେ ଯେତେବେଳେ ମନୋଭାବର ଆହୁରି ଭିତରକୁ ଯିବା, ଏବଂ ବ୍ୟକ୍ତିତ୍ୱର ପରିସର ଡେଇଁ ଏହାକୁ ଖୋଜି ଜାଣିବାକୁ ଚେଷ୍ଟା କରିବା, ସେତେବେଳେ ବୁଝି ପାରିବା ଯେ, ଏହା କେବଳ ସେଇ ସଚେତନତାର

ଏକ ଅବସ୍ଥା ମାତ୍ର । ମଣିଷ ଜୀବନର ଗଭୀରତମ ସର୍ବବ୍ୟାପୀ କ୍ରିୟାଶକ୍ତିः ନିସ୍ତଦ୍ଧ କେନ୍ଦ୍ର ।

(ବି.ଦ୍ର.: ଟି.ଏସ୍. ଇଲିଅଟ୍‌ଙ୍କ ଉକ୍ତିଟି ଆମ ଆଲୋଚ୍ୟ ବିଷୟର ଏକ ଅନୁପମ ଚିତ୍ରକଳ୍ପ - ଅନୁବାଦକ)

## କାର୍ଯ୍ୟ ପୁସ୍ତିକା

ଶିକ୍ଷକମାନେ ତାଙ୍କ ପାଇଁ କାର୍ଯ୍ୟ ପୁସ୍ତିକା ନିହାତି ଦରକାର ବୋଲି କହନ୍ତି । ସେମାନେ କହନ୍ତି ଯେ, ଶିକ୍ଷାଦାନରେ ଲାଗି ପଡ଼ିଥିଲାବେଳେ, କାର୍ଯ୍ୟ କ୍ଷେତ୍ରରେ ସବୁ ଦିଗରୁ ବ୍ୟସ୍ତ ରହିବା ସମୟରେ ନିଜ ଉପରେ ପୂରା ଆସ୍ଥା ରଖି ନେବା ସମ୍ଭବ ନୁହେଁ । କିନ୍ତୁ ଉଚିତ୍ ସମୟରେ ଉଚିତ୍ କାମଟି କରିବାପାଇଁ ସବୁ କିଛି ମୋ ଆଙ୍ଗୁଠି ଅଗରେ ମୁଁ ରଖି ଦେଇଥାଏ । ମୁଁ ଶିକ୍ଷାଦାନ ପୂର୍ବରୁ ହିଁ ସବୁ କିଛି ଭାବି ଚିନ୍ତି ଯୋଜନା ତିଆରି କରି ନେଇଥାଏ ।

ପ୍ରାର୍ଥନା କଲା ପରି ଧୀରମନ ଓ ସ୍ଥିର ବିଚାରବୋଧ ଦ୍ୱାରା ନୀରବତା ଭିତରେ ବିଷୟ-ବସ୍ତୁର ସ୍ପଷ୍ଟ ଧାରଣା ଏବଂ ଶିକ୍ଷାଦାନର ପଦ୍ଧତି ସ୍ଥିର କରାଯାଇଥାଏ । ଅତୀତର ସମସ୍ତ ମହାନ୍ ଶିକ୍ଷକ ତାଙ୍କର କାର୍ଯ୍ୟ ପଦ୍ଧତି ''ନିଷର୍ଗ''ରୁ ହିଁ ଲାଭ କରିଥିଲେ । ଉଚ୍ଚ ପର୍ବତ ଉପରୁ ଯୀଶୁଖ୍ରୀଷ୍ଟଙ୍କଠାରୁ ଚା' କପ୍ ଧରି ମନୋନିବେଶ କରିଥିବା ଲୋ-ତୁଂ (Lo-Tung) ପ୍ରମୁଖଙ୍କ ମାଧ୍ୟମରେ ଆମ ପର୍ଯ୍ୟନ୍ତ ତାହା ହିଁ ସତ୍ୟ । ଏହି ମହାନ୍ ଶିକ୍ଷକମାନଙ୍କ ନାମକୁ ବର୍ତ୍ତମାନର ତାଲିକା ସହ ଯୋଡ଼ି ଦେଖିଲେ ଆମେ ସଂକୁଚିତ ହୋଇ ପଡ଼ିବା, ମୋ ମତରେ ଉଚିତ ନୁହେଁ । ଉଦ୍ଦେଶ୍ୟ ତ ସେହି ଗୋଟିଏ: ଶିକ୍ଷାଦାନ । ଗଭୀର ସ୍ଥିରତା ଭିତରେ ଭାବିଚିନ୍ତି ଶିକ୍ଷାଦାନର ବିଷୟ ଓ ପଦ୍ଧତି ନିର୍ଣୟ କରିବା କାର୍ଯ୍ୟରୁ ଶିକ୍ଷକ ନିଜକୁ ଦୂରେଇ ନେଇ ପାରିବ ନାହିଁ ।

ମୁଁ ଜାଣେ ଯେ କାର୍ଯ୍ୟ-ପୁସ୍ତିକା ତିଆରି କଲେ ଜଣେ ଶିକ୍ଷକ ଯେଉଁ ସବୁ ବିଷୟ ଚିନ୍ତା କରୁଥିବେ, ତାହା ସବୁ ସେଥିରୁ ସହଜରେ ବୁଝି ପାରିବେ । ମୁଁ ଜାଣିଛି, ସେଇ କାର୍ଯ୍ୟ ପୁସ୍ତିକାର ଭାବଧାରା ଓ ପଦ୍ଧତି ପିଲାଙ୍କର ମନ ଉପରେ ଗଭୀର ପ୍ରଭାବ ପକାଇଥାଏ । ଆହୁରି ମଧ୍ୟ ଯେତିକି ମୁଁ ଦେଖିଛି ସେଥିରୁ ମୋର ସନ୍ଦେହ ହେଉଛି: କାର୍ଯ୍ୟ ପୁସ୍ତିକାର ବିଷୟ–ବସ୍ତୁ ଓ ଟୀକା-

ଟିପ୍ପଣୀ ଶିକ୍ଷକଙ୍କ ମୁଣ୍ଡରେ ବସା ବାନ୍ଧିନିଏ - ଏବଂ ଶିକ୍ଷକ ତାରି ଉପରେ ନିର୍ଭର କରି ଶାନ୍ତିରେ ବସି ଯାଆନ୍ତି । ସେଇ ପୁସ୍ତିକାର ଭାବଧାରା ଶିକ୍ଷକଙ୍କର ଧାରଣା ଓ ଶିକ୍ଷାଦାନ କାର୍ଯ୍ୟ ମଧ୍ୟରେ ପାହାଚ ପରି କାମ ଦିଏ । ଏଇ ଦୃଷ୍ଟିରୁ ମୁଁ ଦୃଢ଼ତାର ସହିତ ବିଶ୍ୱାସ କରେ ଯେ, ସେଇ କାର୍ଯ୍ୟପୁସ୍ତିକାର ସମୀକ୍ଷା ହିଁ ଶିକ୍ଷକଙ୍କ ବ୍ୟକ୍ତିତ୍ୱର ସମୀକ୍ଷା ହୋଇ ପାରିବ । ଶିକ୍ଷକଙ୍କ ଜ୍ଞାନ, ଚିନ୍ତା ଓ ଚେତନାର କିମ୍ୱା କାର୍ଯ୍ୟକଳାପର ବିଶ୍ଳେଷଣ ଦରକାର ହୁଏ ନାହିଁ । କାର୍ଯ୍ୟ ପୁସ୍ତିକାର ବିବରଣୀ କିମ୍ୱା ତାହାକୁ ପଢ଼େଇବାର ପ୍ରଣାଳୀ ଆମର ସମସ୍ୟା ନୁହେଁ । ସମସ୍ୟା ହେଉଛି ଏହା ମଣିଷକୁ ବହୁରୂପୀ କରିଦିଏ: ଚିନ୍ତା ଓ ଚେତନାକୁ ସକ୍ରିୟ କରିବା ବଦଳରେ ନିଷ୍କ୍ରିୟ କରିଦିଏ ।

ଆଉ କେତେ ଜଣ ଶିକ୍ଷକ ଏଇ କାର୍ଯ୍ୟ ପୁସ୍ତିକାକୁ ସେପରି ବ୍ୟବହାର କରି ନଥାନ୍ତି । ସେମାନେ ଟୀକା ପୁସ୍ତକ ପଢ଼ନ୍ତି ସତ, ହେଲେ ତାହାକୁ ସେମାନେ ନିଜର ଧାରଣା ଓ ଶିକ୍ଷା ଦାନ ମଧ୍ୟରେ କିଛିଟା ସହାୟତା ପାଇଁ ସ୍ଥାନ ଦିଅନ୍ତି - କିନ୍ତୁ ସିଡ଼ି କିମ୍ୱା ପାହାଚ ରୂପେ ତା' ଉପରେ ନିର୍ଭର କରନ୍ତି ନାହିଁ । କିନ୍ତୁ ଆଉ କେତେକ ଶିକ୍ଷକଙ୍କ ପାଇଁ କାର୍ଯ୍ୟ ପୁସ୍ତିକା ଦଲାଲ ପରି କାମ ଦିଏ । ଚିତ୍ରପଟ ପାଇଁ ଆସିଥିବା ରଙ୍ଗ କାମରେ ଲାଗିବା ଆଗରୁ ସେଥିରୁ ବେଶ୍ କିଛି ମଝିରେ ବାଟମାରଣା ହୋଇଗଲେ ଚିତ୍ର ପଟରେ ରଙ୍ଗ ଦେବା ବିଫଳ ହେଲା ପରି କାର୍ଯ୍ୟ-ପୁସ୍ତିକା ଉପରେ ନିର୍ଭରଶୀଳ ଶିକ୍ଷକ ଶିକ୍ଷା ଦାନ ଦେଲାବେଳକୁ ନିଜର ଧାରଣା ହରାଇ ବସିଥାନ୍ତି । ଲିଓନାର୍ଡ ଡା' ଭିନ୍‌ସି ନିଜେ ମାର୍ବଲ ପଥର କାଟି ସିଧା ମୂର୍ତ୍ତି ତିଆରି କରୁଥିଲେ, ରବୀନ୍ଦ୍ରନାଥ ଠାକୁର ନିଜେ ସୁନ୍ଦର ଭାବେ ନିଜର କବିତା ଲେଖୁଥିଲେ ଆଉ ଯୀଶୁ କେବେ କେଉଁଠି ଟିପାଟିପି କରୁଥିଲେ ବୋଲି ତ ମୁଁ ଶୁଣିନି !!! ସେମାନେ ନିଜ ନିଜ ବିଭାଗରେ ଶିକ୍ଷକ ଥିଲେ, ଆଉ ସମସ୍ତେ ମଝିରେ ମଝିରେ ଦଲାଲକୁ ଅବିଶ୍ୱାସ ହିଁ କରୁଥିଲେ । ବିଶ୍ୱ ବିଖ୍ୟାତ ଦାର୍ଶନିକ ପ୍ଲାଟୋଙ୍କ ମତରେ ଶିକ୍ଷକ ଓ କଳାକାର ମଧ୍ୟରେ କୌଣସି ପ୍ରଭେଦ ନାହିଁ । ପ୍ରକୃତରେ ଜଣେ ଶିକ୍ଷକ ଯେତେଦୂର ପର୍ଯ୍ୟନ୍ତ ଜଣେ କଳାକାର, ସେତେଦୂର ଯାଏଁ ସେ ନିଜର ମନର ଆଖିରେ ବିଷୟଟିର ଏକ ସ୍ପଷ୍ଟ ଚିତ୍ର ଆଙ୍କି ନେଇଥାଏ । ଏଇ ଚିତ୍ର ବେଶ୍ ସ୍ପଷ୍ଟ, ନିଖୁଣ ଓ ଦୋଷଶୂନ୍ୟ । ଏହା ହେଉଛି ସେ ଯାହା ପିଲାଙ୍କୁ ବୁଝାଇବାକୁ ଚାହେଁ, ଆଉ ଯେଉଁଠି ସେ ପୂରା

ଚିତ୍ରଟି ଆଙ୍କି ପାରେ ନାହିଁ, ଅର୍ଥାତ୍ ପଢ଼ାଇବାକୁ ଯାଉଥିବା ବିଷୟବସ୍ତୁକୁ ଯୋଜନା ଅନୁସାରେ ପୂରା କରିପାରେ ନାହିଁ, ସେଠାରେ ଶିକ୍ଷକଙ୍କର ଅଭାବ ବୋଧକୁ ତାଙ୍କର ଆତ୍ମବିଶ୍ୱାସ ଦୂର କରିଥାଏ । ସେ ନିଶ୍ଚୟ ବୁଝି ବୁଝାଇ ପାରିବେ ବୋଲି ବିଶ୍ୱାସ ପୋଷଣ କରି ପ୍ରକୃତରେ ବୁଝନ୍ତି ଓ ପୂରା ଚିତ୍ରଟି ମନରେ ଆଙ୍କି ପାରନ୍ତି । ଏହା ଠିକ୍ କାମ କରିବା ସମୟରେ ଓ ବେଳେବେଳେ ଘଟଣା କ୍ରମରେ ମନରେ ଉଙ୍କି ମାରେ । ବୁଝିବାରେ ଖଇଚା ଥିଲେ ସେହି ଅଂଶଟିକୁ ଛାଡ଼ି ଶୂନ୍ୟ ରଖାଯାଇପାରେ କିନ୍ତୁ ମଧ୍ୟମ ପକ୍ଷ ଅର୍ଥାତ୍ ଦଲାଲର ସାହାଯ୍ୟ ନେବା ଉଚିତ ନୁହେଁ । ସେ ନିଜ ଯୋଜନାକୁ ନିଜ ଚିନ୍ତା ଓ ଚେତନାରେ ନିଷ୍ଠାର ସହିତ ପରିଶ୍ରମ କରି ତାହାର ପ୍ରକୃତ ସ୍ୱାଦ ଚାଖି ପାରନ୍ତି । ମନ ଭିତରେ ବିଷୟଟିର ପୂରା ଚିତ୍ର ଆଙ୍କିବାକୁ ଚେଷ୍ଟା ଚଳାନ୍ତି । ଏପରିକି ଶ୍ରେଣୀରେ ପଢ଼େଇ ଚାଲିବା ସମୟରେ ମଧ୍ୟ ଆଉ ସଫଳ ହୁଅନ୍ତି । କିନ୍ତୁ କାର୍ଯ୍ୟ-ପୁସ୍ତିକାର ବିବରଣୀ ଏତେ ଦୂର ସାହାଯ୍ୟ କରିପାରେ ନାହିଁ ।

ନିଜର ମନର ସୁଚିନ୍ତିତ ଧାରଣା ପିଲାଙ୍କ ପାଖରେ ଉପସ୍ଥାପନ କଲାବେଳେ ତାଙ୍କ ମନର ଚିତ୍ର ଅଧିକରୁ ଅଧିକ ସ୍ପଷ୍ଟ ହୋଇ ଉଠେ । କିନ୍ତୁ ଦଲାଲ ବା ପ୍ରଶ୍ନୋତ୍ତରର ବହିର ସାହାଯ୍ୟ ନେଲେ ତାଙ୍କ ମନର ଚିତ୍ର ମରିଯାଇଥାଏ । ଅର୍ଥାତ୍ ସେ ନିଜର ଚିନ୍ତା ଓ ଚେତନାକୁ ହତ୍ୟା କରିଥାନ୍ତି । ଶିକ୍ଷକ ନିଜେ ଭାବିଚିନ୍ତି ପୋଷଣ କରିଥିବା ଧାରଣାକୁ ନିଜ ଯୋଜନା ଅନୁସାରେ ନିଜେ ପରିବେଷଣ କଲେ ସଫଳ ହୁଅନ୍ତି - ସେଥିରେ ସନ୍ଦେହ, ଦ୍ୱନ୍ଦ ଓ ବାଧା ନଥାଏ । କିନ୍ତୁ ମଧ୍ୟସ୍ଥି ଦଲାଲର ସାହାଯ୍ୟରେ ନୁହେଁ;ତାହା ଏହାକୁ ପ୍ରତିରୋଧ କରିଥାନ୍ତି ।

ମୁଁ ଭାବୁଛି, ଜଣେ ଶିକ୍ଷକର ଚିନ୍ତାଧାରାକୁ ସବୁବେଳେ ଲେଖି ରଖିବା ସମ୍ଭବ ନୁହେଁ । ଅର୍ଥାତ୍ ସାରାଂଶ ଆଦି ଲେଖି ରଖିବା ଅନେକଙ୍କୁ ବଂଧନ ପରି ଲାଗେ । କାରଣ ସେତିକି ସୀମା ଭିତରେ ମନର ଭାବନା ସୀମାବଦ୍ଧ ହୋଇଯାଏ । ଫଳରେ ଆନୁସଙ୍ଗିକ ବଂଧନ ପରି ଲାଗେ । କାରଣ ସେତିକି ସୀମା ଭିତରେ ମନର ଭାବନା ସୀମାବଦ୍ଧ ହୋଇଯାଏ । ଫଳରେ ଆନୁସଙ୍ଗିକ ଭାବଧାରା ଦୂରେଇ ଯାଏ । ମୁଁ ଯେତେବେଳେ ଛୋଟ ଝିଅଟିଏ ଥିଲି,

ସେତିକିବେଳଠୁ ଏଇଟା ଅନୁଭବ କରିଆସୁଛି । ଗୋଟିଏ କାମକୁ ଅଧା ଗଢ଼ି ଛାଡ଼ିଦେଇ ପରେ ଭାବିଚିନ୍ତି ପୂରା କରାଯାଇପାରେ । ପିଲାଦିନେ ମୁଁ ସିଧା କାଦୁଅ ମାଟି ନେଇ କାମ ଆରମ୍ଭ କରି ଦେଉଥିଲି । ଏବେ ଶିକ୍ଷା ଦେଲାବେଳେ ସେଇ ଅନୁଭୂତି ଓ ଧାରଣା ଭଲ କାମ ଦେଉଛି । କିନ୍ତୁ ଅନୁସରଣ କରି ପଢ଼େଇଲେ ଦଲାଲ୍ ହାତରେ କାମଟି ଦେଇଦେଲା ପରି ଲାଗୁଛି ।

ଶିଶୁ ଶ୍ରେଣୀରେ ପ୍ରତ୍ୟେକ ପିଲା ତା'ର ପ୍ରତିଟି କାମ ଭିତରେ ତା' ନିଜକୁ ପ୍ରକାଶ କରିଥାଏ । ପ୍ରତ୍ୟେକ ବିଷୟ ପିଲାଙ୍କ ପାଖରେ ରଚନାତ୍ମକ ହୋଇଉଠେ । ପିଲାଙ୍କର ନିଜସ୍ୱ ସ୍ୱତଃସ୍ଫୂର୍ତ୍ତ କର୍ମ ପ୍ରବାହରେ ସେମାନଙ୍କ ସୃଜନାତ୍ମକ ଶକ୍ତି ଆତ୍ମପ୍ରକାଶ କରିଥାଏ । ସେଠାରେ କାର୍ଯ୍ୟ ପୁସ୍ତିକା ଆଦୌ ସାହାଯ୍ୟ କରିପାରେ ନାହିଁ । ଯେଉଁଠି ଏତେ ଅଧିକ ପରିମାଣରେ ସୃଜନଶୀଳ ଉଦ୍ଦେଶ୍ୟ କାର୍ଯ୍ୟରେ ପ୍ରକାଶ ପାଏ, ସେଇଠି ତ ଜୀବନୀ ଶକ୍ତି ପୂରା ଜାଗ୍ରତ ହୋଇ ନିଜ ବାଟରେ ବଢ଼ି ଚାଲେ । ମୁଁ ତେଣୁ ଜୀବନର ପ୍ରକାଶ ପାଇଁ ଯୋଜନା ଗଢ଼େ ନାହିଁ । ମୁଁ କେବଳ ସେଥିରେ ସହଯୋଗ କରେ; ସାହାଯ୍ୟ କରେ ।

ମୁଁ କିପରି କହିପାରିବି, ପିଲାଙ୍କ ଭିତରୁ କେଉଁ ପିଲାଟି ଭବିଷ୍ୟତରେ କ'ଣ /କିପରି ହୋଇ ଠିଆ ହେବ ? ଆଜି ମଧ୍ୟ ସେ କ'ଣ ହେବାକୁ ଯାଉଛି, କିଏ ଜାଣେ ? ମୋ ଶ୍ରେଣୀର ପିଲାଏ ତ ପ୍ରତିଦିନ ନିଜ ନିଜର ପାଠ୍ୟ ପୁସ୍ତକ ବିଷୟ ନିଜେ ସକାଳୁ ଲେଖନ୍ତି । ତେଣୁ ପଠନ, ବନାନ ଆଦି ଶିଖାଇବାକୁ କେଉଁପଦ ତାଲିକା ମୁଁ ଭଲା ଠିକ୍ କରିପାରିବି ? ଜଣେ ଶିକ୍ଷକ ଗୋଟିଏ ନୂଆ ଦିନରେ ଘଟିବାକୁ ଯାଉଥିବା ସବୁ ବିଷୟ କଣ ନିଜେ ଅନୁମାନ କରି ସ୍ଥିର କରି ନେବାକୁ ଚାହାନ୍ତି ? ଶିଶୁ ଶ୍ରେଣୀର ଏହି ନିଜସ୍ୱ ଆତ୍ମପ୍ରକାଶକୁ ଅଭ୍ୟାସରେ ପକାଇବା ଓ ସାହାଯ୍ୟ କରିବା ପାଇଁ ଏଠାରେ ପିଲାର ମତିଗତି ଓ ପରିବର୍ତ୍ତନ ଉପରେ ଆଖି ରଖି ଶିକ୍ଷକ ପିଲାଠାରୁ ତା'ର ପଦ ତାଲିକା ଜାଣି ଜଣାଇବା ଏଭ ସହଜ ପଠନରେ ବେଶ ଭଲ ଫଳଦିଏ । ତେଣୁ ଶିକ୍ଷକ କିପରି ଗୋଟିଏ କାର୍ଯ୍ୟ ପୁସ୍ତିକାରୁ ପୂର୍ବରୁ ପିଲାର ପାଠ୍ୟ ତିଆରି କରିବେ ?

କାଡ୍‌ୱେଲ୍ କୁକ୍ (Caldwell Cook) ଯଥାର୍ଥରେ କହିଛନ୍ତି: ''ଅଧ୍ୟାପକ ନୁହେଁ, ଜଣେ କଳାକାର ହିଁ ଆପଣଙ୍କର ଅସଲ ସ୍କୁଲ ଶିକ୍ଷକ ।''

## ନାଚ

ସକାଳ ବେଳାର ଗଠନମୂଳକ ବିଷୟ ଶିକ୍ଷା ଦେବା ସମୟ ଭିତରେ ମୁଁ 'ନାଚ' ରଖିଛି । କାରଣ : ନିଜକୁ ସବୁ ଦିଗରୁ ପ୍ରକାଶ କରିବା ପାଇଁ ଏହା ଏକ ଭଲ ମାଧ୍ୟମ । ଆଉ ପ୍ଲାଟୋ ତ କହିଛନ୍ତି, ନାଚ ବ୍ୟକ୍ତିକୁ ସବୁ ଦିଗରୁ ନିଜକୁ ପୂର୍ଣତଃ ପ୍ରକାଶ କରିବାରେ ବିଶେଷ ଭାବେ ସାହାଯ୍ୟ କରେ । ଏହା ବ୍ୟକ୍ତିର ଆଧ୍ୟାତ୍ମିକ, ମାନସିକ ଓ ଦୈହିକ ବିକାଶ ସାଧନ କରେ । ମୁଁ ମଧ୍ୟ ତାହା ହିଁ ଅନୁଭବ କରୁଛି । କିନ୍ତୁ ଏଇ କାରଣରୁ ମୁଁ ଭାବିଚିନ୍ତି ନାଚକୁ ସ୍ଥାନ ଦେଇନି । ଏହା ଆପେ ଆପେ ଆସି ଯାଇଛି । ବସନ୍ତ ଋତୁର ଗୋଟିଏ ଉଜ୍ଜ୍ଵଳ ସକାଳରେ ମୁଁ ଦିନେ ସ୍କୁ' ବେର୍ଟ୍‌ଙ୍କ ସଂଗୀତ ବଜାଉଥିଲି । କାହାରିକୁ ଖୁସି କରିବାକୁ ନୁହେଁ; ନିଜ ଖୁସିରେ କେବଳ ବଜାଉଥିଲି । ହଠାତ୍ ଜଣେ ପିଲା ତା' କାମ ଛାଡି ଠିଆହେଲା ଓ ତା' ନିଜ ଢ଼ଙ୍ଗରେ ତାଳ ଦେଇ ନାଚିଲା । ତା' ପରେ ଆଉ ଜଣେ ପିଲା, ପରେ ପରେ ଜଣେ ଜଣେ ନାଚିବା ଆରମ୍ଭ କରି ଦେଲେ, ଶେଷରେ ସବୁ ପିଲା ନାଚି ଉଠିଲେ । ସେଇ ଦିନଠାରୁ ଆଜି ଯାଏଁ ତାହା ଚାଲିଛି ।

ଯଦିଓ ପିଲାଙ୍କର ନିଜସ୍ୱ ପ୍ରକାଶଭଙ୍ଗୀ ଏଇ ନାଚର ମୁଖ୍ୟ ଉପାଦାନ, ମୁଁ ସେଥିରେ ନିଜକୁ ସଂପୃକ୍ତ କରି ଏବଂ ସେମାନଙ୍କର ଇଚ୍ଛା ଓ ରୁଚି ଅନୁସାରେ ଅଙ୍ଗଭଙ୍ଗୀ ମିଶାଇ ଶିକ୍ଷା ଦିଏ । କିନ୍ତୁ ନୂଆ ସଙ୍ଗୀତଟିଏ ନେଇ ତା'ର ତାଳରେ ନାଚିଲାବେଳେ ପିଲାଏ ନିଜ ଇଚ୍ଛା ଅନୁସାରେ ଭାବ-ଭଙ୍ଗୀ ପ୍ରକାଶ କରିବା, ମୁଁ ଲକ୍ଷ୍ୟ କରିନି । ତେଣୁ ଏଠାରେ ପୁଣି ସେଇ ପୁରୁଣା ପଦ୍ଧତି : ଉପରୁ କିଛି ଲଦି ଦେଲା ପରି !

ମୁଁ କେବଳ ଶାସ୍ତ୍ରୀୟ ସଙ୍ଗୀତ ବ୍ୟବହାର କରେ । ଏଇଟା କେବଳ ମୋର ନିଜ ପସନ୍ଦ ଅନୁସାରେ ନୁହେଁ । ପ୍ରଥମେ ନାଚିବାର ଏଇ ପ୍ରେରଣା ଶାସ୍ତ୍ରୀୟ ସଙ୍ଗୀତରୁ ହିଁ ମିଳିଥିଲା ବୋଲି ଏହା ଚାଲିଛି । ମୁଁ ଆଜି ଯୁଦ୍ଧା ସ୍କୁ' ବେର୍ଟ, ବିଥୋଭେନ୍, ଷ୍ଟ୍ରଇକୋଭସ୍କି, ଚୋ'ପିଁ, ବ୍ରାହ୍ମସ୍ ଓ ଗ୍ରିଗ୍ ପ୍ରମୁଖଙ୍କ ସଙ୍ଗୀତ ହିଁ ବ୍ୟବହାର କରି ଆସୁଛି । କିନ୍ତୁ ଏ ଦିଗରେ ମୁଁ କେବଳ ନିଜ ଅନୁଭୂତିକୁ ହିଁ ଖୋଜି ଚାଲିଛି । କାରଣ : ମନର ଲକ୍ଷ୍ୟ ଭିତରେ ମୋର ଏ ଦିଗର ଅନୁଭୂତି ସୀମାବଦ୍ଧ ।



ନାଚ ଶିକ୍ଷା ଦେବାର ମୋର ଉଦ୍ଦେଶ୍ୟ ରହିଛି : ପିଲାଟିଏ ଯେପରି ନିଜକୁ ଆପେ ଆପେ ପ୍ରକାଶ କରି ଲେଖେ, ଆଙ୍କେ, ଖେଳେ ଆଉ ଆତ୍ମକଥା ଲେଖେ, ସେହିପରି ସ୍ୱାଧୀନ ଭାବେ ସେ ନିଜର ନାଚ ସୃଷ୍ଟି କରିବ । କିନ୍ତୁ ଆଜି ସୁଦ୍ଧା ସେ ଲକ୍ଷ୍ୟ ହାସଲ ହୋଇ ପାରିନି । ନାଚକୁ ଆମେ ଯଦିଓ ରଚନାତ୍ମକ କାର୍ଯ୍ୟକାଳ ଭିତରେ ସ୍ଥାନ ଦେଇଛୁ, ତଥାପି ଦିନର ଅନ୍ୟାନ୍ୟ ବିଷୟ ଶିକ୍ଷା ସମୟରେ କ୍ଳାନ୍ତି ବା ମାନସିକ ଅବସାଦ ଆସିଲେ, ଆମେ ନାଚ କରୁଁ ।

---

*ମୁଁ ସ୍ପିନ୍‌ଷ୍ଟର୍ (Spinster) ପୁସ୍ତକ ଲେଖା ସାରିଲା ବେଳକୁ ଏଇ ଲକ୍ଷ୍ୟ ହାସଲ ହୋଇଥିଲା ।*



ଜିଇଁଥିଲେ ବି ଜିଇଁବାରେ ସୁଆଦ ନଥାଏ ।

ରଚନାତ୍ମକ ଢ଼ାଞ୍ଚାରେ ଶିକ୍ଷା ଦିଆଯାଉଥିବା ଶିଶୁ ଶ୍ରେଣୀରେ ସବୁ ବିଷୟ ଶିକ୍ଷକଙ୍କ ପାଇଁ ଅଧିକ ସହଜ ହୋଇଥାଏ । ଶିକ୍ଷକଙ୍କ ପକ୍ଷେ ଏଇଟା ସବୁଠୁଁ ବଡ ସୁବିଧା ଆଉ ସୁଯୋଗ । ଏଠାରେ ବଡ କଥା ହେଉଛି, ଶିକ୍ଷକଙ୍କୁ ବାଟ କଢ଼େଇ ଧଇଁ ସଇଁ ହେବାକୁ ପଡେନି । ପିଲାଏ ନିଜେ ବାଟ ଖୋଜି ଆଗେଇ ଚାଲନ୍ତି । ପିଲାଙ୍କର ସୃଜନୀ ଶକ୍ତି ଝରଣାଟିଏ ପରି ଆଗକୁ ଆଗ ମାଡି ଚାଲେ । ତେଣୁ ଶିକ୍ଷକଙ୍କ ପାଇଁ ଆଉ ଗୋଟିଏ ସୁଯୋଗ ହେଉଛି, ନିଜକୁ ସେଇ ସୁଅରେ ଭସେଇ ନେବା । ସୁଅର ଓଲଟା ଦିଗରେ ପହଁରିଯିବା କିମ୍ବା ପିଲାଙ୍କୁ ଅଟକାଇବା ଆଦିର ପ୍ରଶ୍ନ ଉଠେନି । ଡଃ. ଜୁଙ୍ଗ୍ କହନ୍ତି, ମଣିଷ ଭିତରେ ଥିବା ମାନସିକ ଶକ୍ତି ହେଉଛି ବିଶ୍ୱ-ଶକ୍ତି; ତାହା ପୃଥିବୀର ସବୁ ଶକ୍ତିଠାରୁ ବହୁଗୁଣ ଅଧିକ । ଡଃ. ବୁରୋ କହନ୍ତି, ଆମର ସବୁ କିଛି ଭୁଲ ଭଟକା ଏଇ ସୃଜନାତ୍ମକ ଶକ୍ତିର ଦମନରୁ ଜାତ । ଆଉ ଏରିଚ୍ ଫ୍ରୋମେନ୍ କହନ୍ତି, ଯେଉଁମାନଙ୍କ ଜୀବନରେ ବଂଚିବାର ଆନନ୍ଦ ନଥାଏ, ସେପରି ଲୋକ ହେଉଛନ୍ତି ସବୁ ଧ୍ୱଂସର କାରଣ ।

ଏଇ ସବୁ କାରଣରୁ ଆମର ପ୍ରଧାନ କର୍ତ୍ତବ୍ୟ ହେଉଛି, ପିଲାବେଳକୁ ମଣିଷର ଏଇ ସୃଜନାତ୍ମକ ପ୍ରବୃତ୍ତିକୁ ଉଚିତ ବାଟରେ ଆଗେଇ ନେବା ପାଇଁ ରଚନାତ୍ମକ କାମରେ ଲଗେଇବା । ପାଠ ପଢେଇବା ଅପେକ୍ଷା ଏଇ ମାନସିକତାକୁ ସାହାଯ୍ୟ କରିବା ଏକ ବଡ଼ କାମ । ତେଣୁ ଆଗରୁ ମୁଁ ବହୁଥର କହିଆସୁଛି

ଯେ, ଯୁଦ୍ଧଟିଏ ସରିଲା ପରେ ରାଷ୍ଟ୍ର-ଶାସକମାନେ ପରସ୍ପର ଭିତରେ ସମ୍ମିଳନୀ, ଆଲୋଚନା ଆଦିରେ ଲାଗି ରହିବା ଅପେକ୍ଷା ନିଜ ନିଜ ଦେଶର ଶିଶୁ ଶ୍ରେଣୀର ପିଲାଙ୍କ ଉପରେ ଅଧିକ ଗୁରୁତ୍ୱ ଦେବା ଉଚିତ୍। କାରଣ ଏଇ ପିଲାମାନେ ହିଁ ଜାତୀୟ ସ୍ରୋତର ମୂଳ ଉତ୍ସ। ଏମାନଙ୍କର ମନୋଭାବ ଉପରେ ଭବିଷ୍ୟତର ଯୁଦ୍ଧ କିମ୍ବା ଶାନ୍ତି ନିର୍ଭର କରେ। ଏଇଟା ସାରା ଜଗତ ପାଇଁ ଦରକାର ଓ ହିତକର। ଆଉ ଏଇଥିପାଇଁ ମୁଁ ରଚନାତ୍ମକ ଶିକ୍ଷାଦାନ ଉପରେ ଜୋର ଦିଏ। ପିଲାବେଳେ ମଣିଷର ମନ ଓ ମସ୍ତିଷ୍କ ତରଳ ଓ କୋମଳ ଥାଏ। ତେଣୁ ଶିଶୁ ଅବସ୍ଥାରେ ତା'ର ସେଇ ସୃଜନୀ ଶକ୍ତିକୁ ରଚନାତ୍ମକ ବା ଗଠନମୂଳକ କାର୍ଯ୍ୟ ଦେଇ ଆଗେଇ ନେଲେ, ତା'ର ବିଚାରବୋଧ ଗଠନମୂଳକ ହୁଏ। ଏସବୁ ଦୃଷ୍ଟିରୁ ରଚନାତ୍ମକ ସହଜ ଶିକ୍ଷାଦାନ ଆମର ବିଶ୍ୱଶାନ୍ତି ପାଇଁ ଏକ ଅବଦାନ।

ଶିଶୁ ମନର ବିକାଶ ଅତି ସୁନ୍ଦର। ମସ୍ତିଷ୍କ ଯେତେବେଳେ ବଢ଼ି ଆସୁଥାଏ, ସେଥିରେ ଭରି ରହିଥାଏ : ସୌନ୍ଦର୍ଯ୍ୟ। ଆଉ ସେଇ ସୌନ୍ଦର୍ଯ୍ୟ ଭିତରେ ଥାଏ ସରଳ ସମାନତା, ସାମଞ୍ଜସ୍ୟ ଓ ବିଶ୍ରାମ। ଏଇ 'ବିଶ୍ରାମ' ଶବ୍ଦଟିରେ ଶାନ୍ତି ଓ ଆନନ୍ଦ ଭରି ରହିଲା ପରି ଲାଗେ। ଜୀବନର ସବୁ କାମ ତ ଏଇ ବିଶ୍ରାମ ଲାଭ କରିବା ପାଇଁ। ତେଣୁ ସେଥିରେ ଥିବା ଶାନ୍ତି ଓ ଆନନ୍ଦ ପାଇବାକୁ ମଣିଷ ଯେ କୌଣସି କାମ କଲେ ବି ବିଶ୍ରାମ ଚାହେଁ। ଶିଶୁର ସରଳ ଅଗ୍ରଗତି ମଧ୍ୟ ସେଇ ବିଶ୍ରାମର ଆନନ୍ଦ ପାଇଁ।

ମୁଁ ମୋର ଶିଶୁ ଶ୍ରେଣୀର କାର୍ଯ୍ୟକଳାପରୁ ଯୁଦ୍ଧ ଓ ଶାନ୍ତିକୁ ଅଲଗା କରିପାରେ ନାହିଁ। ବହୁତ ଥର ଏଇ ଆଖିରେ ମୁଁ ଦେଖିଛି, ରଚନାତ୍ମକ କାମର ଗଢାଗଢି ପଛରେ ଧ୍ୱଂସାତ୍ମକ ଆକ୍ରମଣର ଭୟଙ୍କର ଦୃଶ୍ୟ ହଜିଯାଇଛି। ବିଶେଷ ଭାବେ ଏଇ ପାଞ୍ଚ ବର୍ଷିଆ ମାଓରି ପିଲାଙ୍କ ସହିତ ମୋର ଅନୁଭୂତି ମୋତେ ଏତିକି ଶିଖେଇଛି। ଏଇ ପିଲେ ଯୁଦ୍ଧ ପ୍ରିୟ; "ନିଅ, ଭାଙ୍ଗ, ଲଢ଼ ଆଉ ପ୍ରଥମ ହୁଅ" ମନୋଭାବରେ ଗଢା। ସେମାନଙ୍କୁ ଗଠନମୂଳକ କାମରେ ଆଗ୍ରହୀ କରି ଲଗେଇ ନ ପାରିଲେ, ସେମାନେ ସେଇ ପୁରୁଣା ଢଙ୍ଗରେ ବଢିବେ ଓ ଆଗେଇ ଯିବେ, ଲଢେଇ କରିବାଟାକୁ ହିଁ ଜୀବନରେ ଲକ୍ଷ୍ୟ ବୋଲି ଧରି ନେବେ।

କିନ୍ତୁ ମନୋଭାବକୁ ଗଠନମୂଳକ କାମ ଦ୍ୱାରା ବଦଳେଇ ହେବ। ଯେଉଁ ପିଲାଟି ଯେତେ ଅଧିକ ଦୁର୍ଦ୍ଦାନ୍ତ, ସେଇ ପିଲା ସେତେ ଅଧିକ ଗଢିବା ଓ ନୂଆ



କାମ କରିବା ମୁଁ ଦେଖିଛି । ଯେଉଁ ଦୁଷ୍ଟ ପିଲାମାନେ ଅନ୍ୟକୁ ବୁଟ୍ ଜୋତାରେ ଲାତ ମାରନ୍ତି, ଆସନରେ ବସିଥିବାବେଳେ ପାଖ ପିଲାଟିର ଆଙ୍ଗୁଠିକୁ ତଳେ ଘସି ଦଳି ପକାନ୍ତି, କାଠ ଫାଳିଆରେ ଜଣକର ମୁଣ୍ଡ ଫଟାନ୍ତି କିମ୍ବା ପଥର ଫିଙ୍ଗନ୍ତି .... ମୁଁ ସେଇ ପିଲାଙ୍କର ହାତରେ ମାଟି ଧରାଏ, ଚକ ଦିଏ । ସେ ତା' ରୁଚି ଅନୁସାରେ ବୋମା ଗଢିପାରେ କିମ୍ବା ମୋ ଘର ଜଳି ଉଠୁଥିବା ଚିତ୍ର ଆଙ୍କିପାରେ । ଏସବୁ ଅଭ୍ୟାସ ଫଳରେ ତା'ର ରଚନାତ୍ମକ କାମ ତା'କୁ ବଦଳାଏ । ସେ ଗଠନ-ମୂଳକ କାର୍ଯ୍ୟରେ ଲାଗିଯାଏ । ସତ କହିବାକୁ ଗଲେ, କଳାପଟାର ଭୟାନକ ଅସ୍ତ୍ରଶସ୍ତ୍ର ଅପେକ୍ଷା ସତ ଅସ୍ତ୍ରଶସ୍ତ୍ର ମୋତେ ଭାରି ଡର ମାଡ଼େ ।

ଗତ କେତୋଟି ବର୍ଷ ଭିତରେ ଏପରି ଶହ ଶହ ମାଓରି ପିଲା ମୋ ହାତରେ ଗଢା ହୋଇଛନ୍ତି । ତେବେ, ଏସବୁକୁ ମନ ଭିତରେ ରଖି ରଚନାତ୍ମକ ଶିକ୍ଷା ପାଇଁ ଯେତେ ସବୁ ପଦ୍ଧତି ମୁଁ ପାଇଛି, ସେ ସବୁକୁ ପ୍ରୟୋଗ କରିଛି: ପଠନ ଓ ଲିଖନ ଶିଖେଇବା ପାଇଁ ଏବଂ ଗଠନମୂଳକ ମନୋଭାବ ଗଢିବା ପାଇଁ । ତାହା ହିଁ ମୋର ରଚନାତ୍ମକ ଶିକ୍ଷାଦାନ, ଯାହା ସହଜ ଓ ବ୍ୟକ୍ତିଗତ ରୁଚି ଅନୁରୂପ । ସବୁ ବିଷୟ ସେଇ ଢାଞ୍ଚାରେ ପିଲାଏ ଶିଖନ୍ତି । ଏଇ ପ୍ରଣାଳୀ ଶିକ୍ଷକଙ୍କ ପାଇଁ ବେଶ୍ ସହଜ । ପିଲାକୁ ତୂଳୀଟିଏ ଧରେଇ ଦେଲେ ଓ ପିଲା ଛବି ଆଙ୍କିଲା, ରଙ୍ଗ ଦେଲା । ଶିକ୍ଷକ ପେନ୍‌ସିଲ୍‌ଟିଏ ଖାଲି ଦେଇଦେଲେ, ଆଉ ପିଲା ଲେଖିଚାଲିଲା । ପିଲା ତା'ମନ ମାନିଲା ପରି ଲେଖୁ, ପଢୁ । ଅନ୍ୟ ସାଥିମାନଙ୍କୁ ପଢ଼ିବାକୁ ଦେଉ ।

ସରଳତା ସବୁଠାରୁ ଅଧିକ ନିରାପଦ। ଗୁଡ଼ାଏ ଅଜଣା ପଦ ପିଲା ମୁଣ୍ଡରେ ଜବରଦସ୍ତ ଲଦି ଦେଇ, ସେଇ ପ୍ରାଣହୀନ ପଦଗୁଡ଼ାକ ପଢ଼େଇବା ଆଦୌ ଦରକାର ହୁଏ ନାହିଁ। ମୋତେ ତ ଡର ମାଡ଼େ। ଗୋଟିଏ ଛୋଟ ଗଛକୁ ଗୋଟିଏ ଛାଞ୍ଚରେ ଛନ୍ଦି ବଢ଼ାଇଲେ ସେ ଏକ ଅପ୍ରାକୃତିକ ରୂପ ନିଏ। ପିଲା ପକ୍ଷରେ ବି ସେଇଆ ହୁଏ ବୋଲି ମୁଁ ଭାବୁଛି। ପିଲାର ବିକାଶ ଖର୍ବ ହୁଏ। ଅପ୍ରାକୃତିକ ହୁଏ। ଏରିଚ୍ ଫ୍ରୋମେନ୍ ତ ସେଇ ସବୁ ବଂଚିବାର ସୁଆଦ ନ ଥାଇ ବଂଚିଥିବା ଜୀବନକୁ ସମାଜର ସବୁ ଧ୍ୱଂସ ଓ ପତନର କାରଣ ବୋଲି କହିଛନ୍ତି। ଛାଞ୍ଚରେ ବାନ୍ଧି ହେଲେ ବିକାଶଶୀଳ ଗଛଟିର ସର୍ବାଙ୍ଗୀନ ବିକାଶ ଖର୍ବ ହୁଏ ଏବଂ ଆମେ ଏକ ପରିପୂର୍ଣ୍ଣ ଗଛ ବଦଳରେ ଏକ ଗଣ୍ଠି-ଗଣ୍ଠିଆ ବିକୃତ ବୁଦା ଦେଖୁଁ। ସେଇ ସମସ୍ୟା ପିଲା ପକ୍ଷରେ ବି ହୁଏ। ଆଧୁନିକ ଯୁଗର ସମ୍ଭ୍ରାନ୍ତ ପରିବାରର ପିଲାଟିଏ ଜଣେ ଶିକ୍ଷକଙ୍କ ପାଖରେ ପହଞ୍ଚିବା ବହୁତ ଆଗରୁ, ତା'ର ଚାଲି-ଚଳଣି ସେଇପରି ଏକ ଛାଞ୍ଚରେ ପଡ଼ି ଗୁରୁତର ଭାବେ କ୍ଷତିଗ୍ରସ୍ତ ହୋଇ ସାରିଥାଏ। ମୁଁ ଭାବୁଛି ଅନ୍ତତଃ ବର୍ଷେ ଏଇ ରଚନାତ୍ମକ ପ୍ରଣାଳୀରେ ଶିକ୍ଷା ଲାଭ କରିବା ପରେ ପିଲାମାନେ ସାଧାରଣ ଆନୁଷ୍ଠାନିକ ପଦ ଶିକ୍ଷା କଲେ ବିଶେଷ କ୍ଷତି ହେବ ନାହିଁ। ବାହ୍ୟ ଉତ୍ତେଜକ ଓ ସମ୍ମାନ ପ୍ରଭାବରେ ସେମାନେ ରଚନାତ୍ମକ ଶିକ୍ଷା ପରେ ଆନୁଷ୍ଠାନିକ ଇଂରାଜୀକୁ ଆଦରି ନେଲେ, ବରଂ କ୍ଷତି କମ୍ ହେବ। ରଚନାତ୍ମକ ମୂଳଦୁଆ ଉପରେ ଯୁଗ ଉପଯୋଗୀ ମାନ ପାଇଁ ସାଧନା ସହଜ ହେବ।



କିନ୍ତୁ ତାହା ସମ୍ଭବ ହୋଇପାରିବ କେବଳ ଏକ ରଚନାତ୍ମକ ମୂଳଦୁଆ ଉପରେ। ପିଲାଙ୍କୁ ଶିକ୍ଷା ଦେବା ପଦ୍ଧତିରେ ଜଣାରୁ ଅଜଣା ଆଡ଼କୁ ଆଗେଇ ନେବା ଆଦୌ ନୂଆ ନୁହେଁ। ସମସ୍ୟା ସୃଷ୍ଟି ହୁଏ, ଯେତେବେଳେ ଏକାବେଳକେ ଅଜଣା ଅପରିଚିତ

ପଦଗୁଡ଼ିଏ ପିଲା ଉପରେ ଲଦି ଦିଆଯାଏ । ପିଲାର ନରମ ମନ ଉପରେ ଇଏ ଏକ ଆଘାତ । ପିଲାର ଗଢ଼ି ଉଠୁଥିବା ବ୍ୟକ୍ତିତ୍ୱକୁ ଏହା ଯେପରି ବାଧା ଦିଏ, ମନ ଭିତରେ ସେପରି ଅସମତା ସୃଷ୍ଟି କରେ । ବ୍ୟକ୍ତିତ୍ୱକୁ ବାହାରୁ ବାଧା ଦେଇ ବିଭାଜିତ କରି ଦିଆଯାଏ । ଫଳରେ ପିଲାଟିର ମୂଳଦୁଆ ଦୋହଲି ଯାଏ, ନିଜସ୍ୱ ସ୍ଥିତି ଦୁର୍ବଳ ହୋଇପଡ଼େ । ଶିକ୍ଷାନୀତି ଅନୁସାରେ ପିଲାର ଜାଣିବା ଆଗ୍ରହ ତା' ନିଜ ଭିତରୁ ବାହାରି ବାହାର ଜଗତକୁ ଆସେ । ବାହାରୁ ଆରମ୍ଭରୁ ତା' ଉପରେ ଅଜଣା ପଦ ଓ ନୂଆ ଭାବନା ଲଦିଦେଲେ ଭିତରର ଆବେଗ ଦବିଯାଏ । ପିଲାର ସ୍ୱାଭାବିକ ସୁନ୍ଦର ବିକାଶ ବାଧା ପାଏ । ଭିତରୁ ବାହାରକୁ ପ୍ରକାଶ ପାଇବା ପ୍ରକ୍ରିୟା ଲୋପ ହୋଇଯାଏ । ଏପରି ଭାବରେ ଆନୁଷ୍ଠାନିକ ଶିକ୍ଷା ଦ୍ୱାରା ପିଲାର ମନ ଅବହେଳିତ ହୁଏ । ତା'ର ନିଜ ମୂଳଦୁଆକୁ ଏଡ଼ି ଏକ ନୂଆ ମୂଳଦୁଆ ପଡ଼େ ।

ଅନେକ ସମୟରେ ମୁଁ କହିଛି : ମାଓଙ୍କ ଗାଆଁ (ପା') ଆଉ ୟୁରୋପୀୟ ପରିବେଶ ମଝିରେ ସେତୁଟିଏ ଲୋଡ଼ା- ଏ ଦୁଇଟିକୁ ସଂଯୋଗ କରିବାକୁ । ସାଧାରଣ ଭାବେ ଦେଖିଲେ ପ୍ରତ୍ୟେକ ଛୁଆ ପାଇଁ ସେତୁଟିଏ ଲୋଡ଼ା- ତା'ର ଭିତର ଦୁନିଆ ଆଉ ବାହାର ଦୁନିଆ ଭିତରେ ସମ୍ପର୍କ ରଖିବା ପାଇଁ । ଭିତରୁ ବାହାରକୁ, ଜଣାରୁ ଅଜଣାକୁ ଆଗେଇବା ପାଇଁ ସେତୁଟିର କାମ କରିବାକୁ ନେଇ ଏଇ ରଚନାତ୍ମକ ଶିକ୍ଷା ବା ସହଜ ପଠନ-ଲିଖନର ଯୋଜନା । ଏତିକି ସବୁ ଛୁଆ ପାଇଁ ଦରକାର- ସେ ଯେ କୌଣସି ଜାତି ବା ସଂପ୍ରଦାୟର ହେଉ ନା କାହିଁକି, , ସଂହତି ପାଇଁ ଏହା ଏକ ଅତି ଜରୁରୀ ଆବଶ୍ୟକତା । ସେତିକି ଅଭାବରୁ ଆଜି ସାରା ନିଉଜିଲାଣ୍ଡ୍‌ରେ ଆମେ ଗୋଟିଏ ଢାଞ୍ଚାର ଏକ ରୂପର ମନ ଦେଖି ପାରୁଛୁ- ଆମେରିକୀୟ ପ୍ରଭାବରେ ସର୍ବସାଧାରଣଙ୍କ ମାନସିକ ସ୍ଥିତିକୁ ଭିନ୍ନ ଏକ ଯାନ୍ତ୍ରିକ ଢାଞ୍ଚାରେ ମୋଡ଼ି ଗଢ଼ି ଦିଆଯାଇଛି । ମୁଁ ଭାବୁଛି, ଗୋଟିଏ ପ୍ରକାର ରୂପରେ ଗଢ଼ି ଉଠିବା ପାଇଁ ଆମ ଉପରେ ବାହାରୁ ପ୍ରବଳ ଚାପ ପଡ଼ୁଛି । ରେଡ଼ିଓ, ଫିଲ୍ମ, ଆଉ ଅନ୍ୟ ସବୁ ମନୋରଂଜନର ପ୍ରଭାବ ସମାଜ ଉପରେ ଏତେ ଅଧିକ ଭାବରେ ପଡ଼ୁଛି ଯେ, ଆମେ ସ୍କୁଲ ଭିତରେ ପିଲାର ବ୍ୟକ୍ତିଗତ ବିକାଶ ପାଇଁ ଯଦି କିଛି ନ କରୁଁ, ତେବେ ସେଇ ଗୋଟିଏ ଢାଞ୍ଚାର ମାନସିକତା ନେଇ ସମସ୍ତେ ଗଠିତ ହୋଇଯିବେ । ତେଣୁ, ବ୍ୟକ୍ତିଗତ ଭାବେ ପିଲାର ବ୍ୟକ୍ତିତ୍ୱର ବିକାଶ ପାଇଁ ମୁଁ ରଚନାତ୍ମକ ଶିକ୍ଷାକୁ ଗୁରୁତ୍ୱ ଦେଇଛି । ଏହାଛଡ଼ା ପ୍ରକୃତ ବିକାଶ ପାଇଁ ଅନ୍ୟ ବାଟ ନାହିଁ । ପିଲାଙ୍କ ପାଇଁ

କେତେକ ପଦ ଓ ଭାବ ବାଛି, ତା' ମୁଣ୍ଡରେ ଲଦି ଦେବା ଆଗରୁ ସେଥିପାଇଁ ପିଲାର ମନକୁ ପ୍ରସ୍ତୁତ କରିବାକୁ ପଡ଼ିବ । ଅଧିକନ୍ତୁ ନିଉଜିଲାଣ୍ଡର ଭିନ୍ନ ଭିନ୍ନ ଭାଗରୁ ଆସୁଥିବା ଭିନ୍ନ ଭିନ୍ନ ପିଲାଙ୍କ ମାନସିକତା ଦେଖି ମୁଁ ବୁଝିପାରୁଛି, ଏଇ ଏକ ପ୍ରକାରେ ଗଢ଼ିବା ଶିକ୍ଷାଦାନର ବିପଦ ଓ ଅପକାରିତା । ତେଣୁ ତାହା ବନ୍ଦ କରି ରଚନାତ୍ମକ ଶିକ୍ଷା ଦ୍ୱାରା ବ୍ୟକ୍ତିଗତ ବିକାଶ ସାଧନ କରିବା ନିହାତି ଦରକାର ବୋଲି ମୁଁ ସ୍ଥିର କରିଛି ।

ମୋ ପାଖରେ ସତୁରିଟି କୌତୁକିଆ ପୋଷାକ ଅଛି । ମୁଁ ପିଲାଙ୍କୁ ସେଗୁଡ଼ିକ ପିନ୍ଧିବାକୁ ଦିଏ । କିନ୍ତୁ ସମସ୍ତେ ଅଳ୍ପ କେତୋଟି ନିର୍ଦ୍ଦିଷ୍ଟ ପୋଷାକ ହିଁ ଚାହାଁନ୍ତି ! ଆପଣ ଯଦି କେତେ ଡଜନ ଗାଇଆଳ ପୁଅ ପୋଷାକ, ଝିଅ ପୋଷାକ ଆଉ କେତେ ଶହ ସୁପର୍‌ମେନ୍ ଓ କେତେ ହଜାର ରକେଟ୍‌ମେନ୍ ପୋଷାକ ତିଆରି କରି ଅତି ଶସ୍ତାରେ ସୁଦ୍ଧା ଗୋଟିକୁ ଟଙ୍କାଏ ବା କମ୍ ଭଡ଼ା ଲଗାନ୍ତି, ତେବେ ବି ଶୀଘ୍ର ଆପଣ ଆପଣଙ୍କ ମୂଳ ପାଣ୍ଠି ପାଇଯିବା ସଂଗେ ସଂଗେ ଏତେ ଲାଭ ପାଇବେ ଯେ, ଆପଣ ଆଉ କିଛି ନ କରି ସାରା ଜୀବନ ବଗିଚାରେ ବସି ଆରାମରେ ବିତେଇ ପାରିବେ !! ମୋ ପାଖରେ ପୃଥିବୀର ବଛା ବଛା ଶ୍ରେଷ୍ଠ ସାହିତ୍ୟ ପୁସ୍ତକ ଅଛି : ବୋ-ପୀପ୍, ଚୀନ୍‌ର ମେଡ଼ରିନ୍, ପିଟର୍ ପେନ୍, ଦି ଓ୍ୱିଚ୍ ଇତ୍ୟାଦି ବିଶ୍ୱର ବହୁତ ଅମୂଲ୍ୟ ରତ୍ନ । ସେଗୁଡ଼ିକରେ କ୍ରମେ ଧୂଳି ଜମିଗଲା । ତେଣୁ ଧୂଳି ଝାଡ଼ି ଅନ୍ୟ ଘରକୁ ପଠାଇଦେଲି ।

ପିଲାଙ୍କ ପକ୍ଷରେ ବି ସେଇ ସମସ୍ୟା । ଗୋଟିଏ ଢାଞ୍ଚାରେ ସବୁ ପିଲାଙ୍କୁ ଗଢ଼ିବା ପାଇଁ ଏଇ ଯେଉଁ ବ୍ୟବସ୍ଥା- ତାହା କେଡ଼େ ବିରକ୍ତିକର ଆଉ କଷ୍ଟଦାୟକ ! ମୃତ୍ୟୁ ତ ସେଇଥିପାଇଁ ବିରକ୍ତିକର !!

ଶାନ୍ତିରେ ପଢ଼ିଲା ପରି ପୁସ୍ତକ ଲେଖି ସେଗୁଡ଼ିକୁ ଶିଶୁ ଶ୍ରେଣୀରେ ଥୋଇଦେଲେ, ଶାନ୍ତି ପାଇଁ ବାଟ ଫିଟିଯିବ ନାହିଁ । ଏହାଦ୍ୱାରା ସମସ୍ୟାକୁ ଦୂର କରିବା ତ ଦୂରର କଥା, ତା' ପାଖ ଆମେ ମାଡ଼ି ପାରିବା ନାହିଁ । କୌଣସି ପିଲା ତ କେବେ ଜେନେଟ୍ କିମ୍ବା ଜନ୍‌ର ପୋଷାକ ମାଗି ନାହିଁ । ଧ୍ୱଂସାତ୍ମକ ମାନସିକତାର ଏକମାତ୍ର ପ୍ରତିକାର ରଚନାତ୍ମକ ମନୋଭାବ : ଗଠନମୂଳକ, ସୃଜନାତ୍ମକ ମାନସିକତା । ସେଥିରେ ଅତୀତରେ କୌଣସି ପରିବର୍ତ୍ତନ ହେଇନି । ଭବିଷ୍ୟତରେ ବି ହେବନାହିଁ । ମୁଁ ଯେତେବେଳେ ଏଇ କଥା କହୁଛି, ସେତେବେଳେ ମହାପୁରୁଷଙ୍କ ମେଳରେ ଥାଏ ।

ନିଉଜିଲାଣ୍ଡ୍‌ର ଜନ ସମାଜରେ ଗୋଟିଏ କଥା ସ୍ପଷ୍ଟ ଦେଖି ହୁଏ । ଲୋକଙ୍କର ଭିତରେ ତାଙ୍କର ପ୍ରାଣ ଶକ୍ତି ଦୁର୍ବଳ ହୋଇ ପଡ଼ିଛି । ଶୁଷ୍କ ହୋଇଯାଉଛି ।

ସମସ୍ତେ ନିଜେ ପ୍ରକୃତରେ ଯାହା ଦରକାର କରନ୍ତି, ସେଥିପାଇଁ ଚିନ୍ତା କରୁନାହାନ୍ତି କହିଲେ ଚଳିବ । ସବୁ ଜିନିଷ : ବସ୍ତୁଠାରୁ ଆରମ୍ଭ କରି ଭାବଧାରା ଯାଏଁ, ଦୋକାନରେ କିଣିବାକୁ ମିଳୁଛି- ବ୍ୟବହାର ପାଇଁ ପ୍ରସ୍ତୁତ ବା ରେଡ଼ିମେଡ୍ । ଘରୋଇ ଦରକାର ଯନ୍ତ୍ରଠାରୁ ଫିଲ୍ମ ଆଦିରୁ ସହଜରେ ମିଳୁଥିବା ଉତ୍ତେଜନା- ଯାଏଁ, ଯାହା କିଛି ଖିଆଲ ଅନୁସାରେ ଦରକାର କରିବେ, ଦୋକାନରେ ଗଚ୍ଛିତ ରହିଛି । ସତେ ଯେପରି ଏଇ ଫିଲ୍ମ ଆଉ ରେଡ଼ିଓରୁ ଲୋକେ ଜୀବନ ମଧ୍ୟ କିଣି ପାରିବେ ! କେଡ଼େ ଅସହାୟ..... ଫରୁଆରେ ଥିବା ବୁଢ଼ୀ ଅସୁରୁଣୀର ଜୀବନ ପରି.... ଆବଦ୍ଧ ଜୀବନ !!

ଆଉ ଯଦି କେତେବେଳେ ସେମାନେ ନିଜ ଭିତରୁ କିଛି ପାଇବାକୁ, ନୂଆ ଚିନ୍ତାଧାରାଟିଏ ଚିନ୍ତା କରିବାକୁ ଚେଷ୍ଟା କରନ୍ତି କିମ୍ବା ନିଜ ଅନ୍ତର ମଧ୍ୟରେ ଖୋଜନ୍ତି, ସେମାନେ କିଛି ବି ପାଆନ୍ତି ନାହିଁ । ମନ ଭିତରେ କିଛି ଗଢ଼ା ହୋଇ ନଥାଏ । ସେମାନେ ନିଜ ଭିତରେ କିଛି ପାଇପାରିବେ ବି ନାହିଁ । କାରଣ, ତାଙ୍କ ଭିତରର ମନ ଓ ପ୍ରାଣର ସେଇ ଚେତନା ମରି ଯାଇଥାଏ । ଅତି ଅଳ୍ପ ବୟସରୁ ସେମାନେ ହାତରେ ପାଇଛନ୍ତି ଚକମକିଆ ଖେଳନା ଏବଂ ଛୁଆର ଆଉ ଶିଶୁ (କିଣ୍ଡର ଗାର୍ଟେନ୍) ଶ୍ରେଣୀରେ ଉଜ୍ଜଳ ରଙ୍ଗୀନ ଚିତ୍ର ଏବଂ ହସ ଖୁସିର ଭିନ୍ନ ଭିନ୍ନ ଜିନିଷ । ନିଜେ ଭାବିଚିନ୍ତି ମନରେ ଧାରଣାଟିଏ ଗଢ଼ିବେ କାହିଁକି ? ଭାବିବା ପ୍ରକ୍ରିୟାଟି କାମରେ ନ ଲାଗି ଅକାମୀ ହୋଇଯାଏ, ଦୁର୍ବଳ ହୋଇପଡ଼େ, ମରିଯାଏ; ଆଉ ଟିକିଏ ବଡ଼ ହେଲାବେଳକୁ ଲୋପ ହୋଇଯାଇଥାଏ । ମନର ଅସୀମ ଶକ୍ତି ରଚନାତ୍ମକ କାମରେ ଲାଗିଲେ ସୃଜନୀ ଶକ୍ତିର ବିକାଶ ହୁଏ । କିନ୍ତୁ ତା'କୁ ଏଡ଼େଇ ଦେଇ ମାରି ଦିଆଯାଏ । ଫଳରେ ହସ, ଖୁସି, ଆରାମର ପାଠପଢ଼ା ଭିତରେ ମନର ଭାବିବା ଓ କଳ୍ପନା କରିବା ପ୍ରକୃତି ମରି ଯାଇଥାଏ । ଆଉ ସେଇ ଅଭାବକୁ ଏଡ଼ିଦେଇ ଆରାମ ପାଇବାକୁ ସେ ଆଶ୍ରା କରେ ଅହରହ କହି ଚାଲିଥିବା ରେଡ଼ିଓକୁ । ସେମାନଙ୍କର କଥାଭାଷା ସେ ଅନୁସାରେ ଏକ-ରୂପୀ ଢାଞ୍ଚାରେ ପଡ଼ିଯାଏ । ସେଇ ଏକ ରସ; କେଡ଼େ ନୀରସ !!

କିନ୍ତୁ କାହିଁକି ଏପରି ହୁଏ, ମୁଁ ଯେତେ ଭାବିଲେ ମଧ୍ୟ କେବେ ଭଲ ଭାବେ ବୁଝିପାରେ ନାହିଁ । ମୁଁ ଆଧୁନିକ ଶିକ୍ଷା କହିଲେ ଯାହା ବୁଝେ, ଆଜିର ଶିକ୍ଷା ସେଇ ଲକ୍ଷ୍ୟର ବିପରୀତ ଅଟେ । ଆମର ଉଦ୍ଦେଶ୍ୟ ହେଉଛି: ପିଲାଏ ନିଜ ନିଜର ରୁଚି ଅନୁସାରେ ସୃଜନଶୀଳ ଓ ବିଚାରବନ୍ତ ମଣିଷ ହୁଅନ୍ତୁ । କିନ୍ତୁ ବ୍ୟବହୃତ ପାଠ୍ୟ ପୁସ୍ତକର ମାନ କ'ଣ ଉପଯୁକ୍ତ ? ଏହା କ'ଣ ଏକତା ଓ ଦୃଢ଼ତାର ପ୍ରଣାଳୀ ? ଏହା କ'ଣ

ଶିକ୍ଷକମାନଙ୍କ ଯୋଗ୍ୟତା ? ଏହା କ'ଣ ଅତିଶୟ ସିନେମା ଓ ରେଡ଼ିଓ ବ୍ୟବହାରର ପରିଣାମ ? ଆଉ ସେଇ ସବୁ ବିଳାସର ଯେଉଁ ପ୍ରଭାବ ତା'ର ଫଳ ? କିମ୍ବା ଏସବୁ ନିମ୍ନ ମାନର ପଠନ ସାମଗ୍ରୀ ଅତିରିକ୍ତ ବ୍ୟବହାର ଯୋଗୁଁ ସବୁ ଦିଗରେ ତା'ର ଖରାପ ଫଳ ଦେଖାଦେଇଛି ? ଠିକ୍ କେଉଁଠି ଶିକ୍ଷାର ଉଦ୍ଦେଶ୍ୟ ବିଫଳ ହୋଇଛି, ତା' ମୁଁ ଜାଣି ନାହିଁ । କିନ୍ତୁ ଏଇ ଶିକ୍ଷା ସମସ୍ତଙ୍କୁ ଗୋଟିଏ ଡାଞ୍ଚାରେ ପକାଇ ଏକ-ରୂପୀ କରି ଦେଇଛି- ହଜାରକେ ନଅ ଶହ ଅନେଶ୍ୱତ ଜଣଙ୍କୁ ।

ମୋର ଜଣେ ପ୍ରାଧ୍ୟାପକ (ପ୍ରଫେସର) ବନ୍ଧୁଙ୍କୁ କିଛି ଦିନ ତଳେ ପଚାରିଥିଲି, ''ବିଶ୍ୱବିଦ୍ୟାଳୟରେ ଆପଣଙ୍କ ପାଖରେ କି ପ୍ରକାର ପିଲା ପହଞ୍ଚିଥାନ୍ତି ?'' ସେ କହିଥିଲେ, ''ସେମାନେ ସମସ୍ତେ ଅବିକଳ ଏକ ଡାଞ୍ଚାର ।'' ମୁଁ କହିଥିଲି, ''କିନ୍ତୁ, ଇମିତି କିମିତି ହେଉଛି ? ପ୍ରାଥମିକ ଶିକ୍ଷାର ସମୁଦାୟ ଯୋଜନା ତ ବିଭିନ୍ନତା ପାଇଁ ।'' ସେ ଉତ୍ତର ଦେଇଥିଲେ, ''ଆଚ୍ଛା, ସେମାନେ ଗୋଟିଏ କାରଖାନାର କେତେକ ନମୁନା ପରି ମୋ ପାଖରେ ପହଞ୍ଚନ୍ତି । ଜଣେ ହେଲେ ନିଜସ୍ୱ ଚିନ୍ତା ଥିବା ପିଲା ନୁହେଁ । ମୁଁ ତ ଅନେକ ସମୟରେ ସେମାନଙ୍କୁ ବୁଝେଇ କହେ, ମୋଠାରୁ ଶିଖୁଥିବା ବିଷୟବସ୍ତୁ ଅବିକଳ ମୋତେ ଫେରେଇ ନ ଦିଅନ୍ତୁ । ଅନେକ ସମୟରେ ମୁଁ ଜାଣି ଜାଣି କେତେକ ଭୁଲ ତଥ୍ୟ ଉପସ୍ଥାପିତ କରେ । ତଥାପି ପ୍ରତିବାଦ ଆସେ ନାହିଁ; କେହି ନିଜର ଭିନ୍ନ ମତଟିଏ ପ୍ରକାଶ କରିବାକୁ ଉତ୍ତେଜିତ ହୁଅନ୍ତି ନାହିଁ । ମୋର ଚେଷ୍ଟା ବିଫଳ ହୁଏ ।'' ମୁଁ ପଚାରିଥିଲି, ''ଅତି କମରେ ଶତକଡ଼ା ତିନି ଜଣଙ୍କର ତ ମୌଳିକତା ରହିଥିବ ?'' ତାଙ୍କର ଉତ୍ତର ଥିଲା, ''ହଜାରରେ ଜଣେ.... ହଜାର ହଜାରରେ ଜଣେ ଜଣେ ।''

ପାଞ୍ଚ ବରଷିଆ ପିଲାଙ୍କର ମନ ଏଇମିତିକା ଛାଞ୍ଚରେ ପଡ଼ି ନ ଥାଏ । ସେଇଥିପାଇଁ ଆମକୁ ଏଇଟା ବେଶ୍ ଉତ୍ସାହ ଦିଏ । ସତ କହିବାକୁ ଗଲେ, ମୁଁ ଅନେକ ସମୟରେ କେତେକ ଅତି-ଶୃଙ୍ଖଳିତ ୟୁରୋପୀୟ ପିଲାଙ୍କୁ ଛାତ୍ରଛାତ୍ରୀ ଭାବେ ପାଇଥାଏ । ସେମାନେ ଶୃଙ୍ଖଳା ନାଆଁରେ ଏମିତି ଏକ ଡାଞ୍ଚାରେ ପଡ଼ି ଗଢ଼ା ହୋଇଥାନ୍ତି ଯେ, ସହଜରେ ବାରି ହୋଇ ପଡ଼ନ୍ତି । ଏମାନେ ସେହି ସମ୍ଭ୍ରାନ୍ତ ପିତାମାତାଙ୍କ ସନ୍ତାନ ଏବଂ ଅନେକଟା ବିରକ୍ତିକର । କିନ୍ତୁ ପାଞ୍ଚ ବରଷର କୌଣସି ମାଓରି ପିଲା ଏମିତି ହୋଇ ନ ଥାଏ, ଶିକ୍ଷକ ପାଇଁ ଜମା ବିରକ୍ତିକର ନୁହେଁ । ଏବେ ମଧ୍ୟ ପାଞ୍ଚ ବର୍ଷ ବୟସର ଶିଶୁ ଶ୍ରେଣୀର ପିଲାଙ୍କ ଭିତରୁ ଅନେକ ପିଲା ଛାଞ୍ଚରେ ପଡ଼ି

ଏକରୂପୀ ହୋଇ ଯାଉନାହାନ୍ତି । ଏମାନଙ୍କୁ ପଢ଼େଇବା ବେଶ୍ ଆନନ୍ଦଦାୟକ । ସେଇ ପ୍ରଫେସରଙ୍କୁ କହିଥିଲି, ଶିଶୁ ଶ୍ରେଣୀରେ ଆମେ ଏବେ ମଧ୍ୟ ପିଲାଙ୍କର ମୌଳିକତା ଦେଖି ପାରୁଛୁ । ମୋର ଏଇ ଶିଶୁଶ୍ରେଣୀ ଓ ଆପଣଙ୍କ ବିଶ୍ୱବିଦ୍ୟାଳୟର ଶ୍ରେଣୀ ମଧ୍ୟରେ କେଉଁଠି ପିଲାଙ୍କ ଏଇ ମୌଳିକତା ନଷ୍ଟ ହୋଇଯାଉଛି । କିନ୍ତୁ ଏଇଟାକୁ ମୁଁ ଆମ ଶିକ୍ଷା ଯୋଜନାର କାମ ବୋଲି ଭାବୁ ନାହିଁ ।''

ମୁଁ ଭାବୁଛି, ଶିଶୁ ଶ୍ରେଣୀରୁ ବିଶ୍ୱବିଦ୍ୟାଳୟ ଶ୍ରେଣୀ ପର୍ଯ୍ୟନ୍ତ ସମସ୍ତ ଶିକ୍ଷାଦାନର ଘଟଣାକୁ ଗୋଟିଏ ଉପନ୍ୟାସ ପରି ଲେଖା ଯାଇପାରିବ । କେଉଁଠି ଶେଷ କରିବେ, ତାହା ଠିକ୍ ଭାବେ ସ୍ଥିର କରି ନ ପାରିଲେ, ଆପଣ ଉପନ୍ୟାସଟିର ଲେଖା ଆରମ୍ଭ କରି ପାରିବେ ନାହିଁ । ଆମ ଶିଶୁ ଶ୍ରେଣୀରେ ଶିକ୍ଷା ଦେଉଥିବା ଶିକ୍ଷକ-ଶିକ୍ଷୟିତ୍ରୀ ଯଦି ବିଶ୍ୱବିଦ୍ୟାଳୟ ଶ୍ରେଣୀ ଏବଂ ବିଶ୍ୱବିଦ୍ୟାଳୟର ଶିକ୍ଷାଦାତାମାନେ ଶିଶୁ ଶ୍ରେଣୀ ପରିଦର୍ଶନ କରନ୍ତେ,କିଛି ସୁଫଳ ମିଳନ୍ତା କି ?

ଗତ ବର୍ଷ ଦୁଇଜଣ ବିଶ୍ୱବିଦ୍ୟାଳୟ ଅଧ୍ୟାପକ ମୋ ଶିଶୁ ଶ୍ରେଣୀ ପରିଦର୍ଶନ କରିଥିଲେ । ସେମାନେ ସବୁ ଦେଖି କେବଳ ଖୁସି ହୋଇଯାଇ ନଥିଲେ, ମୋ ସହିତ ପୂରା ଏକମତ ହୋଇଥିଲେ । ସେମାନଙ୍କ ଚିନ୍ତାଧାରା ମୋର ସହାୟକ ହୋଇଥିଲା ।

ତଥାପି, ମୁଁ ଯାହା ବିଶ୍ୱାସ କରେ ଏବଂ ମୁଁ ଯାହା କାର୍ଯ୍ୟରେ କରି ଆସୁଛି-ସେ ଦୁଇଟି ପୂରାପୂରି ଏକା କଥା ନୁହେଁ । ଉଦାହରଣ ଭାବେ, ମୋର ଦୃଢ଼ ବିଶ୍ୱାସ ଯେ, ପିଲାଟିକୁ ସାତ ବର୍ଷ ହେଲା ଯାଏଁ ସେ କେବଳ ରଚନାତ୍ମକ କାମ କରି ନିଜର ସୃଜନୀ ଶକ୍ତିକୁ ବଢ଼େଇବ । ବିଭିନ୍ନ ମାଧ୍ୟମରେ ବିଭିନ୍ନ କାମ ଭିତରେ ଲକ୍ଷ୍ୟ ତାହା ହିଁ ରହିବ । କିନ୍ତୁ କେତେକ ଅବସ୍ଥାରେ ମୁଁ ଅଲଗା ବିଷୟ ବି ପଢ଼ାଏ ।

ଏଣୁ, ଏଇ ସବୁ ମନରେ ରଖି, ଶିଶୁ ଶ୍ରେଣୀରେ ଆମର ଲକ୍ଷ୍ୟ ହେଉଛି, ପିଲାଙ୍କ ଭିତରେ ସହଜ ପଠନ ଲିଖନ ଅଭ୍ୟାସରେ ଗଠନମୂଳକ ଭାବେ ପ୍ରତ୍ୟେକର ନିଜସ୍ୱ ଦିଗରେ ଆଗେଇ ଯିବାରେ ସାହାଯ୍ୟ କରିବା । ନିଜସ୍ୱ ଅନ୍ତର ଶକ୍ତିର ସଂରକ୍ଷଣ; ନିଜର ଭିତର ଦୃଷ୍ଟିକୋଣର ବିକାଶ ପାଇଁ ଅଭ୍ୟାସ ଏବଂ ନିଜସ୍ୱ ବ୍ୟକ୍ତିତ୍ୱର ସୁରକ୍ଷା ।

ମୁଁ ନିରୂପିତ ହୋଇ ନ ଥିବା ଭବିଷ୍ୟତ ଏବଂ ବିଭିନ୍ନତାକୁ ଭଲ ପାଏ । ମତେ ନାଟକ ଭଲ ଲାଗେ, ଆଉ ମୁଁ ହସଖୁସି ଚାହେଁ । ପୃଥିବୀରେ ମୁଁ ଶାନ୍ତି ଆଶା କରେ ।

ଆଉ ହସଖୁସିର ମଣିଷ ମୋତେ ଭଲ ଲାଗନ୍ତି । ଏ ସବୁର ଅର୍ଥ ହେଉଛି, ମୁଁ ଜୀବନକୁ ତା'ର ସ୍ୱାଭାବିକ ନିଜସ୍ୱ ଢାଞ୍ଚାରେ ବଢ଼ି ଉଠିବାକୁ ଭଲ ପାଏ । ଆଉ ଏଇ ସବୁ ତ ଆପଣ ଶିଶୁ-ଶ୍ରେଣୀରେ ଦେଖିବାକୁ ପାଇବେ । ସେଠାରେ ପ୍ରତ୍ୟେକଟି ସୃଜନାତ୍ମକ ଦିଗରେ ଆଗେଇ ଯିବାର ଚେଷ୍ଟା ଲାଗି ରହିଥାଏ । ଏଇଥିପାଇଁ ଏଠାରେ ପ୍ରତ୍ୟେକ ପିଲାର ଲିଖନ ଓ କଳାରେ ତା' ନିଜର ଶୈଳୀ ଜନ୍ମ ନିଏ । କାରଣ କଳା ତ ଆପଣଙ୍କ କାମ କରିବାର କୌଶଳ । ସେଇ କଳା ଉପରେ ଗୁରୁତ୍ୱ ଦେଇ ଶିକ୍ଷା ଦେଲେ ନିଜସ୍ୱ ଶୈଳୀ ପ୍ରକାଶ ପାଏ ।

କିଛି ଦିନ ତଳେ 'ଦଦରା' ପଦଟି ଆମ ପାଖରେ ବେଶ୍ କୌତୁକିଆ ରୂପରେ ପହଞ୍ଚିଲା । ବ୍ରାଏନ୍ ଲେଖିଥିଲା, "ମୁଁ ସହରକୁ ଯାଇଥିଲି । ଗୋଟିଏ ଦଦରା ଗାଡ଼ିରେ ଫେରିଲି ।" ପଦଟି ଆମ ଛାତିକୁ ଛୁଇଁଲା । ସବୁ ପିଲା ସେ ଗାଡ଼ି ବିଷୟରେ କେତେ କଥା ପଚାରିଲେ । ଯଦିଓ ପଦଟିକୁ ସଂଗେ ସଂଗେ ତାଲିକାକୁ ନିଆଗଲା, ତଥାପି ଏବେ ମଧ୍ୟ ପିଲାଏ ସେଇ ପଦଟିକୁ ବନାନ ତାଲିକାରେରଖିବାକୁ ଚାହାନ୍ତି । ଆମେ ଅବଶ୍ୟ ଏ ପଦଟିକୁ ବନାନ ତାଲିକାରେ ରଖିବା ଦରକାର କରୁନୁ । ବ୍ରାଏନ୍ କହେ, ସେ ଏଇ ପଦଟିର ବନାନକୁ ଭଲ ପାଏ । ମୁଁ ଯାହା ବୁଝେ, ସେଥିରୁ କହିବାକୁ ଚାହେଁ ଯେ, ଏଇଟା ପିଲାଙ୍କ ନିଜ ଖୋଳ ତାଡ଼, ନିଜ ମନର ଅଗ୍ରଗତି । ଆଉ, ଏଇ ପରିବେଶ ତ ଶିକ୍ଷକଙ୍କ ପାଇଁ ସବୁଠୁଁ ବଡ଼ ଆଶୀର୍ବାଦ, ସୁଯୋଗ ।

ଶିଶୁ ଶ୍ରେଣୀରେ ଯୁଦ୍ଧ ଆଉ ଶାନ୍ତି ସବୁବେଳେ ତ ଲାଗି ରହିଥାଏ । ପରିବେଶରେ ତା' ପ୍ରଭାବ ସବୁବେଳେ ରହିଥାଏ ।

ସତରେ ତ ଆଜିକାଲି ଖେଳନା ଦୋକାନ ବନ୍ଧୁକରେ ଭର୍ତ୍ତି, ପିଲାଙ୍କ ହାତରେ ଟେଙ୍କ୍, ଯୁଦ୍ଧ ଜାହାଜ ଏବଂ କଳାପଟାରେ, ମାଟି କାମ ଓ ଚିତ୍ର ଆଙ୍କିବା ପଟାରେ ମଧ୍ୟ ଯୁଦ୍ଧ-ଖେଳନା । ମାତ୍ର ମୁଁ ଏହାକୁ ଭୟ କରେ ନାହିଁ । କାରଣ ମୋର କାମ ହେଉଛି, ଶିଶୁ ଅବସ୍ଥାରୁ ମଣିଷ ମନରେ ସୃଜନଶୀଳତା ବଢ଼େଇବା, ରଚନାତ୍ମକ କାମ ମଧ୍ୟ ଦେଇ ଗଢ଼ି ତୋଳିବା ମନୋଭାବକୁ ଦୃଢ଼ କରିବା । ଏହା ଦ୍ୱାରା ଭବିଷ୍ୟତରେ ସେମାନେ ଧ୍ୱଂସାତ୍ମକ କାମ ଓ ମନୋଭାବକୁ ହଟେଇ ଦେଇ ନ ପାରିଲେ ବି ନିଶ୍ଚୟ ପ୍ରତିରୋଧ କରିପାରିବେ । ଶିଶୁ ଶ୍ରେଣୀରେ ଘଟୁଥିବା ପ୍ରତ୍ୟେକ ଘଟଣା/କାମ ଗଠନମୂଳକ ନଚେତ୍ ଧ୍ୱଂସ-ମୂଳକ ହୋଇଥାଏ । ଶିଶୁର ପ୍ରତିଟି ଅଙ୍କନ, ପ୍ରତିଟି ଗଠନ, ପ୍ରତ୍ୟେକ ବାକ୍ୟ ଓ ପ୍ରତିଟି ନାଚ ଗଠନାତ୍ମକ ହୋଇଥାଏ,



ନ ହେଲେ ଧ୍ୱଂସାତ୍ମକ ହୋଇଥାଏ । ସେଇଥିପାଇଁ ଏରିଚ୍ ଫ୍ରୋମେନ୍ କହିଛନ୍ତି, "ପ୍ରତ୍ୟେକ ମଣିଷର ଜୀବନକୁ ପରିଚାଳିତ କରିବା ପାଇଁ ତା' ଭିତରେ ଏକ ଶକ୍ତି-କେନ୍ଦ୍ର ଥାଏ ଏବଂ ତାହାର ନିଜସ୍ୱ ଗୁଣ, ଧର୍ମ ରହିଥାଏ । ତାହା ପ୍ରକାଶ ପାଇବାପାଇଁ ଏବଂ ପ୍ରସାରିତ ହେବାକୁ ଚେଷ୍ଟା କରି ଜୀବନରେ ଉପଯୁକ୍ତ ଭାବେ ବଂଚିବା ପାଇଁ ହୋଇଥାଏ । ଜଣେ ଯେତିକି ପରିମାଣରେ ଏଥିରେ ବାଧା ପାଏ ଅର୍ଥାତ୍ ନିଜସ୍ୱ ବିକାଶରେ ବାଧା ପାଇ ଅନ୍ୟ ବାଟରେ ଗତି କରେ, ସେ ସେତିକି ପରିମାଣରେ ଧ୍ୱଂସାତ୍ମକ କାର୍ଯ୍ୟ କରିଥାଏ । ମଣିଷ ପ୍ରାଣ ଯେତେବେଳେ ବଂଚିଲା ପରି ନିଜ ଢାଞ୍ଚାରେ ବଂଚିପାରେ ନାହିଁ, ସେତେବେଳେ ଧ୍ୱଂସ ସାଧନ କରେ ।"

ଏହା ଉପରେ ମୋର ଗଭୀର ବିଶ୍ୱାସ ରହିଛି; ଜଣେ ଚିତ୍ରକର ତା'ର ତୂଳୀ ଉପରେ ଏବଂ ଜଣେ ଶ୍ରମିକ ତା' ହତିଆର ଉପରେ ଭରସା ରଖିଲା ପରି, ଏ ବିଶ୍ୱାସରେ ମୋର ଆବେଗ ଭରି ରହିଛି । ପ୍ରତ୍ୟେକ କାର୍ଯ୍ୟ ପାଇଁ, ବିଶେଷତଃ ଜଣେ ଶିକ୍ଷକଙ୍କ ପାଇଁ, ତାଙ୍କ କାର୍ଯ୍ୟର ଆକାର ପ୍ରକାର ଓ ସାଧନ-କୌଶଳ ନିରୂପିତ ହୋଇଥିବା ଦରକାର । ମୋର ସାଧନ ପ୍ରଣାଳୀ ଅନୁସାରେ ଏଇ ଛୋଟ ବୟସରୁ ଗଠନ-ମୂଳକ ମନୋଭାବ ଗଢ଼ିନେଲେ, ତାହା ସବୁ ଦିନ ପାଇଁ ତା'ର ଚରିତ୍ର ଉପରେ ପ୍ରଭାବ ପକାଇବ । ତାହା ହିଁ ହେବ ଯୁବ ସମସ୍ୟାର ସମାଧାନ । ମୋ ପାଇଁ ତ ଏହା ପଦାର୍ଥ-ବିଜ୍ଞାନର ନିୟମ ପରି ଅଭ୍ରାନ୍ତ ସତ୍ୟ । ଆଉ ସେଥିରେ ରହିଛି ସୌନ୍ଦର୍ଯ୍ୟ, ପ୍ରତି ପ୍ରାଣର ଆବେଗ, ଯାହା ଦମନ କରି ହୁଏ ନାହିଁ । ଭାଷାରେ ପ୍ରକାଶ କରି ହୁଏ ନାହିଁ ।

# ଦୈନିକ ସାଧନ ମାର୍ଗ

**ଘ. ୯.୦୦ରୁ ଘ ୧୦.୪୫: ମନକୁ ଖୋଲିବା ।**

ସକାଳ ବେଳାର ରଚନାତ୍ମକ କାମ

| | |
|---|---|
| କଥାଭାଷା | କାଢିବା |
| ଚିତ୍ର ଅଙ୍କନ | କଳହ କରିବା |
| ରଚନାତ୍ମକ ଲିଖନ | ଗଢ଼ିବା |
| ମାଟି | ରଚନାତ୍ମକ ନାଚ |
| ବାଲି | ଅସଲି ପଦତାଲିକା |
| କନା ରଙ୍ଗେଇବା | ରଚନାତ୍ମକ ପଦତାଲିକା |
| ଖେଳନା ସଫେଇ | ଖେଳନା, ନୌକା |
| ଗୀତ | ଚକ୍ |
| ଦିବାସ୍ୱପ୍ନ | ଆଦର କରିବା |

**ଘ ୧୧.୦୦ରୁ ଘ ୧୨.୦୦: ମନ ଭିତରକୁ ନେବା :**

ଛୋଟ ଛୁଆଙ୍କ ପାଇଁ ଅସଲି ପଦ : ୧୫ ମିନିଟ୍

ରଚନାତ୍ମକ ପଦ ତାଲିକା

ରଚନାତ୍ମକ ପଠନ

ରଚନାତ୍ମକ ଆଲୋଚନା

କାହାଣୀ, ଛବି, ଛୋଟ ଛୁଆଙ୍କ ପାଇଁ ଛବି ବହି ।

**ଘ ୧.୦୦ରୁ ଘ ୨.୦୦: ମନ ଖୋଲା ଭାବ ପ୍ରକାଶ:**

ସୁନେଲି ବିଭାଗ

ଛୋଟ ଛୁଆଙ୍କ ପାଇଁ ପ୍ଲାଷ୍ଟିକ୍ ମାଧ୍ୟମ ।

**ଘ ୨.୧୦ରୁ ଘ. ୩.୦୦: ଭାବ ଗ୍ରହଣ ।**

ଉପର ବେଳାର ଶ୍ରେଣୀ ଅନୁରୂପ କାମ

ଶ୍ରେଣୀ ଉପଯୁକ୍ତ ପଦତାଲିକା

ଶ୍ରେଣୀ ଉପଯୁକ୍ତ ପଠନ

ମାଓରି ପୁସ୍ତକର ପଦତାଲିକା

ମାଓରି ପୁସ୍ତକ ପଠନ

ସହାୟକ ପଠନ

କାହାଣୀ, ଗୀତ, ପଦ୍ୟ

ଛୋଟ ଛୁଆଙ୍କ ପାଇଁ ଅକ୍ଷର



# ଗୋଟିଏ ମାଓରି ବିଦ୍ୟାଳୟର ଅନୁଭୂତି

-ଦିନଲିପିରୁ କିଛି ଅଂଶ

''ମାଓରିମାନଙ୍କ ସହିତ ଆପଣ କ'ଣ ଅନୁଭବ କରୁଛନ୍ତି ?'' ସ୍କୁଲକୁ ଦେଖି ଆସିଥିବା ଜଣେ ଶିକ୍ଷୟିତ୍ରୀଙ୍କୁ ମୁଁ ପଚାରିଲି ।

''ଓଃ, ଏମାନଙ୍କର ଏତେ ଶକ୍ତି, ସେଇ ତ ସମସ୍ୟା । ଏମାନେ ସବୁବେଳେ ସକ୍ରିୟ, ଅସ୍ଥିର । କିନ୍ତୁ ଥରେ ଠିକ୍ ଭାବେ ତାଙ୍କ ଗଳାରେ ପାଦ ପକେଇ ଚାପି ଦେଲେ, ସେମାନେ ଠିକ୍ ହୋଇଯିବେ ।''

''ମୁଁ ବୁଝିଛି.... ବୁଝିଛି ।''

ସତରେ ମୁଁ ବୁଝେ । କିନ୍ତୁ ସେ ବିଷୟରେ କଥା ହୁଏନି । ମୁଁ ଅନ୍ୟମାନଙ୍କୁ ଏଇ ନୂଆ ଗୋଷ୍ଠୀର ଶକ୍ତିର ବଳ ବିଷୟ ବର୍ଣନା କରିବାକୁ ଚେଷ୍ଟା କରେନି । ପ୍ରକୃତ କଥା ହେଉଛି, ଯେତେବେଳେ ଏହାକୁ ''ଶକ୍ତିର ବଳ'' ବୋଲି ମୁଁ କହେ, ଠିକ୍ ଭାବେ କହିପାରିନି ବୋଲି ମୁଁ ବୁଝିପାରେ । ଏହା ତ ଏକ ଆଗ୍ନେୟଗିରି ଏବଂ ଅନବରତ ଉଦ୍‌ଗୀରଣ କରି ଚାଲିଛି । ମାଓରି ଶିଶୁ ଶ୍ରେଣୀରେ ଦୁଇ ଗୋଡ଼ରେ ଠିଆ ହୋଇ ପୁରୁଣା ପ୍ରଣାଳୀରେ ପାଠ ପଢ଼େଇବା ହତ୍ୟା ଆଉ ପାଗଳାମି ଆଉ ଏକ ମାନସିକ ମୃତ୍ୟୁ । କିନ୍ତୁ ଠିଆ ନ ହୋଇ ଏମାନଙ୍କୁ ପାଠ ପଢ଼େଇବା ଏକାବେଳକେ ଅସମ୍ଭବ । ମୁଁ ଜାଣିବାରେ ଏକମାତ୍ର ଉପାୟ ହେଉଛି, ସେମାନେ ନିଜେ ନିଜକୁ ପଢ଼େଇବାରେ ସୁବିଧା ଦେବା । ଆଉ ମୁଁ ସେଇଆ କରେ । ସେପରି କରିବାକୁ ବାଧ୍ୟ ହୁଏ ।

ମୁଁ ପ୍ରକୃତରେ ଯଦି କିଛି କରେ, ତେବେ ଅବିକଳ ସେଇଆ ହିଁ କରେ । ସଭାର ସଭାପତି ପରି ଧୀରେ ପଛେଇ ଯାଏ- ନିଜକୁ ନିଜେ ସେମାନେ ପଢ଼ାନ୍ତୁ । ଆଉ ମୁଁ ପଢ଼େଇବାକୁ ଆଗେଇଗଲେ କେବଳ ଶୈଳୀ ଶିଖାଏ । ମୋତେ ବିଶ୍ୱାସ କରନ୍ତୁ; ମୁଁ କେବଳ ସେତିକି ଶିଖାଏ । ସବୁ ବିଷୟରେ ସବୁବେଳେ ମୁଁ କେବଳ ସେତିକି ଶିକ୍ଷା ଦିଏ । କାରଣ: ଆଉ ସବୁ ଏହାକୁ ଅନୁସରଣ କରେ । ମୁଁ କେବଳ ଶୈଳୀ ଶିଖାଏ- କେବଳ ଶୈଳୀ ।

ଏ ରାସ୍ତାରେ ଚାଲିବାକୁ ହେଲେ, ଆପଣଙ୍କୁ ସାହସୀ ହେବାକୁ ପଡ଼ିବ, ନଚେତ୍ ଦୁଃସାହସୀ ଏବଂ ଏ ରାସ୍ତାର ଶେଷରେ ଆପଣ ପହଞ୍ଚିବେ, ଏକ ଆନନ୍ଦମୟ ବିସ୍ତୃତ କ୍ଷେତ୍ରରେ । ଆଉ ମୁଁ ସାହସୀ ନୁହେଁ । କିନ୍ତୁ ମୁଁ ସେଇ ପଡ଼ିଆରେ ପହଞ୍ଚିଛି, ଯେଉଁଠି ଆନନ୍ଦ ଅଛି, ବିସ୍ତୃତି ଅଛି । ମୁଁ ବେଶ୍ ସଚେତନ: ଏ କ୍ଷେତ୍ର କୋଳାହଳପୂର୍ଣ । କାରଣ ମୋ ଶିକ୍ଷକ ମନ ପରମ୍ପରାଗତ ପୁରୁଣା ଶିକ୍ଷାପଦ୍ଧତି ଅନୁସାରେ ନୀରବତାରେ ନିବଦ୍ଧ । କିନ୍ତୁ ମୁଁ ତ କେବଳ ଏଇ କୋଳାହଳପୂର୍ଣ 'ପରିବେଶ' ବୁଝି ପାରେ ଓ ବିଶ୍ୱାସ କରେ । ମୁଁ ଅତି ସରଳ ହୋଇଥିବା ଫଳରେ ମୋତେ ତା'ର ପ୍ରତିକ୍ରିୟା ଭୋଗ କରିବାକୁ ପଡୁଛି, ଏକ ଅପରାଧୀ ପରି ! ବୃତ୍ତିରେ ଶିକ୍ଷକତା କରି ମଧ୍ୟ 'ବାଛନ୍ଦ' (ଶିକ୍ଷକ ସମାଜ-ଚ୍ୟୁତ), ଅପରାଧରୁ ଯେପରି ରକ୍ଷା ନାହିଁ, ତାହା ଯେପରି ମୋ ଭିତରେ ଜଡ଼ିତ ହୋଇ ରହିଯାଇଛି, ତା'କୁ ଦୂର କରିବା ଯେପରି ଅସମ୍ଭବ !

ତେଣୁ ବୃରି (ଶିକ୍ଷକତାର ଗତାନୁଗତିକ ପଦ୍ଧତି) ବିରୋଧୀ ହୋଇ ଲମ୍ବା ସମୟ ଧରି ବସି ରହେ, ପିଲାଙ୍କ କାମ ଦେଖେ ଆଉ ଚିନ୍ତା କରେ । ସେଥିରୁ ମୁଁ ଦୁଇଟି ପ୍ରଧାନ ଶତୃଙ୍କୁ ଚିହ୍ନିପାରିଛି- ଯାହାକୁ ଆମେ କହୁଁ, ଶିକ୍ଷା । ଶତ୍ରୁ ଦୁଇଟି ହେଉଛନ୍ତି ଏହିପରି.....

ପ୍ରଥମଟି ହେଉଛି ପିଲାଙ୍କର ପରସ୍ପର ପ୍ରତି ଆଗ୍ରହ । କିନ୍ତୁ ଆମର ଧରାବନ୍ଧା ଶିକ୍ଷା ପଦ୍ଧତିରେ ଇଏ ତ ଶଇତାନ୍ !!- ବନ୍ଦ କରିବାକୁ ହେବ : ନିଜ ନିଜ ଭିତରେ କଥାଭାଷା, ଖେଳ, ଲଢ଼େଇ ଆଉ ପରସ୍ପରକୁ ଭଲପାଇବା '!! ସତେ ଯେପରି ଏ ସବୁ ବେ-ଆଇନ (ଅ-ନୈତିକ ?) କାର୍ଯ୍ୟର ସମ୍ପର୍କ ! ଆଉ ମୋ କୈଫିୟତ ହେଉଛି, ଆତ୍ମ-ରକ୍ଷା ପାଇଁ କହି ପାରନ୍ତି- ମୋର ଶିକ୍ଷାଦାନର ଏଇସବୁ ହେଉଛି ଉପାଦାନ । ମୁଁ ପିଲାଙ୍କର ଏଇ ପ୍ରବୃତ୍ତିକୁ ଦମନ କରିପାରେ ନାହିଁ । ତେଣୁ ତାକୁ ହିଁ ଭିତ୍ତିକରି ମୁଁ ମୋର ଶିକ୍ଷାଦାନ ପଦ୍ଧତି ଗଢ଼େ । ପିଲାଙ୍କର ସେଇ ଅସ୍ଥିର କାର୍ଯ୍ୟକଳାପକୁ ଯୋଡ଼ି ତାଙ୍କୁ ଶିଖାଏ । ସେମାନେ ଯୋଡ଼ି ଯୋଡ଼ି ହୋଇ ପଢ଼ନ୍ତି । ଜଣେ ବାକ୍ୟଟିଏ କହିଲେ ଆର ଜଣକୁ ଆଉ ଗୋଟିଏ ବାକ୍ୟ ପଢ଼ି ଶୁଣାଏ । ତେଣୁ କେହି ହାଲିଆ କି ବିରକ୍ତ ହୁଅନ୍ତି ନାହିଁ । ଜଣେ ଆର ଜଣଙ୍କ ଭୁଲ ସୁଧାରି ନିଏ । ଜଣେ ଅଳସୁଆ ହୋଇପଡ଼ିଲେ, ଆରଜଣକ ତାକୁ ଚଞ୍ଚଳ କରାଏ । ସଭିଏଁ ନିଜ ନିଜର ପାଳିକୁ ଜଗନ୍ତି; ନିଜ ପାଳି ପଡ଼ିଲେ ସେ ତା' କଥା କହେ, ତା' କାମ କରେ । ଏମିତି ଯୋଡ଼ି ଯୋଡ଼ି ହୋଇ ସେମାନେ ପରସ୍ପରକୁ ଶିଖାନ୍ତି, ନିଜ ନିଜକୁ ପଢ଼ାନ୍ତି ।

ମସିଣା ଉପରେ ସେମାନେ ଗୋଡ଼ ଭାଙ୍ଗି, ଚକା ପକେଇ ବସନ୍ତି, ସେମାନଙ୍କ ଆଣ୍ଠୁକୁ ଆଣ୍ଠୁ ଲାଗିଥାଏ । ଚୌକୀ ଆଉ ମେଜ ଉପରେ ବି ସେମାନେ ବସନ୍ତି । ପରସ୍ପର ଭିତରେ ଯୁକ୍ତିତର୍କ ଚାଲେ, ଭୁଲ ସଂଶୋଧନ ହୁଏ, କିଏ କାହାକୁ ଗାଳି କରେ; ଆଉ ପରସ୍ପର ଭିତରେ ମୁରୁକି ହସ ବି ଥାଏ । ତେବେ ସେମାନେ ସବୁବେଳେ ମିଳିମିଶି କାମ କରନ୍ତି । ଏଇସବୁ ସମୟର ମିଳାମିଶା ଭିତରେ ପରସ୍ପର ମଧ୍ୟରେ ସଂପର୍କ ଗାଢ଼ ହୁଏ । ଏଇ ସମ୍ପର୍କ ତାଙ୍କ ଜୀବନ ସହିତ ଯେପରି ମିଶି ଯାଇଥାଏ । କେଡ଼େ ସୁନ୍ଦର ଏଇ ପଦଟି, ସଂପର୍କ (ସମ୍ବନ୍ଧ) ! ତା' ସାଥିରେ ପିଲାଏ ଗଢ଼ି ଚାଲନ୍ତି । ତାଙ୍କର ସୃଜନଶୀଳତା ବଢ଼ି ଉଠେ ।

ଦ୍ୱିତୀୟ ରୋଗଟି ହେଉଛି: ଏଇ ନୂଆଗୋଷ୍ଠୀର କିଛି ନା କିଛି ତିଆରି କରିବାର ଇଚ୍ଛା । ଏମାନେ ମଧ୍ଯ ଗୋରା ପିଲାଙ୍କ ପରି ହାତ ଉପରେ ହାତ ଥୋଇ,




ଧୀର ସ୍ଥିର ହୋଇ ବସି ପାରନ୍ତି । ତେବେ ଯାହା କିଛି କରିବାକୁ ହେବ ଏବଂ କିପରି କରିବାକୁ ହେବ, ଜାଣିବା ଯାଏଁ ବସନ୍ତି, ମନ ଦେଇ ଶୁଣନ୍ତି । ତା'ପରେ ନିଜ ଡାଆଁରେ ଗଡ଼ି ନିଅନ୍ତି ବୋମା ପକେଇବା ଉଡ଼ାଜାହାଜ ଯାଏଁ, ଆଉ ଶ୍ରେଣୀ ଭିତରେ ଏପଟ ସେପଟ ଘୂରି ବୁଲି ଭରି ଦିଅନ୍ତି କୋଳାହଳ । ପାଟିତୁଣ୍ଡ, ହୋ-ହା, କୋଳାହଳ । କିନ୍ତୁ ଆପଣ ଯଦି କୋଳାହଳକୁ ଭଲ ପାଆନ୍ତି ନାହିଁ, ତେବେ ଶିକ୍ଷକ ହୁଅନ୍ତୁ ନାହିଁ । କାରଣ: ପିଲାଏ ତ କୋଳାହଳର ଜୀବ, ଆଉ ବିଶେଷ ଭାବରେ ଏଇ ଯେଉଁ ନୂଆ ଗୋଷ୍ଠୀର ପିଲାମାନେ- ମୋ ଜାଣିବାରେଏମାନେ ସବୁଠୁଁ ଅଧିକ କୋଳାହଳପୂର୍ଣ୍ଣ । କିନ୍ତୁ ଏ କୋଳାହଳ ବେଶ୍ ସ୍ୱାଭାବିକ, ତେଣୁ ସହି ହୁଏ । ସତ କହିବାକୁ ହେଲେ, ଏଗୁଡ଼ିକ ହେଉଛି ବେଳେ ବେଳେ ରାଗରେ ରଡ଼ି ଛାଡ଼ିବା, କାହାରିକୁ ଦୋଷ ଦେଇ ଚିତ୍କାର କରିବା, ସପ୍ତମ ସ୍ୱରରେ କାନ୍ଦି ଉଠିବା, ଆଉ କିଛି ଗୋଟିଏ ପଡ଼ିଯିବାର ଶବ୍ଦ । ଆଉ ଏ ସବୁ ଭିତରେ ବି ଆନନ୍ଦ-ଧ୍ୱନୀ ଶୁଭିଲାଣି ତ, କିଏ ଜଣେ ଗୀତ ଗାଇ ଉଠିଲାଣି । ତା' ସହିତ ଭଙ୍ଗାଭଙ୍ଗି, ଫିଙ୍ଗାଫିଙ୍ଗି ଆଉ ସେ ଭିତରୁ ହସ.... ହସି ହସି ଫାଟି ପଡୁଛି ଯେମିତି କିଏ ! ତେବେ ଏ ସବୁ ପିଲାଙ୍କର ଭିତର ଶକ୍ତିର ପ୍ରକାଶ... ଏ ଶକ୍ତି ଖର୍ଚ୍ଚ ହେବା ଦରକାର.... ସେଥିପାଇଁ ଆମେ ଏଥିରେ ସାହାଯ୍ୟ କରିବା ଉଚିତ୍ । ମୁଁ ତ ସବୁ କିଛି ଘଟିବାକୁ ଦିଏ - ଅବଶ୍ୟ ନିରାପଦ ଭାବେ । କିନ୍ତୁ ମୁଁ ଏ ସୁଯୋଗକୁ କାମରେ ଲଗାଏ ।

ମୁଁ ସବୁ କିଛି ବ୍ୟବହାର କରେ । ପିଲାଏ ସକାଳେ ପହିଲେ ନିଜ ନିଜର ପୁସ୍ତକ ଲେଖନ୍ତି । ପଢ଼ିବା ସମୟ ଆସିଲେ ସେଇ ଲେଖା ପଢ଼ନ୍ତି । ଆଉ ସେଇ ପଢ଼ିବା ସମୟ.... ଆଚ୍ଛା, ଏହା ଆମକୁ ସେଇ ଶିକ୍ଷା ପଦ୍ଧତି ଆଡ଼କୁ ପୁଣି ନେଇଯାଉଛି । କିନ୍ତୁ ମୁଁ ଯାହା କହୁଛି, ତା' ତ ବେକରେ ପାଦ ଚାପି ଠିଆ ହେବା ପଦ୍ଧତିଠାରୁ ମାଇଲ୍ ମାଇଲ୍ ଦୂରରେ ।

ଘୋଡ଼ଣି (ଡାଙ୍କୁଣି)ଟି ଆଡ଼େଇ ଦେଲେ ମଣିଷ ପ୍ରାଣ କେଡ଼େ ବଣୁଆ ଦେଖାଯାଏ । ମୁଁ ଏବେ ମଧ୍ୟ ଶିଖିବାକୁ ଚେଷ୍ଟା କରୁଛି : କିପରି ସେମାନଙ୍କୁ ନିଜ ବାଟରେ ଉଡ଼ିବାକୁ ଦିଆଯାଇପାରିବ ଏବଂ ତା' ମଧ୍ୟରେ ଶୃଙ୍ଖଳା ରହିବ । ଗୋଟିଏ ଦିଗରୁ ଏଇଟା ଶୃଙ୍ଖଳିତ ହୋଇପାରିଛି ବୋଲି କହିବା କଷ୍ଟକର । କାରଣ: ଏବେ ବି ନିଜ ଡେଣାର ବଳ ଅନୁସାରେ ନିଜ ପରିସରରେ ଉଡ଼ିବାପାଇଁ ଦରକାର ଅଭ୍ୟାସ... ସାହସର ସହିତ ବାଧାବିଘ୍ନର ମୁହାଁମୁହିଁ ହେବା, ସ୍ୱାଧୀନ ଭାବେ ଗୀତ ଗାଇ ଉଠିବା ଏବଂ ଠିକ୍ ସମୟରେ ନିଜ ଘରକୁ ଫେରି ଆସିବା । ପ୍ରାଣ ଶକ୍ତି ବା ଆତ୍ମା ପରିପୂର୍ଣ୍ଣ ସ୍ୱାଧୀନତା ଭିତରେ ପ୍ରକାଶ ପାଇବା ପାଇଁ, ମନ ସେ ଅନୁସାରେ ଶୃଙ୍ଖଳିତ ହେବା ଦରକାର । ଆମର ଏ କ୍ଷେତ୍ରରେ ଏହା ଏକାନ୍ତ ଜରୁରୀ । ଏଠାରେ ବାହାରେ ଯେପରି ଶୃଙ୍ଖଳା ରହିଛି, ଭିତରେ ବି ସେପରି । ଯେତେବେଳେ ମୁଁ କିଛି କହେ, ପିଲାଙ୍କୁ ତାହା ଶୁଣିବାକୁ ପଡ଼େ ଏବଂ ଯାହା କହେ ତାହା ମାନିବାକୁ ହୁଏ । ତେବେ ମୁଁ ଏତିକି କହି ରଖୁଛି ଯେ ମୁଁ ସବୁବେଳେ କହେ ନାହିଁ । ଆଉ ମୁଁ ଯାହା ବି କହେ, ବେଶ ଭାବିଚିନ୍ତି କହିଥାଏ । ତେବେ ଏଇ ମାନସିକ (ଆତ୍ମିକ) ସ୍ୱାଧୀନତା ଏବଂ ବାହ୍ୟ ଶୃଙ୍ଖଳା ଦୁଇଟିର ଭାର-ସାମ୍ୟ ରଖି ଚାଲିବାକୁ ପଡ଼େ । ଧରାବନ୍ଧା ଶିକ୍ଷା ପଦ୍ଧତି ସହିତ ତୁଳନା କଲେ ମୋର ଏଇ ଢାଞ୍ଚାରେ ଆତ୍ମିକ ସ୍ୱାଧୀନତା ଓ ବାହ୍ୟ ଶୃଙ୍ଖଳା ଭିତରେ ଫାଙ୍କ ସୂକ୍ଷ୍ମତର । ତେବେ ସର୍କସ୍‌ର ଦଉଡ଼ି (କିମ୍ବା ତାର) ଉପରେ ଚାଲିଲା ପରି ସତର୍କ ହେବାକୁ ପଡ଼େ । ହେଲେ, ଠିକଣା ସମୟରେ ମୁଁ କହିପାରିବି ଯେ, ମୁଁ ଚାଲି ପାରିଛି ।

ଆଗ୍ନେୟଗିରିର ପ୍ରଚଣ୍ଡ ଶକ୍ତି ଧାରଣ କରିଥିବା ମାଓରି ସଂପ୍ରଦାୟର ନୂଆ ଗୋଷ୍ଠୀ, ପୁରୁଣା ଓ ନୂଆ ପିଢ଼ିର ମିଶ୍ରଣରୁ ଯେପରି ଜନ୍ମ ନେଇଛି । ଏଇ ଶକ୍ତିର ଉଗ୍ର ପ୍ରବାହ ରହିଛି, କିନ୍ତୁ ଦିଗ ନିରୂପିତ । ପହିଲେ ପହିଲେ ଏହାକୁ ନିୟନ୍ତ୍ରଣ କରିବାରେ ଅଣନିଃଶ୍ୱାସୀ ହେବାକୁ ପଡୁଥିଲା । ଏଇ ଶକ୍ତି-ସ୍ରୋତକୁ ଉଚିତ୍ ମାର୍ଗରେ ଚାଳିତ କରିବା ବିପଦଜନକ ମଧ୍ୟ । କାରଣ ମାଓରି ନୂଆ ପିଢ଼ି ତ ଓଳିଆରୁ ଗଜା; ଆଉ "ନିଅ, ଭାଙ୍ଗ, ଲଢ଼ ଆଉ ପ୍ରଥମ ହୁଅ" ଘୋଷଣାର ମନ୍ତ୍ରରେ ଦୀକ୍ଷିତ ହୋଇ ଯେପରି ପ୍ରବେଶ କରନ୍ତି । କିନ୍ତୁ ଯାହା କିଛି ମୁଁ କରିଛି, ତା' ଫଳରେ ଏବେ ଆଉ ଅଣ-ନିଃଶ୍ୱାସୀ ହେବାକୁ ପଡୁନି; ତା' ଆଗରେ ଠିଆ ହେବା ବି ଆଉ ସେପରି ବିପଦଜନକ ନୁହେଁ । ସମୟ ସମୟରେ ଯେତେବେଳେ ଆଦିବାସୀ ସଂପ୍ରଦାୟର କୌଣସି ଉତ୍ତେଜନା ସ୍କୁଲକୁ ପ୍ରଭାବିତ କରେ, ସେତେବେଳେ ସେଇ ଆବେଗ ଓ ଉତ୍ତେଜନାର

ସ୍ରୋତ ଆମରି ଆଡ଼କୁ ମାଡ଼ି ଆସେ । ଯେତେବେଳେ ଆମ ଆଖି ଯାଏଁ ଏବଂ ଆମ ସ୍କୁଲର ନାମ-ଫଳକ ଯାଏଁ ବୁଡ଼ାଇ ଦିଏ, ସେତେବେଳେ ଆମେ ମନେକରୁଁ, ଆମେ ବୁଡ଼ି ମଲୁଁ । ମନେ ପଡ଼ିଯାଏ "ବେକ ଉପରେ ପାଦ ଚପେଇ ଠିଆ ହେବା" କଥା ! କିନ୍ତୁ ମୁଁ ଜାଣେ ଏଇ ବଢ଼ିରୁ ଉପକାର ମିଳେ;- ପଟୁ ମାଡ଼େ, ଆମେ ସକ୍ରିୟ ହୋଇ ଉଠୁ, ନିଃଶ୍ୱାସ ରୁନ୍ଧି ସଜାଗ ହୋଇଯାଉ ଏବଂ ଭିତର ଶୃଙ୍ଖଳା ଉପରେ ନିର୍ଭର କରୁ । ଅନ୍ତତଃପକ୍ଷେ ଏହା ହିଁ ଜୀବନ ଆଉ ହିତକର ସେମାନଙ୍କ ପାଇଁ ଆଉ ମୋ ପାଇଁ । କାରଣ ଏହା ଉପରେ ଗଢ଼ିଉଠେ ଆମ ରଚନାତ୍ମକ କାମ, ବିଶେଷ ଭାବରେ ଆମର ପୁସ୍ତକ । ଏଥିପାଇଁ ତ ମୁଁ ଯେ କୌଣସି ମୂଲ୍ୟ ଦେବାକୁ ପ୍ରସ୍ତୁତ ।

ତଥାପି ମୁଁ ଶୃଙ୍ଖଳା ଉପରେ ଗୁରୁତ୍ୱ ଦିଏ । ଏଇଟା ଠିକ୍ ଘୋଡ଼ଣିଟି ବାହାର କରି ଦେବାପରି- ମୁଁ ଭଲ ପାଏ- ଭଲ ପାଏ ଦେଖିବାକୁ ଯାହା ପ୍ରକୃତରେ ରହିଛି । ମୋତେ ଭଲ ଲାଗେ ଅନିଶ୍ଚିତତା ଆଉ ହସଖୁସି ଏବଂ ଆଗ୍ରହୀ ମଣିଷ !- ଯେତେ ଛୋଟ ଆଉ କୌତୁକିଆ ଘଟଣା ଘଟେ ଯେତେ ବଣୁଆ ଚଳଣି ଦେଖୁଁ, ସେଗୁଡ଼ିକ କେଡ଼େ ମଧୁର ! ଆଉ ସେଇ ତ ଅସଲି ଜୀବନ । ବଂଚିବାର ପ୍ରାକୃତିକ ପ୍ରଣାଳୀକୁ ମୁଁ ଭଲ ପାଏ । ବିଦ୍ୟାଳୟରେ ମଧ୍ୟ ସେଇଆ । ତେଣୁ ମୁଁ ଏଇ ରଚନାତ୍ମକ, ଜଣିକିଆ ସହଜ ଲିଖନ- ପଠନ (Organic) ଢାଞ୍ଚାକୁ ଭଲପାଏ ।

"ଥରେ ତାଙ୍କ ଗଳାରେ ପାଦ ଚାପି ଠିଆ ହେଲେ ସେମାନେ ଠିକ୍ ହୋଇଯାଆନ୍ତି ।"

ମୁଁ ବୁଝୁଛି । ଭଲ ଭାବେ ବୁଝିଛି । କିନ୍ତୁ ପାଦରେ ଦଳିବା ଅପେକ୍ଷା ଭାବ ଆଦାନ ପ୍ରଦାନ କରିବା ଏବଂ ସୃଜନଶୀଳ କରି ଗଢ଼ିବା ତ ଶିକ୍ଷକର ପାରିବାପଣିଆ ।

ତଥାପି ମୁଁ ଯେଉଁ ଶକ୍ତି କଥା କହୁଛି, ତାହାକୁ ମୁଁ ଠିକ୍ ଭାବେ ବର୍ଣନା କରି ପାରୁନି ବୋଲି ଭାବୁଛି । ଏହାକୁ ଦେଖି ବୁଝି ଅନୁଭବ କରିବା ଦରକାର, ଯାହାକୁ କି ମୁଁ ଘୋଡ଼ଣି ବା ଆବରଣ  ବାହାରି କରିଦେବା କହେ । ସେଇ ପ୍ରକୃତ ଶକ୍ତି କଥା ମୁଁ କହିବାକୁ ଚାହୁଁଛି । ଅବଶ୍ୟ ଏହା ଉପରେ ମୁଁ ବିଶେଷ ଆଲୋଚନା ଚାହେଁ ନାହିଁ । କାରଣ: ଏହା ତ ଏକ ନଗଣ୍ୟ ବିଷୟ: ଗୋଟିଏ ଶିଶୁ ଶ୍ରେଣୀ, ତା' ପୁଣି ଗୋଟେ ସଂଖ୍ୟାନ୍ୟୂନ ସଂପ୍ରଦାୟର ଛୋଟ ଛୁଆଙ୍କର,- ଗୋଟାଏ ଛୋଟିଆ ଗ୍ରହର ଏକ ତୁଚ୍ଛ ଦେଶର !! ତା' ପୁଣି ତୁଳନା କଲେ ତଳିଆ ଜଗତର !!! ଏଇଟା ତ ଏକାବେଳକେ

ତୁଚ୍ଛା ହେଲେ ମୋ ପାଇଁ ସବୁଠୁଁ ଅଧିକ ହେଉଛି : ''ସେହି ତୁଚ୍ଛ ଜିନିଷ ମୋ ମନରେ ଚମକ ଆଣେ । କିନ୍ତୁ ଅତି ବଡ଼ ତ ମୋତେ ହଲେଇ ମଧ ପାରେ ନାହିଁ ।''

ଆଜି ସକାଳେ ଏବେ ନୂଆ ହୋଇ ଆସିଥିବା ଗୋରା ବାଳକ ମାର୍କ୍ ମୋ ପାଖକୁ ଆସିଲା; ମୋତେ କହିଲା, ''ମୋ ଏପ୍ରନ୍‌ଟି କିଏ ନେଇ ଯାଇଛି ।'' ତା' କହିବା ଢାଞ୍ଚାରେ ଉତ୍ତେଜନା ଆଉ ଅବଜ୍ଞା ମିଶି ରହିଥିଲା ।

''ସେପରି କହ ନାହିଁ'', ମୁଁ ଅଳ୍ପ ଚଢ଼ାଗଳାରେ କହିଲି । ବହୁ ପରିଶ୍ରମରେ ଶିଶୁ-ଶ୍ରେଣୀରୁ ଶିଖିଥିବା ଧୈର୍ଯ୍ୟ କଥା ମୁଁ ଭୁଲି ଯାଇଥିଲି । ''ଏଠାରେ କିଏ କାହାର ଜିନିଷ ନିଏ ନାହିଁ ।''

ସେ ଫୁଟାଣି ଦେଖେଇଲା ପରି ଦିଶୁଥିଲା । ସେଇଟା ମଧ୍ୟବିତ୍ତ ଶ୍ରେଣୀରେ ଗୋରା ଲୋକଙ୍କ ପିଲାମାନଙ୍କ ଅଜ୍ଞତାରୁ ଜାତ ହୁଏ । ''ସେଇଟା ମୋ ମେଜ ଉପରେ ନାହିଁ । ମୁଁ ସେଠାରେ ରଖିଥିଲି ।

''ମୁଁ ତୁମକୁ କହି ସାରିଛି ।'' ମୋ ସ୍ୱର ଆହୁରି ଅଧିକ ରୁକ୍ଷ ହୋଇ ଯାଇଥିଲା । ବାଧିଲା ଭଳି । ଶ୍ରେଣୀର ସେଇ ମାଟିଆ ପିଲାଙ୍କ ମେଳରେ, କେତୋଟି ପାଟିରୁ ଶୁଣାଗଲା, ''ଧୋଇବାକୁ ଶୁକ୍ରବାର ଦିନ ଘରକୁ ନେଇଥିବ । ସେଇଟା ତାଙ୍କ ଘରେ ଥିବ ।''

''ସେଇଟା ଘରେ ନାହିଁ ।''

''ତା' ହେଲେ ସେଇଟା ତୋ' ବେଗ୍ (ମୁଣା)ରେ ଥିବ ।''

''ସେଇଠି ନାହିଁ ।''

ମାଓରି ଶିଶୁଙ୍କ ଶ୍ରେଣୀ ସବୁବେଳେ ପ୍ରାଣ-ଶକ୍ତିରେ ଭରି ରହିଥାଏ । ତେଣୁ କୌଣସି ଗୋଟିଏ ଆଲୋଚନାର କଥାଭାଷା ବେଶି ସମୟ ଧରି ଲାଗି ରହେନାହିଁ । ପିଲାମାନଙ୍କ ଏଣେ ତେଣେ ଘୂରି ବୁଲିବା ଆଉ ଅନ୍ୟ କଥା ଭାଷା ଭିତରେ ସମସ୍ତେ ମାର୍କ୍‌କୁ ଏଡ଼ାଇ ଦେଇଥିଲେ । ମୁଁ ମଧ ମନରୁ ତା' କଥା ଏଡ଼େଇ ଯାଇଥିଲି ।

ଦି' ପହରର ଜଳଖିଆ ଖାଇଲାବେଳେ ମୁଁ କହିଲି, ''ଘରେ ଛାଡ଼ି ଆସିଥିବ ।'' ମୋ ଗଳାରେ ବି ଆବେଗ ଥିଲା । ଶିଶୁ ଶ୍ରେଣୀରେ ଆଉ ସ୍ଥିରତା ନ

ଥିଲା । "ସେ ସେଇଟାକୁ ତ ଖୋଜୁ ନାଇଁ । ସେମାନେ ଖୋଜନ୍ତି ନାଇଁ, ସେମିତି ତ ଏ ଗୋରା ପିଲାମାନେ ଖାଲି ଗୋଟିଏ ଅଭିଯୋଗ: ମାଓରି ଲୋକଙ୍କ ମେଳରେ କିଛି ହଜିଗଲେ, ଏଇ ଗୋରାଙ୍କ ପାଟିରୁ ବାହାରି ପଡ଼େ, 'ଚୋରି ହୋଇଗଲା ।' ଏ ପିଲାଟା ଆସିବାର ହପ୍ତାଟେ ବି ହୋଇନି । ସେ ଭଲା କିପରି ଜାଣିଗଲା, ଏ ମାଓରି ପିଲେ ଚୋରାନ୍ତି କି ନାଇଁ ?"

"ସତ କଥା ।" ଟମାଟୋ କାଟୁ କାଟୁ କେ- କହିଲେ, " ଆପଣ ତ ଆଶ୍ଚର୍ଯ୍ୟ ହେବେ, ଘରଗୁଡ଼ିକ ଏପରି ସଜେଇ ହୋଇଥିବା ବେଳେ, ଆମେ ଭଲା ଆଉ କେତେ ବାଟ ଯାଇ ପାରିବା ?"

"ଶ୍ରୀମତୀ ହେଣ୍ଡରସନ୍, ମୋ ପୋଛା କନାଟି କିଏ ଚୋରେଇ ନେଇଛି ।"

ଆଉ ଜଣେ ଗୋରା ! ଭିତରେ ଭିତରେ ମୁଁ ରାଗି ଉଠୁଥିଲି । ମାଟାଓ୍ୱେରୋ ମୋ ପାଖରେ ପଢୁଥିଲା । ସେ କିଛିଟା ଆବେଗରେ କହିପକାଇଲା,- "ସେ.... ସେଇଟା ତ ତା' ମେଜରେ ଅଛି ।"

"ସେ ନିଜେ ଟିକିଏ ହେଲେ ଖୋଜୁ ନାହିଁ ।" ମୁଁ କେ-ଙ୍କୁ କହିଲି । ବଡ଼ ବାଳିକାମାନେ ଶିଶୁ ଶ୍ରେଣୀର ଚଟାଣଟିକୁ ଧୋଇ ଦେଉଥିଲେ । "ସିଏ ମୋ ସାଥିରେ ମାସେ ଦି' ମାସ ହେଲା ରହିଲାଣି । ଆଜି ଯାଏଁ ଜାଣି ପାରିଲାନି ମାଓରି ପିଲେ ପ୍ରକୃତରେ ଚୋରାନ୍ତି କି ନାହିଁ ।"

କେ-ଟିକିଏ ଚିନ୍ତା କରି ଉତ୍ତର ଦେଲେ, "ଆମ ସ୍କୁଲ ବୋଧହୁଏ ସେ ଘର ଉପରେ କିଛି ପ୍ରଭାବ ପକେଇ ପାରୁନାହିଁ ।"

"ସିଏ ତ ନିଜେ ଜମା ଖୋଜିନି ।"

"ହଁ, ସେଇ ତ ଆଶ୍ଚର୍ଯ୍ୟ ।"

ସ୍କୁଲ ଛୁଟି ହେଲା । ମୁଁ ମୋର ମାଓରି ପିଲାଙ୍କ ଶିଶୁ ଶ୍ରେଣୀର ପାଠ୍ୟ ପୁସ୍ତକଟିର ତୃତୀୟ ସଂସ୍କରଣ ପାଇଁ ବ୍ୟସ୍ତ ଥିଲି । ସେତିକିବେଳେ ସେଇ ଘରର ପଛ ଦୁଆର ବାଟେ କେ- ପହଞ୍ଚିଲେ । କହିଲେ, "ଉପରବେଳା ଆମ ସାଥିରେ ଚା' ପିଇବାକୁ ମୁଁ ଦି'ଜଣ ମାଓରି ମହିଳାଙ୍କୁ ଡାକି ଆଣିଛି । ଶ୍ରୀମତୀ ରାମେକୀ ଆଉ ଅନ୍ୟ ଜଣେ ସାଥୀ ।"

ମୁଁ ମୋର ଲେଖା ଜିନିଷତକ ରଖିଦେଲି । ଶ୍ରୀମତୀ ରାମେକୀ ଜଣେ ବୁଦ୍ଧିମତୀ ଆଉ ସମ୍ବେଦନଶୀଳା ମାଓରି ମହିଳା । ଅନେକ ମାଓରି ମହିଳା ଏପରି ସ୍ୱାଭିମାନୀ । କିନ୍ତୁ ଶ୍ରୀମତୀ ରାମେକୀ ଏଠାରେ ଜନ-ମଙ୍ଗଳ ଅଧିକାରୀ ମଧ୍ୟ ଥିଲେ । କହିବାକୁ ଗଲେ ତାଙ୍କ ପାଖରେ ଆଉ କିଛି ଅଧିକା ଗୁଣ ମଧ୍ୟ ରହିଛି । ସେଇଟା ରକ୍ତର ପ୍ରଭାବରୁ ହୋଇପାରେ । ତାହା ଗୋରା କିମ୍ବା ମାଓରି ମୁଖିଆଙ୍କ ପ୍ରଭାବ ହୋଇପାରେ । ସେଇଥିପାଇଁ ୟୁରୋପୀୟ ଢାଞ୍ଚାର ଜୀବନ ଯାପନରେ ସେ ସଫଳ ହୋଇ ପାରିଛନ୍ତି । ମୋର ବ୍ୟକ୍ତିଗତ ମତ ହେଉଛି, ସେଇଟାକୁ ହିଁ ଗୋରା ଲୋକେ ସଫଳତା ବୋଲି କହିଥାନ୍ତି । ତେବେ ସଫଳତା କହିଲେ ଆପଣ ଯାହା ବୁଝିବେ ।

ସେମାନେ ସ୍ୱଭାବସୁଲଭ ଭାବରେ ଆଙ୍ଗୁଠି ଲଗେଇ ଦେଖୁଥିଲେ । ମୋର ଜଣେ ଘର ନ ଥିବା ମାଓରି ବନ୍ଧୁଙ୍କ ପୁରୁଣାକାଳିଆ ପୋଷାକଟିଏ, ଆଉ ମାଓରି ଢାଞ୍ଚାର ପରଦାଟି ଦେଖି ଆନନ୍ଦ ପ୍ରକାଶକଲାବେଳକୁ ମୁଁ ବୈଠକ ଘର ଭିତରକୁ ଆସି ଯାଇଥିଲି । କହିଲି, "ଆଃ, ଜଣେ ମାଓରି ହିଁ ଏଗୁଡ଼ିକୁ ଆଦର କରିପାରେ ବୋଲି ମୋର ବିଶ୍ୱାସ ।"

ଅଳ୍ପ ସମୟ ଭିତରେ କଥାଭାଷା ତେଜି ଉଠିଲା,- ଜୁଆର ପାଣିର ଲହରୀ ଉପରେ ନାଆଟିଏ ଅସ୍ଥିର ହେଲା ପରି । ଛଅ ଶହ ବର୍ଷ ତଳେ ସେମିତି ବଡ଼ ବଡ଼ ନାଆରେ ଆସି ବିରାଟ ସମୁଦ୍ରକୁ ଅଧିକାର କରି ନେଇଥିଲେ ଗୋରାମାନେ, ଆଉ ତାଙ୍କରି ଢାଞ୍ଚାରେ ଏ ସମସ୍ତଙ୍କୁ ଗଢ଼ିବା ଆରମ୍ଭ ହୋଇଯାଇଥିଲା । "ଏଥିରୁ ଆପଣ ଭାବନ୍ତୁ ନାହିଁ ଯେ, ମୁଁ ଗୋରା-ବିରୋଧି ।" ମୁଁ ପ୍ରତିବାଦ କରିଥିଲି "ମୁଁ ମୋ ସଂପ୍ରଦାୟକୁ ଭଲପାଏ । ତେବେ ମାଓରିମାନଙ୍କୁ ବେଶ୍ ଭଲ ଭାବେ ଜାଣି ପାରିଛି" ତେଣୁ ସେମାନଙ୍କ ପ୍ରତି ହୋଇଥିବା ଅନ୍ୟାୟଗୁଡ଼ିକ ବୁଝି ପାରୁଛି । "ଆଉ ସେମାନେ – "; ମୁଁ ଅସଲି ପଦଟି ଭାବି ଯୋଡ଼ି ଦେଲି, "....ଆଘାତ କରନ୍ତି ।"

"ଆଃ ! ସେମାନେ ପ୍ରଶ୍ୱାସ ନେଲେ । ଠିକ୍ ମାଓରି ଢାଞ୍ଚାରେ । ମାଓରିମାନେ ଆପଣ ଯାହାସବୁ କହିବେ ଶୁଣନ୍ତି, ବେଶ୍ ବୁଝନ୍ତି ଏବଂ ସେହି ଅନୁସାରେ ଭାବଭଙ୍ଗୀ ଦେଖାନ୍ତି । ମୁଁ ଉତ୍ସାହିତ ହୋଇ ଆହୁରି କହିଲି, "ମୋର ଗୋରା ପିଲାମାନେ ତାଙ୍କ ଘରର ୟୁରୋପୀୟ ଢାଞ୍ଚା ପୂରାପୂରି ଦେଖେଇ ହୁଅନ୍ତି । ମାଓରି ପିଲାମାନଙ୍କ ପ୍ରତି ସେମାନଙ୍କର ବାତ୍ସଲ୍ୟ ଭାବ ସ୍ପଷ୍ଟ । ପ୍ରକୃତରେ ଏଇ ପା'

(ମାଓରି ଗାଁ)ରେ ଏକ ବଡ଼ ଧରଣର ବିଚିତ୍ର ମିଶ୍ରଣ ଘଟିଛି । ଏଇ ପିଲାମାନେ, କଳା ହୁଅନ୍ତୁ କି ଗୋରା ହୁଅନ୍ତୁ, ସାଧାରଣତଃ ଶକ୍ତିବାନ୍ ଓ ବୁଦ୍ଧିମାନ୍ । ଆମେ ଦେଖି ଆସିଥିବା ପିଲାମାନଙ୍କ ତୁଳନାରେ ଏଇ କଥା କେବଳ ଆମେ କହୁନୁ । ଶାରୀରିକ ଶିକ୍ଷା ଓ କଳା ବିଭାଗର ଲୋକ ଏବଂ ପରିଦର୍ଶକମାନେ, ସମସ୍ତେ ଏ କଥା କହୁଛନ୍ତି ।''

'ହଁ,' ଶ୍ରୀମତୀ ରାମେକୀ କହିଲେ, ''ଏଇ ଜିଲ୍ଲାରେ ମାଓରି ଓ 'ପାକେହା' (ଗୋରା ଲୋକ)ମାନଙ୍କ ମଧ୍ୟରେ ଅତି ବଡ଼ ବ୍ୟବଧାନ ରହିଛି ।''

ସେଇଥିପାଇଁ ଅନ୍ୟ ଜଣେ କହିଲେ, ''ଆମେ ଅତି ସଙ୍କୁଚିତ ଓ ସମ୍ବେଦନଶୀଳ । ୟୁରୋପୀୟମାନେ ବୁଝିବା ଦରକାର ଯେ, ସେମାନଙ୍କର ସାମାନ୍ୟ ଟିକିଏ ସାହାଯ୍ୟ ପାଇଲେ ଆମେ କୃତକୃତ୍ୟ ହୋଇଯାଉ । କିନ୍ତୁ ଆମ ପ୍ରତି ସେମାନଙ୍କର ବ୍ୟବହାର ଯୋଗୁଁ ଆମେ ଏତେ ଭୟ କରୁ ଯେ କଥା କହି ପାରୁନୁ ।''

''ମୋ କାମ ଭିତରେ'', ଶ୍ରୀମତୀ ରାମେକୀ ଗଭୀର ଭାବେ ଚିନ୍ତା କରି ଶୁଦ୍ଧ ଇଂରାଜୀରେ ଆଉ ଅବିକଳ ମାଓରି ଢାଞ୍ଚାରେ ହାତ ନଚେଇ କହିଲେ, ''ମୁଁ ଦେଖୁଛି, କେବଳ ଗୋଟିଏ ଶ୍ରେଣୀର ଲୋକ ଏଇ ସଂପ୍ରଦାୟ-ବିଦ୍ୱେଷ ଦେଖାନ୍ତି । ସେଇଟା ହେଉଛି.... ଏଇ... କଅଣ ବୋଲି ଆପଣ କହନ୍ତି ?.... ଏଇ ମଧ୍ୟବିତ୍ତ ଶ୍ରେଣୀ, କିନ୍ତୁ ତଳ ଶ୍ରେଣୀ ଲୋକଙ୍କର ସହାନୁଭୂତି ଥାଏ । ଆଉ ମୁଁ ଦେଖୁଛି, ଶିକ୍ଷକ, ବୁଦ୍ଧିଜୀବୀ... ଏମାନେ ଉପର ଶ୍ରେଣୀର ଲୋକେ.... ସବୁବେଳେ ଠିକ୍ ବୁଝନ୍ତି । ସେମାନେ ଚାହାନ୍ତି, ଚେଷ୍ଟା କରନ୍ତି ମଧ୍ୟ... ।'' ସତର୍କତା ସତ୍ତ୍ୱେ ମାଓରି ଅଭ୍ୟାସ ଅନୁସାରେ ଶ୍ରୀମତୀ ରାମେକୀ ମଧ୍ୟ ଇଂରାଜୀ ବହୁବଚନ ପଦ ଭୁଲ ଭାବେ ଉଚ୍ଚାରଣ କରନ୍ତି ।

ନୂଆ ପିଢ଼ି ପାଇଁ ଇଏ ଏକ ଖରାପ ସମୟ । ମାଓରିମାନଙ୍କ ମନ ଭିତରେ ଯୁଗ ଯୁଗ ଧରି ନିଜକୁ ଅଭିଶପ୍ତ ମନେ କରୁଥିବା ମାନସିକତା ବିଷୟ ଭାବିଲାବେଳେ ମୋ ମନ ଭିତରେ ଝଲସି ଉଠେ, ତାଙ୍କର ଅତୀତର ପ୍ରତାପୀ ରାଙ୍ଗାଟିରମାନଙ୍କ ଗୌରବ ଓ ମାଓରି ସର୍ବସାଧାରଣଙ୍କ ସ୍ୱାଭିମାନ । ମନର ଆଖିରେ ଭାସିଉଠେ ମାଓରିମାନଙ୍କ ରଙ୍ଗବେରଙ୍ଗ ବଡ଼ ବଡ଼ ନୌକା, ନାଚି ଉଠନ୍ତି ସମୁଦ୍ରର ଉତ୍ତାଳ ତରଙ୍ଗରେ ! ମାଓରି ଗାଆଁର ମନଲୋଭା ସରଳ ସୁନ୍ଦର ରୂପ-ସମ୍ଭାର, କାନରେ

ଝଙ୍କୃତ ହୋଇଉଠେ ମାଓରି ଯୁଦ୍ଧର ହୁଂକାର, ସମର-ସଂଗୀତ, ସତେ ଯେମିତି କୁଳୁ କୁଳୁ ହୋଇ ବହି ଯାଉଥିବା ନଈ କହି ଚାଲିଛି, ଗାଇ ଚାଲିଛି !!- ନଈକୂଳର ସ୍ଥିର ସୁନ୍ଦର ଗଛଲତା ଘେରରେ !!! କିନ୍ତୁ, କ'ଣ ଭଲଜାଣନ୍ତି ଏ ବିଷୟରେ ମୋ ଗୋରା ପିଲାଙ୍କ ବାପା-ମାଆ ? କିମିତି ଭଲା ବଂଚେଇ ରଖିବି ଏଇ ସୁନ୍ଦର ମାଟାଓ୍ୱେରୋ ପରି କୁନି କୁନି ପିଲାଙ୍କୁ ଗୋରା ଲୋକଙ୍କ ବଦ୍ଧମୂଳ ଧାରଣାର ବିଦ୍ୱେଷରୁ ?

ସାର୍ ମାଉଇ ପୋମାରେଏ ଜଗତରୁ ବିଦାୟ ନେବା ଆଗରୁ କହି ଯାଉଛନ୍ତି, "କେବଳ ଶିକ୍ଷା ହିଁ ମାଓରି-ଡଙ୍ଗାକୁ କୂଳରେ ଲଗେଇ ପାରିବ ।"

"ଆମେ ବାହାରକୁ ଯାଇପାରୁ କି ?" ପଚାରିଲା ମାଟାଓ୍ୱେରୋ, ତା'ର ବିକୃତ ଇଂରାଜୀ ଉଚ୍ଚାରଣରେ । ଏଇ ଗୋରା ଲୋକଙ୍କ ଜିଲ୍ଲାରେ ମାଓରିମାନଙ୍କ ଇଂରାଜୀ ଉଚ୍ଚାରଣ ଭୟଙ୍କର । ହେଲେ ମୁଁ ସେଥିରେ ଅଭ୍ୟସ୍ତ ହୋଇ ଉଠିଲିଣି । କିନ୍ତୁ ପହିଲେ ଏଠାରେ ପହଞ୍ଚିଲାବେଳେ ମୋତେ ଏମାନଙ୍କ ଇଂରାଜୀ ଉଚ୍ଚାରଣ କବାଟ ଭଙ୍ଗାର କେଁ କଟର ପରି ଲାଗୁଥିଲା । ଏହା ଆଗରୁ ମୁଁ ଓ୍ୱାଇଓରେ ଥିଲି, ସେଠାରେ ଲୋକଙ୍କ ସ୍ପଷ୍ଟ ସ୍ୱରବର୍ଣ୍ଣ ଉଚ୍ଚାରଣରେ ବିଶେଷ ଚଞ୍ଚଳତା ଥିଲା ।

ମାଟାଓ୍ୱେରୋର କଥାରେ ମୁଁ ତାକୁ ଚାହିଁଲି । ତାର ଉଚ୍ଚତା ଅତି କମ୍ ଥିଲା । ମୁଁ ଆଣ୍ଠେଇଲେ ତାର ଉଚ୍ଚତାହେବ । ତେବେ ବାହାରକୁ ଯିବାର ସମୟ ତ ହୋଇ ନ ଥିଲା ।

"ଯାଇ ପାର ?" ସେ ପୁଣି ପଚାରିଲା- ଅବଶ୍ୟ ସେମିତି ବିକୃତ ଉଚ୍ଚାରଣରେ !

ମୁଁ ଭାବିବାକୁ ଲାଗିଲି, ମୋ ଶିଶୁ ଶ୍ରେଣୀରେ କିଛି ଭୁଲ୍ ନିଶ୍ଚୟ ରହିଛି, ଯେଉଁଥିପାଇଁ ସେ ବାହାରକୁ ଯିବାକୁ ଚାହୁଁଛନ୍ତି । କିନ୍ତୁ ପରମ୍ପରାକୁ ଏଡ଼େଇ ଯିବା ଅସ୍ୱସ୍ତିକର ହେବ ନିଶ୍ଚୟ ! କେଡ଼େ ଆରାମଦାୟକ ଉଷୁମ ଏଇ ପରମ୍ପରା ! ସେତିକି ନ ଥିଲେ ହେମାଳ ଜାଡ଼ ମାଡ଼ି ବସେ ମୋତେ !!

"ତୁମେ କ'ଣ କାମ ପୂରା କରି ସାରିଲଣି ?" ମୁଁ କହିଲି ।

ସେ ଚାଲିଗଲା, ଆଉ ଶୀଘ୍ର ଫେରି ଆସିଲା । ହାତରେ ତା'ର ପିଲାଙ୍କ ଲେଖା କାଗଜ ପୁଳେ । ଲେଖା ଯେମିତି ସବୁ ଏକ-କୋଣିଆ ।

''ଆମେ ଯାଇ ପାରୁଁ ?''

''ହଁ, କାହିଁକି ନୁହେଁ ?''

''ସମସ୍ତେ ଶୋଇବ ଯାଅ ।''

''ଆପଣ କ'ଣ ସେ 'ନୀଳ ମାଠିଆ' କଥା ଶୁଣେଇବେ ନାଇଁ, ଶ୍ରୀମତୀ ହେନ୍'ସନ୍ ?''

''ଆମକୁ କ'ଣ ଶୋଇବାକୁ [illegible] ହେବ ?''

''ମାଟାଓ୍ୱେରୋ ! ଶୋଇବ ଯାଅ ଶ୍ରୀମତୀ ହେନ୍'ସନ୍ ପରା ଆମକୁ ଶୋଇବାକୁ କହିଛନ୍ତି ।''

''ସେ 'ନୀଳ ମାଠିଆ' କଥାଟା ଶୁଣାନ୍ତୁ, ଶ୍ରୀମତୀ ହେନ୍'ସନ୍ ।''

''ଶ୍ରୀମତୀ ହେନ୍'ସନ୍ ! ରାଙ୍ଗି ଶୋଇବାକୁ ଯାଉନି ।''

''ଆପଣ କ'ଣ ଆମକୁ 'ନୀଳ ମାଠିଆ' କଥା ଶୁଣେଇବେନି ?''

''ହ୍ୱିନୀର ଆଖି ମେଲା ଅଛି । ସେ ଅନେଇଛି ।''

''ଆର ହ୍ୱିନୀର ଆଖି ମଧ ମେଲାଅଛି ।''

''ନାଁ ।''

''ଅବଶ୍ୟ''

''ନାଁ''

''ନିଶ୍ଚୟ''

ସେ 'ନୀଳ ମାଠିଆ' ଗପ ବିଷୟ କ'ଣ ହେଲା, ଶ୍ରୀମତୀ ହେନ୍'ସନ୍ ?''

''ଶୋଇବ ଯାଅ ।''

ନୀରବତା ।

ମାର୍କ୍ଃ ଶ୍ରୀମତୀ ହେନ୍'ସନ୍ ! ସେ କାହାଣୀଟିରୁ ମୁଁ ତ କିଛି ବୁଝି ପାରିଲି ନାହିଁ ।'' ଯେତେ ଟାଣି ଟୁଣି ବି ନୁହେଁ ।



ମୁଁ : ମୁଁ ଭାବୁଛି, ତୁମେ କେବଳ ଦଉଡ଼ି ଟାଣି ପାରିବ ।

ମାର୍କ୍: ଏକ ସରଳରେଖା ପରି ?

ମୁଁ: ହଁ, ତା' ପରେ ମୂଷାଟିଏ । ଠିକ୍ ତା' ପରି ଗୋଟିଏ ଗୋଟିଏ ଗୋଲି, ଆଉ ଲାଞ୍ଜ କରି ରେଖାଟିଏ ।

ମାର୍କ୍: ମୁଣ୍ଡଟି ପାଇଁ ଟିକିଏ ଗୋଲ ଓ ପେଟ ପାଇଁ ଆଉ ଗୋଟିଏ ଅଳପ ଗୋଲେଇ ରେଖା, ଆଉ ଲାଞ୍ଜ ପାଇଁ ଠିକ୍ ଗୋଟିଏ ରେଖା ?

ମୁଁ: ଆଉ କେତୋଟି ଗୋଡ଼ । ଟେମ୍ । ତୁମେ ତୁମ ନାକ ସଫା କର । ଜୁନିଅର । ତୁମେ ତୁମର କାମିଜ୍ ଠିକ୍ ଭାବେ ପିନ୍ଧ;

ଟ୍ୱିନ୍: ଶ୍ରୀମତୀ ହେନ୍'ସନ୍ ! ଟ୍ୱିନୀ ଭାରି ଖରାପ, ସେ ମୋ ପାଖରେ ଛବି ଆଙ୍କୁଛି ।

ମାର୍କ୍: ଆଉ କେବଳ କେତୋଟି ଗୋଡ଼ ?

ମୁଁ: ହଁ, ଆଉ ଆଖି ପାଇଁ ବିନ୍ଦୁ ।

ଏତିକି ବେଳେ ରାଙ୍ଗି ଆସିଲା । ମୋ ପାଖ କାନ୍ଥରେ ମୁଁ ମୂଷା ଛବିଟିକୁ ଟାଙ୍ଗି ଦେଇଥିଲି । ସେଇଟିକୁ ନିରେଖି ଦେଖିଲା । ପିଲାଙ୍କର ଗଳାର ଶବ୍ଦ ଶୁଣି ବିରକ୍ତ ଲାଗୁଥିଲା । ବନ୍ଧୁକରୁ ଗୁଳି ଚାଲିଲା ପରି ବାଳକମାନଙ୍କ ଗଳା ଶବ୍ଦ ଶୁଭୁଥିଲା । ବଂଶୀରା ଭିତରୁ ଆସୁଥିବା ସଙ୍ଗୀତକୁ ଏ ଶବ୍ଦ ଟପି ଯାଉଥିଲା । ମୁଁ ସିଧା ଚାଲିଗଲି ସ୍ଟୁବର୍ଟ୍ ଆନ୍ଦାନ୍ତେ ପାଖକୁ । ପୂରା ଦମ୍‌ରେ ତା' ଗୋଡ଼ର ଗୋଇଠିକୁ ଭିଡ଼ି ଧରି ଝାଙ୍କି ଦେଲି, "ଇମିତି ଶବ୍ଦ ନାହିଁ ।"

ତା'ପରେ ମାର୍କ୍ ଆଉ ଗୋଟେ ମୂଷା ଛବି ଆଙ୍କିଲା । "ସେଇଟା ରାଙ୍ଗିକୁ ଦେଇ ଦିଅ ।" ଫଳରେ ଗୋରା ପିଲା ମାର୍କ୍‌ର ମନରେ ମାଓରି ରାଙ୍ଗି ପ୍ରତି ହୁଏତ ସ୍ନେହ ଭାବ ଜାତ କରିବ ।

ତା'ପରେ ଆଉ ଗୋଟିଏ ମୂଷା ।

''ସେ ଗୋଟିକ.... ଉଁ.... ଦିଅ ମାଟାଓ୍ୱେରୋକୁ ।''

''କିଏ ଆଙ୍କିଛି ?'' ମୁଁ ପଚାରିଲି ।

''ମୋ ସାଙ୍ଗ ।''

''କିଏ ତୁମ ସାଙ୍ଗ ?''

''ନାଓମି ।''

''ସେ ଜଣେ ଭାରି ଭଲ ଝିଅ ।''

''ଏହା କାଟିବା ପାଇଁ ମୋତେ କଇଁଚିଟିଏ ଦେବେ ?''

''ନା, ତୁମେ ତୁମର ମୂଷା ଆଙ୍କ । ତା'ପରେ ତୁମେ କଇଁଚି ନେବ ।''

''ମୁଁ ମୂଷା ଆଙ୍କି ପାରିବି ନାଇଁ ।''

''ମାର୍କ୍ ଆଙ୍କି ପାରୁଛି ।'' କାନ୍ଥରେ ଝୁଲୁଥିବା ମାର୍କ୍‌ର ଛବିଟିକୁ ମୁଁ ତାକୁ ଦେଖାଇଲି ।

ମାର୍କ୍ ଆଉ ଗୋଟିଏ ମୂଷା ଛବି ଆଙ୍କିଲା । ''ମୁଁ ଏଇଟା ଟମ୍‌କୁ ଦେବି, ଶ୍ରୀମତୀ ହେନ୍‌ସନ୍ ।''

ମାଟାଓ୍ୱେରୋ କୌଣସି ଛବି ଆଙ୍କି ନ ଥିଲା । ସେ ସିଡ଼ି ପାହାଚରେ ବସି 'ନୀଳ ମାଠିଆ' ଗପ ପଢ଼ି ଶୁଣାଉଥିଲା । ଗୋରା ପିଲାଟିକୁ ଶୁଣାଉଛି ମାଓରି ପିଲାଟି । ଭଲ ବୁଝାମଣା ବଢ଼ିଛି, ଦୁଇ ସଂପ୍ରଦାୟ ଭିତରେ ସହନଶୀଳତା ଆସିଛି । ଛବି ଦେଖି ସେ ଗପ କହୁଛି । ମାଟାଓ୍ୱେରୋ ଏକା କିଛି କରିପାରେନି ବୋଲି ତା' କାର୍ଯ୍ୟକଳାପରୁ ଜଣାଯାଏ । ନିଜକୁ ସୁହେଇଲା ପରି ସାଙ୍ଗ ସେ ଲୋଡ଼େ । (ସେଇ ପରି ଗୁଣ ପାଇଁ ମୁଁ ତା' ଜେଜେଙ୍କୁ ଭଲପାଏ ।) ପାଚୀ ମଧ୍ୟ ସେହିପରି ।

ଓ୍ୱିକି: ମୁଁ ମୋର ଘୁଷୁରି ଛବିଟି ଆଙ୍କି ଦେଲି, ଶ୍ରୀମତୀ ହେନ୍'ସନ୍ ।

ସେ କାଗଜଟିକୁ ଆର ମନ୍ତେ ବୁଲେଇ ଦେଖେଇଲା ।''ହେଇଟି ତା' ଗୋଡ଼ । ଏଥର ମୁଁ କଇଁଚି ନେବି ।''

"ହଁ ତୁମେ କଣ୍ଟି ନେଇପାର ।"

ମାର୍କ୍ ଆହୁରି ଗୋଟେ ମୂଷା ଆଙ୍କି ଦେଉଛି ।

ପାଚୀ: ଶ୍ରୀମତୀ ହେନ୍'ସନ୍, ଏବେ ଛୁଟି ସମୟ ହେଲାଣି ?

ମାଟାଓ୍ୱେରୋ: ଶ୍ରୀମତୀ ହେନ୍'ସନ୍, ମୁଁ ଘଣ୍ଟି ବଜାଇଲି । ତିନିଥର ବଜେଇଲି ।

ଅନ୍ୟମାନେ: ଶ୍ରୀମତୀ ହେନ୍'ସନ୍, ହେଉଟି ବିଲେଇ । ଶ୍ରୀମତୀ ହେନ୍'ସନ୍, ମୁଁ ପହିଲି ପାଠ ବହିଟି ନେବି କି ? ଶ୍ରୀମତୀ ହେନ୍'ସନ୍, ମୁଁ ପିଆନୋ ବଜେଇବି ?

ଶ୍ରୀମତୀ ହେନ୍'ସନ୍, ଖେଳିବା ପରେ ପଢ଼ିବି ବୋଲି ଲେଖି ରଖିଥିଲି, ସେଇଟା ପାଚୀ ନେଇଗଲା ।

ତା'ପରେ ହିରାନୀ "ପୋକାରେ କାରେ ଆନା" ଗୀତ ଗାଇ ପିଆନୋ ବଜାଇଲା । ପ୍ରାୟ ସମସ୍ତେ ସେ ଗୀତରେ ବୁଡ଼ିଗଲେ ଯେପରି..... ।

ଏହା ସରଳ, ସୁନ୍ଦର ଓ ମୁକ୍ତ ବ୍ୟବହାରର ଢାଞ୍ଚା । ଏକ ପୂରାପୂରି ରଚନାତ୍ମକ ଏବଂ ସ୍ୱାଭାବିକ ସହଜ ଢଙ୍ଗର ଗଢ଼ି ହୋଇଥିବା ପିଲାଙ୍କ ଚାଲି-ଚଳଣି । ଏକାନ୍ତ ମୌଳିକ ଓ ପ୍ରାକୃତିକ । ସୂତ୍ର, ଏଇ ହେଉଛି ସୂତ୍ର । ଆସନ୍ତାକାଲିର ଯୁବ-ପି ଢ଼ି ଗଢ଼ିବାକୁ ଯାଉଥିବା ଆଜିର ପିଲାଙ୍କ ଲୁଚି ରହିଥିବା ଭିତିରି ଶକ୍ତିର ସ୍ୱତଃ ଅଭିବ୍ୟକ୍ତି, ଆଉ ସ୍ୱୀକୃତି ।

ମାଟାଓ୍ୱେରୋ: ମୁଁ ଗର୍ଡ଼ନ୍ ସାଥିରେ ବସି ପାରିବି କି ? ଗର୍ଡ଼ନ୍ ଖୁସିବାସି ଗୋରା ପିଲାଟିଏ । ସେ କହିଲା, "ତୁ ତ ସବୁବେଳେ ମୋ ସାଥିରେ ବସିବାକୁ ଚାହୁଁଛୁ ?"

ମୁଁ ମନେ ମନେ ଭାବିଲି, 'ଏଇ ତ ସଫଳତା ।'

କିନ୍ତୁ ପ୍ରକୃତରେ ଗୋରା ଓ ମାଟିଆ ମିଶିଯାଇ ଏକ ହୋଇଯାଆନ୍ତୁ ବୋଲି ମୁଁ କେବେ ଆଶା କରେ ନାହିଁ । ମୁଁ ଯାହା ସବୁ କରୁଛି, ତା' କେବଳ ଭଲ ବୁଝାମଣା ପାଇଁ । ଏହାର ଅର୍ଥ ନୁହେଁ ଯେ, ସେମାନେ ଆଧ୍ୟାତ୍ମିକ, ବୌଦ୍ଧିକ ଓ ଶାରୀରିକ

ସ୍ତରରେ ମିଶିବା ପାଇଁ ସମାନ ହୋଇ ପାରିବେ ନାହିଁ । ମୁଁ ତାହା ନିଜେ କାର୍ଯ୍ୟ କରି ଦେଖିଛି । ସତ କଥା ହେଉଛି ଆପଣାର ସ୍ୱାର୍ଥ ରକ୍ଷା ପାଇଁ ସେମାନେ ଏମାନଙ୍କୁ ଭାଗ ଭାଗ କରନ୍ତି । ପ୍ରତ୍ୟେକ ସଂପ୍ରଦାୟର ସ୍ୱାର୍ଥ ସ୍ୱତନ୍ତ୍ର ଭାବେ ଶହ ଶହ ବର୍ଷର କାର୍ଯ୍ୟକଳାପରେ ଗଢ଼ି ଉଠିଛି । ମାଓରିମାନେ ସାଧାରଣ ଭାବେ ନିଜର ଆଦିବାସୀ ସମାବେଶକୁ ଭଲ ପାଆନ୍ତି । ତା' ସହିତ ଭୋଜନ ଏବଂ ଆଧ୍ୟାତ୍ମିକ କାର୍ଯ୍ୟ । ଅପରପକ୍ଷରେ ଆମେ ୟୁରୋପୀୟମାନେ ଆମର ବୌଦ୍ଧିକ ଉଚ୍ଚତାକୁ ନେଇ ନିଜର ଭିନ୍ନ ସମନ୍ୱୟ ହିଁ ଚାହୁଁଛୁ । ଏଇଟା ଅବଶ୍ୟ ଏକ ମୋଟାମୋଟି ଦୃଷ୍ଟିକୋଣ । କାରଣ ମୋର ନିଜର ସବୁଠୁଁ ଅଧିକ ଆନ୍ତରିକ ସୌହାର୍ଦ୍ଦ୍ୟ ତ ସେମାନଙ୍କର ସହିତ, ଯେଉଁମାନେ ମାଟିଆ ।

ଗୋରା ଛୁଆ ହାରୀ ଆଜି ସ୍କୁଲକୁ ଆସିନି, ଘରେ ରହିଯାଇଛି । କାରଣ, ତା' ମାଟିଆ ସାଙ୍ଗ ପିଲା ଜୁନିଅର୍ ତାକୁ ମାଡ଼ ଦେଇଛି । ଓଲଟା କଥା । ହେଲେ, କେବଳ ଏଇ ମାରପିଟ ଯୋଗୁଁ ସେ ଘରେ ରହିଯାଇଛି ବୋଲି ମୁଁ ବିଶ୍ୱାସ କରୁନି । ମୋ ମତରେ ଏଇଟା ହେଉଛି କ୍ରିୟାର ଏକ ସ୍ୱାଭାବିକ ପ୍ରତିକ୍ରିୟା । ପହିଲି କେତୋଟି ମାସରେ ସେ ଯେପରି ଆବେଗରେ ଏଇ ସ୍କୁଲ ପରିବେଶରେ ମଜ୍ଜିଗଲା, ଏଇଟା ତାରି ପ୍ରତିକ୍ରିୟା । ମୁଁ ଏହା ଲକ୍ଷ୍ୟ କରି ତା' ମାଆଙ୍କୁ ପ୍ରଥମେ ସତର୍କ କରି ଦେଇଥିଲି । ଏ ଲକ୍ଷଣ ଦେଖିବାକ୍ଷଣି ହାରୀକୁ ଘରେ ଅଟକାଇ ବିଶ୍ରାମ ଦେବାକୁ କହିଥିଲି । ''ଅବଶ୍ୟ ଶ୍ରୀ ହାଣ୍ଡରସନ୍ ଏ କଥାରେ ମୋ ସହିତ ଏକମତ ହେବେନାହିଁ ।'' ଏ କଥା ମଧ୍ୟ କହିଥିଲି । ମୁଁ ଯଦି ସ୍କୁଲରେ ଉପସ୍ଥିତ ଥାଆନ୍ତି, ତେବେ ମୁଁ ତାକୁ ଏଇ ପ୍ରତିକ୍ରିୟାରୁ ରକ୍ଷା କରି ପାରିଥାନ୍ତି । କିନ୍ତୁ ସେତିକିବେଳେ ସପ୍ତାହେ ଛୁଟି ନେଇ ମୁଁ



ଆରାମ କରୁଥିଲି- ପରିବେଶ ଆଉ ଶାସନର ବାହାରେ । ସ୍କୁଲରେ ଥିଲେ, ମୁଁ ଏବେ ନିଜକୁ ସାନ୍ତ୍ୱନା ଦେଇ ପାରୁଥାନ୍ତି, ନିଜ ମନକୁ ବୁଝେଇ ପାରୁଥାନ୍ତି । ଆଗରୁ ତ ଏପରି କରିଥିଲି । କିନ୍ତୁ ଏବେ ସବୁ କିଛି ଓଲଟ ପାଲଟ ହୋଇଗଲା, ହାରୀ ଘରେ ରହିଗଲା । ସତରେ ମୁଁ ଉପସ୍ଥିତ ଥିଲେ ଏହି ଦୁଷ୍ଟ ଟୁଣ୍ଡାଟିକୁ ଜବତ କରିପାରିଥାନ୍ତି, ମାଡ଼ ଦେଇଥାନ୍ତି । ତା' ଭଳି ମୂର୍ଖ ବଳୁଆଙ୍କ ପାଇଁ ସେଇ ଗୋଟିଏ ମାତ୍ର ଉପାୟ ହେଉଛି ମାଡ଼ । ତା' ଦ୍ୱାରା ତା ଦେହର ଚମ କଷ୍ଟ ବୁଝିପାରନ୍ତା । ହାରୀ ଘରେ ରହିଯାଇଛି, ମୁଁ ଦୁଃଖିତ । ଜଣେ ବ୍ୟକ୍ତି ହିସାବରେ ଏଥିରେ ମୋ ଚରିତ୍ର ଉପରେ କିଛି ଆଞ୍ଚ ଆସିବ ନାହିଁ । କିନ୍ତୁ ଶିଶୁ ଶ୍ରେଣୀର ଜଣେ ଶିକ୍ଷୟିତ୍ରୀ ହିସାବରେ ମୋ ମନ ମାନୁନାହିଁ । ମନେ ହେଉଛି, ମୁଁ ଯେପରି ତଳକୁ ଖସି ପଡୁଛି.... କିପରି ଏକ ଅନ୍ଧାରୁଆ ପରିବେଶକୁ, ଯଦିଓ ଏଥିରେ ମୋର କିଛି ଦୋଷ ନାହିଁ ।

ମାଓରି ଓ୍ୱାଇଓ୍ୱିନୀ କାହାଣୀଟିଏ ପାଇଁ ବି ପାଖକୁ ଆସି ମୋ ସହିତ କଥାଭାଷା କରେ; ନ ହେଲେ ସେ ବୁଝି ପାରେନି କି ବୁଝେଇ ବି ପାରେନି । ଇଏ ହେଲା ଭାବ ଆଦାନ- ପ୍ରଦାନର ଗୋଟିଏ କଳା । ଯେତେବେଳେ ଆମର ନିଜ ଆଶା-ଆକାଂକ୍ଷାକୁ ଆମେ ଦମନ କରି ଦେଉ,ଆଉ ନାଆଁର ସଂକେତଟିକୁ ମଧ ଦବେଇ ଦେଇଥାଉ, ସେତିକିବେଳେ ସମ୍ମାନବୋଧ ଜାତ ହୁଏ । ଜୟ କହିଲା, "ମୁଁ ଏଇ ସମ୍ମାନବୋଧକୁ କେତେ ଯେ ଘୃଣା କରେ ।" ଓ୍ୱାଇଓ୍ୱିନୀଙ୍କର ବହୁତ କିଛି କାମ ତାଙ୍କର ବଦ୍ଧମୂଳ ଧାରଣା ଓ ବ୍ୟକ୍ତିଗତ ସଂପର୍କ ଯୋଗୁଁ ବିଫଳ ହୁଏ । ମାତ୍ର ମୁଁ ତାଙ୍କୁ ସମ୍ମାନ ଦିଏ । କାରଣ: ମୁଁ ତାଙ୍କର ସେ ସବୁ କାମକୁ ପରୀକ୍ଷା ନିରୀକ୍ଷା କରି ଜାଣିପାରିଛି ଯେ ସେଇ ସବୁ ଉପାଦାନରୁ ଅନେକ ଭାବଧାରା ମିଳିଥାଏ । ସେ ଏଇପରି ଜଣେ ସ୍ନେହଶୀଳା ଓ ପର୍ଯ୍ୟବେକ୍ଷଣ ପ୍ରିୟ ମଣିଷ । ମନୁଷ୍ୟ ପକ୍ଷରେ ଯେତେଦୂର ସମ୍ଭବ ସେତେଦୂର ପର୍ଯ୍ୟନ୍ତ ସେ ସଂପର୍କ ସ୍ଥାପନ କରନ୍ତି । ଯାହା କିଛି ଘଟଣା ଘଟେ ଏବଂ ଯେ କୌଣସି ଲୋକଙ୍କୁ ନେଇ ହେଉ ପଛେ, ତା' ସହିତ ସେ ସମ୍ପର୍କ ଯୋଡ଼ନ୍ତି । ମାଟାଓ୍ୱେରୋ ମଧ ସେଇ ପରି । ଭେରେପାରିତାଙ୍କ ଜାଆଁଳା ଛୁଆ ଦୁଇଟିର ସମାଧି ଉପରେ, ସତେ ଯେମିତି ମରିଯାଇଥିବା ଛୁଆ ଦୁଇଟିକୁ ମୁହାଁମୁହିଁ ଦେଖି ପାରୁଛନ୍ତି, ସେପରି ସେଠାରେ ସେ ନିଜକୁ ଭୁଲି ଯାଆନ୍ତି । ଆଉ ବଂଚି ରହିବାରେ ଏଇ ନିଜକୁ ଭୁଲିଯିବାଟା ତ ଏକ ବଡ଼ ଉପାଦାନ । ଏଇ ଓ୍ୱାଇଓ୍ୱିନୀ ଓ ମାଟାଓ୍ୱେରୋ ତ ଦୁଇଟି ସ୍ୱୟଂ ସଂପୂର୍ଣ କ୍ରିୟା-କେନ୍ଦ୍ର । ଆମେ ଯାହାକୁ କାର୍ଯ୍ୟ ବୋଲି

କହୁଁ, ତାହା ସେମିତି ବିଶେଷ ଭାବରେ ସେମାନେ ଅବଶ୍ୟ କରନ୍ତି ନାହିଁ; କିନ୍ତୁ ଯାହା କିଛି କରନ୍ତି, ସେଥିରେ ପ୍ରାଣ ଥାଏ ।

ଆଜି ଉପରବେଳାରୁ ଆରମ୍ଭ ହେଉଛି : ରଚନା, ପଦ ରଚନା ଓ ଲେଖାଲେଖି । ସେଇ ଦୁଇଟି ପ୍ରାଣବନ୍ତ କ୍ରିୟା-କେନ୍ଦ୍ର ମଝିରେ ଏହା ଯେପରି ପହିଲି ବାଡ଼ (କାନ୍ଥ) । ଜଣେ ଅନ୍ୟ ଜଣକୁ ସିଧାସଳଖ କହିବା ବା ଛୁଇଁବା ବଦଳରେ ଅନ୍ୟମାନଙ୍କ ପାଇଁ ନିଜ ଭାବନାକୁ ଲେଖି ଦେଉଛି । ମୁଁ ବେଶ୍ ଖୁସି । ଏହାସହ ମୁଁ କିଛିଟା ଦୁଃଖିତ ମଧ୍ୟ । କଥାରେ କହିବା ଓ ପାଖକୁ ଲାଗିଆସି ବୁଝେଇବା ଲୋକମାନେ କେବେ ଏକୁଟିଆ ହୁଅନ୍ତି ନାହିଁ । କିନ୍ତୁ ଲେଖକମାନେ ଏକୁଟିଆ । ଏଇଠୁଁ ପିଲେ ଏକୁଟିଆ ଭାବିବା ଆରମ୍ଭ କରୁଛନ୍ତି । ତେବେ, ମୋ ପିଲାମାନେ ଆପଣା ଇଚ୍ଛାରେ ପ୍ରଥମ କରି ବାକ୍ୟ ଗଠନ କରୁଛନ୍ତି ବୋଲି, ମୁଁ କ'ଣ ଖୁସି ହେବା ଉଚିତ୍ ? ଟ୍ୱିନୀ କଳାପଟାରେ ଗୋଟିଏ କାହାଣୀ ଲେଖୁଛି: ''ମାଛଟି ଡେଇଁ ପଡ଼ିଲା । ମାଛଟି ପହଁରୁଛି । କୁନି ମାଛଟି ସମୁଦ୍ର ଭିତରେ ଅଛି । ମାଛର ଗୋଡ଼ ନାହିଁ ।''ଆହା.... । ମୁଁ ସଭ୍ୟତାର ଅଗ୍ରଗତିକୁ ଅଟକେଇ ପାରିବିନି । ମୋର ମନ ଭିତରେ ଝଲସି ଉଠୁଛି ଅତୀତର ମାଓରି ପୂଜା-ପାଠର ପରିବେଶ । ଚିତା କୁଟେଇଥିବା ମାଓରିମାନଙ୍କ ଆବେଗଭରା କଥା । ଦୁନିଆଁ ପାଶୋରି ଦେଇଛି ସେ ସବୁ । ସେଇ ତ ସବୁ ଯୁଗରେ ଭାବର ପ୍ରତ୍ୟକ୍ଷ ଆଦାନ ପ୍ରଦାନର ବଳିଷ୍ଠ ପନ୍ଥା ।

ପିଲାଏ ବିଶ୍ରାମ ନେଇ ଶୋଇଲାବେଳେ ମୁଁ ଗୀତ ଶୁଣାଏ । ସେମାନଙ୍କ ଆଖିପତା ମୁଜି ହୋଇ ଆସୁଥାଏ । ସେତିକିବେଳେ ମୁଁ ସେଇ ସବୁ ଗୀତ ଗାଏ । ଏ ଗୀତ ମୋ ବାପା ଆମକୁ ପିଲାଦିନେ ଶୋଇଲା ବେଳେ ଶୁଣାଉଥିଲେ । କାମର ଚାପ ଯୋଗୁଁ ମୋ ନିଜ ପିଲାଙ୍କୁ ମଧ୍ୟ ମୁଁ ଗୀତ ଶୁଣେଇ ପାରେନି- ଯାହାକି ତାଙ୍କୁ ଥରକୁ ଥର ଦରକାର । ସେମାନେ ଏହାକୁ ଭଲ ପାଆନ୍ତି । ବାପାଙ୍କର ସବୁ ଗୀତ ମୁଁ ଶୁଣାଏ । ଏଥିରୁ ମୋତେ ବି ଭାରି ଉଶ୍ୱାସ ଲାଗେ । ଜାଣିପାରେ ନାହିଁ କିପରି କେଉଁ ଦାୟିତ୍ୱ ତୁଲେଇବାର ଆନନ୍ଦ ଭଏ ।

ଓ.... କୁଆଡ଼େ ଗଲାରେ କୁଆଡ଼େ ଗଲା ମୋର ଟିକି କୁକର, କେଉଁଠି ଥିବ ସିଏ, କେଉଁଠି ଥାଇପାରେ ? ତା' ଲୋମ କାଟିକାଟି, କରିଥିଲି ମୁଁ ଛୋଟ, ତା' ଲମ୍ୱା ଲାଞ୍ଜ ସେ ହଲାଉଥିଲା । କୁଆଡ଼େ ଗଲାରେ....... ଭାସି ମୁଁ ଯାଆନ୍ତି ଏ ନଈ ସୁଅରେ ମୋ ପୁରୁଣା ବୋଇତରେ........ ।

ଏଇ ଗୀତଟିକୁ ମୁଁ ପୂରା ଗାଏ ନାହିଁ । କାରଣ ଏଇଟା ଆମ ପରିବାରର ଏକ ଖାସ୍ ଗୀତ ଶହ ଶହ ବରଷ ଧରି ଆମେ ଏହା ଗାଇ ଆସୁଛୁ । କିନ୍ତୁ ବେଳେବେଳେ କାହିଁକି କେଜାଣି ମୁଁ ନିଜକୁ ଅଟକାଇ ପାରେନି- ଏଇ ଶୋଇ ଆସୁଥିବା ମାଟିଆ ମାଓରି ପିଲାଙ୍କୁ ଗୀତଟିକୁ ଶୁଣେଇଲା ବେଳେ ।

ଶୁକ୍ରବାର ଦିନ ମୁଁ ମୋର ଶିଶୁ ଶ୍ରେଣୀର ଅଧିକାଂଶ ପାଠ୍ୟ ଉପକରଣ ପୋଡ଼ି ଦେଲି । ମୁଁ କହେ ଯେ, ଶିଶୁ ପାଖରେ ଆମେ ଯେତେ ଅଧିକ ଉପକରଣ ରଖିବା, ଶିଶୁ ସେତେ  କମ୍ ତା' ନିଜ ଶକ୍ତିର ଉପଯୋଗ କରିବ । ତା' ଭାବନା ଓ ପ୍ରକାଶ ଦବି ରହିବ । ଅନ୍ୟ ସ୍କୁଲରୁ ମୋ ଶ୍ରେଣୀକୁ ଆସୁଥିବା ପିଲାମାନଙ୍କୁ ମୁଁ ଦେଖିଛି, ସେମାନେ ବିରକ୍ତିକର ଭାବେ ଅସହାୟ । ତାଙ୍କ ପାଇଁ ତାଙ୍କ ଶିକ୍ଷକ ମାଆ ପରି ସବୁ କିଛି କରିଦେଉ ବୋଲି ସେମାନେ ଚାହାଁନ୍ତି । ମୁଁ ଚହଟ ଚିକ୍କଣ ଝଲମଲ ଶ୍ରେଣୀ ପରିବେଶ ଉପରେ ଭରସା ରଖି ପାରେନା । ଶିଶୁ ତା' ନିଜ ମନର କଳ୍ପନାରୁ ରଙ୍ଗ ଆଉ ରସ ନିଗାଡ଼ି ରଚନା କରୁ ବୋଲି ମୁଁ ଚାହେଁ। କାରଣ ବାହାରୁ ଯେତେ ଯାହା ରଙ୍ଗ ଓ ତେଜ ଢାଳିଦେଲେ ବି ତାହା ଶିଶୁ ଉପରେ ଲଦି ଦେଲା ପରି ହୁଏ । ଏହାର ଭୀଷଣତାରେ ମୁଁ ଚିତ୍କାର କରିଉଠେ । ତା' ନିଜ କଳ୍ପନାରୁ ଯାହା କିଛି ସେ ରଚନା କରେ, ତାହା ସବୁ ତା' ମନ ଆଉ ପ୍ରାଣର ଆବେଗ ସହ ତାଳ ଦେଇ ତା'ର ଚରିତ୍ର ଗଢ଼େ । ଆଉ ତାହା ନିଶ୍ଚିତ ଭାବରେ ତା'ର ନିଜ ପ୍ରାଣର ଆବେଗ ରଚନାତ୍ମକ କାର୍ଯ୍ୟରେ ଅଙ୍ଗାଙ୍ଗୀଭାବେ ଜଡ଼ିତ । ଶ୍ରେଣୀ ପରିବେଶ ବିଷୟ ମୁଁ ଯାହା କିଛି କହିଛି, ତା' କେବଳ ଗୋଟେ ଉଦାହରଣ ଓ ସାଙ୍କେତିକ । ସବୁ କିଛି ଆନୁସଙ୍ଗିକ ଉଦାହରଣ ସ୍ୱରୂପ ଶ୍ରୀମତୀ ଏସ୍.ଙ୍କୁ ଦାୟିତ୍ୱ ଦିଆଯାଇଥିଲା, ନୂଆ ପାଠ୍ୟ ବହିକୁ ସାହାଯ୍ୟ କଲାପରି ବହୁତ ପରିମାଣରେ ପଦ ଲେଖା ପଟ (କାର୍ଡ଼) ବିଶେଷ୍ୟ ପଦଗୁଡ଼ିକ ସହିତ 'ପ୍ରତି', 'ଉପରକୁ', 'ମୋର'..... ଆଦି ପଦଗୁଡ଼ିକୁ ବୁଝାଇ ପାରିଲା ଭଳି ମଧ୍ୟ ଅଙ୍କିତ ହୋଇଥିଲା । ବିଶ୍ୱାସ କରିବା ମଧ୍ୟ କଷ୍ଟକର, ଭୟଙ୍କର- ଆଧୁନିକ ଶିକ୍ଷକମାନଙ୍କ ପକ୍ଷେ ଏସବୁ ତିଆରି କରିବା ଏବଂ ପରିଦର୍ଶକମାନଙ୍କ ପକ୍ଷେ ସେଥିପାଇଁ ପରାମର୍ଶ ଦେବା ।

ଛୁଆଟିଏ ଶୁଣୁଥିବା ବିଶେଷ୍ୟ ପଦଗୁଡ଼ିକୁ କ'ଣ ନିଜେ ଆଙ୍କି ପାରିବ ନାହିଁ ? ଆମର କ'ଣ ଅବ୍ୟୟ ଓ ଉପସର୍ଗ ପାଇଁ ଛବି ଅଛି ? ଆଉ, ଏ ସବୁ ବାହାରେ ସବୁ କଥା ପାଇଁ କେତେ ଯେ ସମୟ ଦରକାର, ସେ ବିଷୟ ଚିନ୍ତା କରନ୍ତୁ । ଏ ସବୁକୁ ଠିକ୍

ଠିକ୍ ଭାବରେ ସଜେଇବା, ବ୍ୟବହାର କରିବା ଓ ସୁଧାରିବାରେ କେତେ ସମୟ ଲୋଡ଼ା ହୁଏ, ତାହା ଶିଶୁ ଶ୍ରେଣୀରେ ଶିକ୍ଷା ଦେଉଥିବା ଲୋକେ କେବଳ ଜାଣି ପାରନ୍ତି । ଆମର ମୂଲ୍ୟବାନ ସମୟ କଥାଭାଷାରେ ଲଗାଯାଇ ପାରିବ । ତେଣୁ ଯୌବନ ଅବସ୍ଥାରେ ତିଆରି କରିଥିବା ସବୁ ଜିନିଷ ଜାଳି ଦେଲି । ଡଜନ ଡଜନ୍‌ର ତିନିପୁରିଆ ମଲାଟର ପଟ (କାର୍ଡ଼), ହାତରେ ଛପେଇଥିବା ପଟ ( Card), ଆଉ ରଙ୍ଗବୋଳା ପଟ । ପେଢ଼ିଗୁଡ଼ିକରେ ସେଗୁଡ଼ିକ ଭରି ହୋଇ ରହିଥିଲା । ଏଣିକି ମୋ ଶିଶୁ ଶ୍ରେଣୀ କୋଠରୀରେ କେବଳ ତଳ ଲିଖିତ ଜିନିଷ ରହିବ:

| | |
|---|---|
| ଚକ୍ | ପୁସ୍ତକ |
| କଳାପଟା | ଚାର୍ଟ |
| କାଗଜ | ରଙ୍ଗ |
| ପେନ୍‌ସିଲ୍ | ମାଟି |
| ଗିଟାର୍ | ପିଆନୋ |

ପିଲାଟିଏ ଯେତେବେଳେ ପଢ଼ିବାକୁ ଇଚ୍ଛା କରିବ, ସିଏ ତା' ହାତରେ ବହିଟିଏ ନେଇ ପଢ଼ିବ, ଲାଗି ପଡ଼ି ଚେଷ୍ଟା କରିବ । କିନ୍ତୁ ପିଲାର ନିଜ ଚେଷ୍ଟାକୁ ଏଡ଼ି ଦେବା କିମ୍ବା ତା'ର ନିଜର ଅଧିକାରକୁ ମନା କରିଦେବା,- କେବେହେଲେ ତା' ନିଜସ୍ୱ ଶକ୍ତିର ଉପଯୋଗ ଓ ପ୍ରକାଶ ବୋଲି କୁହାଯାଇପାରିବ ନାହିଁ ।

ଅବଶ୍ୟ ସେ ସବୁ ପୋଡ଼ି ଉପରକୁ ଧୂଆଁ ଉଠୁଥିବା ଦେଖି ମୋତେ ବହୁତ ଖରାପ ବି ଲାଗିଥିଲା ।

କିନ୍ତୁ ତା'ପରେ ଶିକ୍ଷା ଦେବା କେଡ଼େ ସରଳ ଓ ସହଜ ହୋଇଗଲା ! କଥାଭାଷା ପାଇଁ ଏଣିକି ବହୁତ ସମୟ ମିଳିଲା । କଥାଭାଷା.... ଭାବର ଆଦାନ-ପ୍ରଦାନ । ଚିମିନି ଭିତରର ଗର୍ଜନ ତ ଆପଣ ଶୁଣିଥିବେ !

ଏଇ ସପ୍ତାହରେ ଆମର ପ୍ରଗତିର ମୂଲ୍ୟାଙ୍କନ କରାଯାଇଥିଲା । ଟମ୍, କେ-ଆଦି ପୁରୁଷ(ଶିକ୍ଷକ)ମାନେ ଭଲ ମାର୍କ୍ ପାଇଥିଲେ । କିନ୍ତୁ ସବୁ ଥର ପରି ମୁଁ ପଛୁଆ ଥିଲି, ଧିମେଇ ଯାଇଥିଲି । ସେଥିରେ ସନ୍ଦେହ ନ ଥିଲା । ଶିକ୍ଷା ବିଭାଗର ଆଖିରେ ମୁଁ ଜଣେ କମ୍ ଦକ୍ଷତା ଥିବା ଶିକ୍ଷୟିତ୍ରୀ । ଏ କଥା ପଢ଼ିଲେ, ମୋର ଭଉଣୀ ଡଫ୍‌ନି କହେ ଯେ, ମୋ ଅବସ୍ଥାରେ ଥିବା ଜଣେ ମହିଳା ପକ୍ଷରେ ଭଲ ଶିକ୍ଷୟିତ୍ରୀଟିଏ ହେବାକୁ

ଚେଷ୍ଟା କରିବା ଅପମାନଜନକ । କିନ୍ତୁ ମୋ ବିଚାରରେ ଏଇଟା ବେଶ୍ ଏକ ଗୌରବର ବିଷୟ- ଯଦିଓ ନିଉଜିଲାଣ୍ଡର ଶିକ୍ଷା କ୍ଷେତ୍ରରେ ଏହାକୁ ଗ୍ରହଣ କରାଯିବ ନାହିଁ । ମୁଁ ଏକୁଟିଆ ଚାଲିଛି, ଠିକ୍ ଏଡ୍‌ମଣ୍ଡ୍ ବର୍କ୍‌ଙ୍କ ପରି । ଆମେ ସବୁ ''ପ୍ରତାରକ''- ସମାଲୋଚକମାନେ ଯେଉଁମାନଙ୍କୁ କୌଣସି ଶ୍ରେଣୀଭୁକ୍ତ କରି ପାରନ୍ତି ନାହିଁ, ସେହି ଲୋକଙ୍କୁ ଏଇ ଆଖ୍ୟା ଦେଇଥାନ୍ତି । ଭଏ ତା'ର ବିକଳ୍ପ । ମୁଁ ଉଭୟକୁ ବ୍ୟବହାର କରେ ।

ଶନିବାର, ସକାଳବେଳା । ଆଜି ଏଇ ସକାଳରେ ମୁଁ ଗୋଟିଏ ନିଷ୍ପତ୍ତିରେ ପହଂଚି ଯାଇଛି । ଏ ବର୍ଷ ଶେଷରେ ମୁଁ ଇସ୍ତଫା ଦେଉଛି । ମୁଁ ମୋର ସ୍ଥିତିକୁ ଦୃଢ଼ କରିଛି । ଏଇଠି ବହୁତ କିଛି ଆରମ୍ଭ କରିଛି । ମୋର ସବୁ କିଛି ନିଜସ୍ୱ ଧାରଣାକୁ କାର୍ଯ୍ୟକାରୀ କରିଛି; ମାତ୍ର ଏ ସବୁକୁ ମୁଁ ଛାଡ଼ି ଦେବାକୁ ଯାଉଛି । ମୋ ପାଇଁ ଏସବୁ ଯଥେଷ୍ଟ । ମୁଁ କେବଳ ଜଣେ ପତ୍ନୀ ହେବାକୁ ଯାଉଛି ଏବଂ ତା'ଠାରୁ କିଛି ଅଧିକ ନୁହେଁ । ଆହୁରି ଆଗରୁ ମଧ୍ୟ ମୁଁ ଛାଡ଼ି ଦେଇପାରେ । ଅସୁସ୍ଥତା ଛୁଟି ମୋର କେତେ ଅଛି, ମୁଁ ହିସାବ କରୁଛି । ସେଇ ତକ ପ୍ରଥମେ ଭୋଗ କରିବି । ତା' ପରେ ଏଥିରୁ ଅବ୍ୟାହତି ନେଇଯିବି ।

ଗୋଟିଏ କୋଣରେ ଥିବା ଭେରେପାରିତାଙ୍କ ଯାଆଁଳା ଛୁଆ ଦୁଇଟିଙ୍କ କବର ଉପରେ ଛୋଟ ଛୋଟ ଘାସ ବଢ଼ି ଉଠିଛି । ଆଉ, ମୁଁ ଭାବୁଛି, ଭେରେପାରିତାଙ୍କ ଦୁଃଖ ଉପରେ ବି ଘାସ କଅଁଳୁଛି । କିଛି ସମୟ ପାଇଁ ମୋତେ ଦୁଃଖ ଲାଗିଲା । ସେ ଡାକ୍ତରଖାନାରୁ ତାଙ୍କ ଘରକୁ ଫେରି ଆସିଛନ୍ତି ଏବଂ ସେଇ ଘରେ ତାଙ୍କର ପୁରୁଣା କାମ ପୁଣି ଚାଲୁ କରିଛନ୍ତି । ରାସ୍ତା ପାରି ହେଲାବେଳକୁ ମୁଁ ତାଙ୍କୁ ଦେଖିଥିଲି । ବେଳେ ବେଳେ ମୁଁ ତାଙ୍କୁ ଦେଖେ, ଆଗ ଦୁଆରକୁ ଆଉଜି ସେ ଠିଆ ହୋଇଥାନ୍ତି । ଅଳସ ଭାବେ ଝାଡୁଟିଏ ଧରିଥାନ୍ତି, ଆଉ ଖାଲି ଚାହିଁଥାନ୍ତି । କିଏ ଜଣେ ମୋତେ କହିଥିଲେ, ''ଗତକାଲି ଭେରେପାରିତା ତାଙ୍କର ଛୁଆଙ୍କ କବର ପାଖରେ କାନ୍ଦୁଥିଲେ ।'' ସେଇଥିପାଇଁ ତାଙ୍କ ସକାଶେ ନିଶ୍ଚୟ କିଛି କରି ପାରିବି ବୋଲି ମୁଁ ଭାବୁଥିଲି । ଜଣେ ଷୋଳ ବର୍ଷର ବାଳିକା ପକ୍ଷରେ ଏତେ ବଡ଼ ଆଘାତ ସହିବା ଅତି କଷ୍ଟକର । ତେଣୁ ସୁବିଧା ଦେଖି ତାଙ୍କୁ ସାଙ୍ଗରେ ନେଇଯିବାକୁ ମୁଁ ମନେ ମନେ ସ୍ଥିର କରିଥିଲି । ଭାବିଥିଲି ଶୁକ୍ରବାର ରାତିରେ ତା'ଙ୍କୁ ସାଙ୍ଗରେ ସହରକୁ ନେଇଯିବି । କିନ୍ତୁ ସେ କଥା ମୁଁ ଅବଶ୍ୟ ଭୁଲି ଯାଇଥିଲି । ସେଇ ଶୁକ୍ରବାର ରାତିରେ ଲୋକ ଗହଳି ଭିତରେ ସାହି ମୁଣ୍ଡରେ

ପହଂଚିଲା ବେଳକୁ ମୁଁ ଭେରେପାରିତାଙ୍କୁ ଭେଟିଲି । ପ୍ରସାଧନ ସାମଗ୍ରୀରେ ସିଏ ତ ସେତେବେଳେ ପୂରାପୂରି ରଙ୍ଗୀନ ଓ ସକ୍ରିୟ ଦେଖାଯାଉଥିଲେ । ସାଥିରେ ବାଳିକାଟିଏ ବି ଥିଲା । ମୁ ଭାବିବାକୁ ଲାଗିଲି । ପ୍ରକୃତରେ ତାଙ୍କ ଚାହାଣୀରୁ ଆପଣ ଭାବି ପାରିବେ ନାହିଁ ଯେ, ତାଙ୍କ ପ୍ରାଣ-ପ୍ରିୟ ପିଲା ଦିଓଟି ଘର ପାଖରେ କବର ତଳେ ଶୋଇ ରହିଛନ୍ତି ଏବଂ ବିବାହ କରିଥିବା ପୁରୁଷଟିଏ, ତାଙ୍କର ପଛେ ପଛେ ଘୂରି ବୁଲୁଛି - ମୁଁ ଆଗପଛ ଭାବୁଛି ଆଉ ଆଶ୍ଚର୍ଯ୍ୟ ହେଉଛି । ତେବେ ଭେରେପାରିତାଙ୍କ ଅସୁସ୍ଥତା ଓ ଦୁଃଖ ଏ ସବୁର ଗୋଟିଏ କାରଣ ହୋଇଥିବ ନିଶ୍ଚୟ । ଆଗରୁ ସେ ଜଣେ ସାଧାରଣ ମାଓରି ବାଳିକା ଥିଲେ, ତାଙ୍କ ଚମ ଖଦଡ଼ା ଥିଲା । କିନ୍ତୁ ଏବେ ତ ତାଙ୍କର ଚମରେ ତେଜ ଅଛି, ଚମକ ଅଛି, ଦେହରେ ଝଲକ ଅଛି । ଗଲା ମାସର ସୁନ୍ଦରୀ ପ୍ରତିଯୋଗିତାରେ ସେ ଦ୍ୱିତୀୟ ସ୍ଥାନ ପାଇଥିଲେ । ହେଲେ ତା ପରେ ସେ ଦିନ ସେ ରାସ୍ତା ପାରି ହେଲା ବେଳକୁ ତାଙ୍କୁ ଗୋଟେ ଟ୍ରକ୍ ଧକ୍କା ଦେଲା, ସେ ଗଡ଼ି ଗଡ଼ି ଯାଇ ପଡ଼ିଲେ, ତାଙ୍କ ଆଣ୍ଠୁଯାଏଁ ବେଶ୍ ଖଣ୍ଡିଆଖାବରା ହୋଇ ଯାଇଥିଲା । ପାଦରେ ଜୋତା ନ ଥିଲା ।। ଏହା କି ମର୍ମନ୍ତୁଦ ଦୃଶ୍ୟ ଥିଲା ।

"ମୁଁ ତୁମକୁ ଭଲ ପାଏ", ମୋହି କହେ, "କାରଣ ତୁମେ ଧୂଆଁ ପିଅ ।"

ମୋହି ଜଣେ ସୁନ୍ଦର ମାଓରି ଯୁବକ । ତାଙ୍କ ବାପା କାର୍ଣ୍ଣିଭାଲ୍‌ରୁ ଆସିଛନ୍ତି । ସେ ଜଣେ ଯାଯାବର ପଶୁ ଜଗୁଆଳ ।

"ହଁ, ମୁଁ ଧୂଆଁ ପିଏ ସତ ।"

"ତୁମେ ନରକକୁ ଯିବ ।"

"ମୁଁ ସେଇମିତି ଚାହେଁ ।"

"ମୁଁ ଧୂଆଁ ପିଏ ।" ମୋହି କହେ ।

"କଅଣ.... ତା'ହେଲେ ତୁମେ ବି ନରକକୁ ?"

ସେ ଜୋର୍‌ରେ ମୁଣ୍ଡ ହଲାଏ, ମାଓରି ଢାଞ୍ଚାରେ ।

"ଠିକ୍ ଅଛି, ମୁଁ ଆଉ ତୁମେ, ମୋହି ! ଆସ ଆମ ଗଣ୍ଠିଲି ବାନ୍ଧିବା ନରକ ଯିବାକୁ ।"

ପାଶୋରି ହୋଇ ନ ଥିବ ଏସବୁ ।



ସ୍କୁଲରେ ଗତ ସପ୍ତାହର ବଡ଼ ଘଟଣା ଭିତରେ ଥିଲା; କୁନି ଛୁଆ ହିନି ଓ ରିତି ଟାମାଟିଙ୍କର ପରିଚ୍ଛନ୍ନତା । ଏ ପିଲାଙ୍କୁ କିଏ ଜଣେ ଗାଧୁଆ ପାଧୁଆ କରି ମୁଣ୍ଡ କୁଣ୍ଡେଇ ବେଣୀ ପକାଇ ଦେଇଥିଲା । ତାଙ୍କର ପୋଷାକ ବେଶ୍ ସଫା ଥିଲା ଓ ଇସ୍ତ୍ରୀ ହୋଇଥିଲା । ମୁଁ ଆଶ୍ଚର୍ଯ୍ୟ ହୋଇ ଯାଇଥିଲି ମୁଁ ନିଜେ ହିଁ ସେମାନଙ୍କ ଦେହରୁ ପୋଷାକ ଉପରେ, ସଫା କରେ ଓ ମୁଣ୍ଡ କୁଣ୍ଡାଇ ଦିଏ । ମୋ କର୍ତ୍ତବ୍ୟ ଦୃଷ୍ଟିରୁ ମୁଁ ଏତିକି କରୁଥିଲି ।

''କିଏ ତମକୁ ଗାଧୋଇ ଦେଲା ?'' ମୁଁ ପଚାରିଲି ।

''ମାଆ ।'' ସେମାନେ କହିଲେ ।

''ସିଏ ଫେରିଲେଣି ?''

''ହଁ, ସେ ଫେରି ଆସିଲେଣି । ସେ ଆମ ପୋଷାକ ସଫା କରି ଦେଇଛନ୍ତି ।''

''ସିଏ ତୁମର ମୁଣ୍ଡ ମଧ୍ୟ କୁଣ୍ଡାଇ ଦେଇଛନ୍ତି ।''

''ଆଚ୍ଛା, ବଢ଼ିଆ । ସିଆଡ଼େ ଦେଖ ।''

ଏ ଦୁଇ ଜଣଙ୍କ ବିଷୟରେ ମୁଁ ଏ ଯାଏଁ କିଛି କହିନି । କାରଣ: ତାଙ୍କ ବଡ଼ ଭଉଣୀ ରୋଜ୍ ବିଷୟରେ ପହିଲେ କିଛି ଲେଖିବି ବୋଲି ଭାବିଥିଲି । ମାଆ ପାଖରେ ନ ଥିଲା ସମୟରେ ରୋଜ୍ ଏ ଦୁହିଁଙ୍କର ଯତ୍ନ ନିଏ । ମୁଁ ଏଯାଏଁ ରୋଜ୍‌କୁ କେବେ ଭେଟିନାହିଁ । ସେ ସେଇ ସୌନ୍ଦର୍ଯ୍ୟ ପ୍ରତିଯୋଗିତା ଦିନ ସୁନ୍ଦରୀମାନଙ୍କ ପରେଡ଼୍‌ରେ ନେତୃତ୍ୱ ନେଇଥିଲା । ଧଳା ପୋଷାକ ପରିହିତା ଏଇ ସେଇ ରୋଜ୍ ।

ମୁଁ ଇସ୍ତଫା ଦେଉ ନାହିଁ । ମୁଁ ମୋର ମନ ପରିବର୍ତ୍ତନ କରିଛି । ସେଇଟାକୁ ତ ମୁଁ ମୋର ମନ ବୋଲି କହେ ।

ହାରୀ ଆଜି ସକାଳେ ସ୍କୁଲକୁ ପୁଣି ଫେରି ଆସିଲା । ତା' ଆଖିରେ ଲୁହ ଭରି ରହିଥିଲା । ମୁଁ ସ୍କୁଲକୁ ଫେରିବା ଯାଏଁ ତାକୁ ଅଟକେଇ ରଖିବା ପାଇଁ ସଭିଏଁ ମିଶି ଲାଗି ପଡ଼ିଥିଲେ । କେବେ ତ ସିଏ ଦ୍ୱିତୀୟ ଘଣ୍ଟି- ପୂର୍ବରୁ ସ୍କୁଲରେ ପହଂଚି ନ ଥାଏ । ମୁଁ ତାକୁ ଉଠେଇ ନେଲି । ମେଜ ଉପରେ ମୋ ପାଖରେ ବସାଇ ଦେଲି । ପିଲାଏ ନିଜ କାମରେ ଲାଗିଥିଲେ । ମୁଁ ସେମାନଙ୍କୁ କହୁଥିଲି, ଆଉ ହାରୀ ଏସବୁ ଦେଖୁଥିଲା । କିଛି ଡାକ ଟିକଟ ନେଇ ଖେଳୁଥିଲା । 'ନୀଳ ମାଠିଆ' କାହାଣୀଟି ମୁଁ ପଢ଼ିଲି । ସେ ମୋତେ କହିଲା, ଉପରବେଳା ସେ ଘରେ ରହିଯିବ କେବଳ ଶୋଇବାକୁ । କାରଣ, ତାଙ୍କର ନୂଆ ଛୁଆ ତାକୁ ସାରା ରାତି ଶୁଏଇ ଦେଇନି । କିନ୍ତୁ ସେ ଦିନ ଉପରବେଳା ସେ ସ୍କୁଲକୁ ଆସି ଯାଇଥିଲା । ଖୁବ୍ ଖୁସି ଥିଲା ପରି ଦେଖା ଯାଉଥିଲା । କିନ୍ତୁ ମୁଁ ଭାବୁଛି ସେ ଘରର ଚାପ ଅନୁଭବ କରୁଥିଲା । ଚାରି ଜଣ ସାନ ସାନ ଶିଶୁ, ଆଉ ହାରୀ ସେଇ ଚାରିଜଣଙ୍କ ଭିତରେ ବଡ଼ । ଭାବି ଦେଖନ୍ତୁ, ଗୋଟିଏ ଛୋଟ ଛୁଆର ତା' ଘରେ ତା'ର ମାଆ ପାଖରେ ସ୍ଥାନ କିପରି ଘନ ଘନ ବଦଳି ଚାଲିଛି । ସେଇଥିପାଇଁ....... ମୁଁ ମାଆ ପରି, କିମ୍ବା ଜେଜେ ମାଆ ପରି ତା' ସାଙ୍ଗରେ ଲାଗିଥିଲି । ଆପଣ ଯେପରି ଏହାକୁ ଭାବିବେ । ଏହା ବାହାରେ, ମୋତେ ଯେପରି ଗୋଟେ ଭୂତ ପାଲିବାକୁ ପଡୁଥିଲା- ନିଜକୁ ଅପରାଧ ବୋଧରୁ ରକ୍ଷା କରିବାକୁ । ସବୁ ଶ୍ରେଣୀର ବାଳିକାଙ୍କୁ ପରୀକ୍ଷା କରି ବାସ୍କେଟ୍‌ବଲ୍ ଖେଳ ପାଇଁ ମୁଁ ତିନୋଟି ଦଳ ଗଢ଼ି ନେଲି: କ, ଖ ଓ ଗ । ସେମାନେ ସମସ୍ତେ ତାଙ୍କ ଖେଳ ପୋଷାକରେ ମୁଣା ତିଆରି କରୁଛନ୍ତି ଏବଂ ଅନ୍ୟ ଖେଳ ଉପକରଣ ବୁଣୁଛନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ ପିଆନୋ ବଜାଇବା ବି ଅଭ୍ୟାସ କରନ୍ତି । ମୁଁ ଅନୁଭବ କରୁଛି, ସେମାନେ ଠିକ୍ ଭାବେ ନିଜ ନିଜକୁ ଗଢ଼ି ନେଉଛନ୍ତି, ମୁଁ ବେଶ୍ ଖୁସି ସେଥିରେ । ଯେଉଁମାନେ ବଲ୍ ଫିଙ୍ଗି ଗୋଲ୍ କରିବେ, ସେମାନେ ପ୍ରତିଦିନ ନିର୍ଦ୍ଦିଷ୍ଟ ଭାବେ କୋଡ଼ିଏଟି ଗୋଲ କରିବାରେ ସଫଳ ହେବାକୁ ଠିକ୍ କରାଯାଇଛି । ଅବଶ୍ୟ ଏଥିରେ ମୁଁ ସନ୍ଦେହମୁକ୍ତ ନ ଥିଲି; ଭାବୁଥିଲି ମୁଁ ବୋଧହୁଏ ବେଶି କଠୋର ହୋଇଯାଇଛି, ସଂଖ୍ୟାଟି ଅତି ଅଧିକ ହୋଇଯାଇଛି । କିନ୍ତୁ ଖ ଦଳର କେତେଜଣ ବାଳିକା ଦିନକୁ ଶହେ ଯାଏଁ ଗୋଲ୍ କରି ପାରୁଛନ୍ତି ଏବଂ ଆଜି ଯାନି ତ ପାଞ୍ଚଶହ କୋଡ଼ିଏଟି ଗୋଲ କରିଛି । ଜ୍ୟୋତିଷ ଶାସ୍ତ୍ରର ସଂଖ୍ୟା ନିୟମ ପରି ଏଇ ସଂଖ୍ୟାଗୁଡ଼ିକ ଉପରେ ମୋର ବିଶ୍ୱାସ କରିବା ଦରକାର କି ବୋଲି ମୁଁ ଖେଳ ପରିଚାଳକଙ୍କୁ ପଚାରୁଥିଲି । ଗତ ସପ୍ତାହରେ ଆମିରିଆ

ସାତ ଶହ ଏକୋଇଶିଟି ଗୋଲ କରିଛି । ମୁଁ ଟମ୍‌କୁ କହିଲି, ''ଏମାନଙ୍କ ଉପରେ ମୁଁ ଆଉ କଟକଣା ଜାରି କରି ପାରିବିନି । ଏମାନଙ୍କର ଏଇ ସଂଖ୍ୟାକୁ ଗ୍ରହଣ କରି ନେବା ଛଡ଼ା ମୁଁ ଅଧିକା କିଛି କରି ପାରିବିନି । ଅନ୍ତତଃ ସେମାନେ ତ ଆକର୍ଷଣୀୟ ହୋଇ ଉଠିଛନ୍ତି ।''

ମୋ ଶିଶୁ ଶ୍ରେଣୀ କୋଠରୀରେ ପ୍ରାୟ ସବୁବେଳେ ବାଳକଟିଏ କିଛି ଅଭ୍ୟାସ କରୁଥିବ, ବାଳିକାଟିଏ ସିଲେଇ କଳରେ ସିଲେଇ କରୁଥିବ । ବାଳିକାଟିଏ ପୋଷାକରେ ଥଳିଟିଏ ସିଉଁଥିବ । କେହି କେହି ବୁଣୁଥିବେ ଏବଂ ଆଉ ତିନି/ ଚାରି ଡଜନ ଛୁଆ କାମ କରୁଥିବେ, ଗପୁଥିବେ, ହସୁଥିବେ, ଆଉ ଅନେକ ସମୟରେ ଗୀତ ଗାଉଥିବେ । ପିଲେ ଗୀତ ଗାଇଲାବେଳେ ଶୁଣିବାକୁ ମୋତେ ଭାରି ଭଲ ଲାଗେ; ପହିଲେ ଜଣେ, ପରେ ତିନିଜଣ, ତା' ପରେ ସବୁ ପିଲା । କିନ୍ତୁ ଏବେ ମନେହେଉଛି, ମୁଁ ଯାହା କିଛି ବେଶି ଭଲ ପାଏ, ତା' ହିଁ ମୋର ଦୁଃଖର କାରଣ ହୁଏ । ଅନେକ ସମୟରେ ମୁଁ ପିଆନୋ ପାଖକୁ ଯାଏ ଏବଂ ପିଆନୋ ବଜେଇ ତାଙ୍କରି ଗୀତ ଗାଏ । ବେଳେବେଳ ସେମାନେ ଧାଇଁ ଆସି ଗାଆନ୍ତି; କିନ୍ତୁ ବେଳେ ବେଳେ ଠିକ୍ ସେଇ ନିଜ ପୁରୁଣା ଢାଞ୍ଚାରେ ଗାଆନ୍ତି । କିନ୍ତୁ ଯେତେବେଳେ ସେମାନେ 'ଶୁଭରାତ୍ରି ଇରିନ୍' ଗୀତଟି ଶୁଣନ୍ତି, ସେମାନେ ସମସ୍ତେ ଧାଇଁ ଆସନ୍ତି, ମୋତେ ଘେରିଯା'ନ୍ତି ଏବଂ ସେମାନେ ଯାହା କିଛି ଜାଣନ୍ତି, ସବୁ ଗାଆନ୍ତି । ଅବସ୍ଥା ଏମିତି ହୁଏ ଯେ ମୋତେ ସେମାନଙ୍କ ସହିତ ମିଶି ଯିବାକୁ ପଡ଼େ । ଆଉ ଓ୍ୱାଇଓ୍ୱିନୀ ଏକାବେଳକେ ପାଖେଇ ପାଖେଇ ଦେହରେ ଲାଗିଯାଏ ପିଆନୋ ପାଖକୁ, ତା' ପରେ ମଝିକୁ, ତେଣିକି ସଭିଏଁ ସେଇ ବାଟ ଧରନ୍ତି । କିଛି ସମୟ ପରେ ସେମାନେ ପଛକୁ ହଟି ଯାଆନ୍ତି, ନିଜ ନିଜ କାମରେ ଲାଗି ପଡ଼ନ୍ତି । କେଡ଼େ ସୁନ୍ଦର ଏ ଚଳପ୍ରଚଳ ! ଦଳ ଗଢ଼ିବା ବି କେଡ଼େ ଆକର୍ଷଣୀୟ ! ଆପଣା ଛାଏଁ ସଭିଏଁ ଯେପରି ଆତ୍ମ-ପ୍ରକାଶ କରି ଯାଆନ୍ତି । ସେତେବେଳେ ମୁଁ ଥିଲି କେଉଁଠି ? ହଁ, ଶିକ୍ଷା ବିଭାଗ ଆଖିରେ ଏ ସବୁ ଖରାପ ଶିକ୍ଷାଦାନର ଫଳ । ମୋର ବିଶ୍ୱାସ ଦୃଢ଼ୀଭୂତ ହୋଇଯାଇଛି ।

ଏଥର ଆଉ ଏକ ଦିଗକୁ ଦେଖିବା । ଖେଳ ପୋଷାକ ଦୋକାନୀ ଆମର ବରାଦୀ ପୋଷାକ ଦେଇ ପାରୁନି । ମୁଁ ତାଙ୍କୁ ଦୋଷ ଦେଉନି । ଗଲାକାଲି ମୁଁ ତାଙ୍କ ଦୋକାନକୁ ଯାଇଥିଲି । ସ୍କୁଲ ପାଇଁ ଗୋଟିଏ ପ୍ରୋଜେକ୍ଟର ଦେଖିବାକୁ ଶ୍ରୀମତୀ କେ-

ମଧ୍ୟ ସେଠାକୁ ଯାଇଥିଲେ । ବାଃ, କ'ଣ ମୁଁ ଦେଖୁଛି ? ଧାଡ଼ି ଧାଡ଼ି ହୋଇ ମାଟିଆ ରଙ୍ଗର ଗେଞ୍ଜି ଆଉ ବ୍ଲେଜର୍ ଆଦି ଖେଳ ପୋଷାକ । ମୁଁ ସେଠାର ବିକିବା ଦାୟିତ୍ୱରେ ଥିବା ମହିଳାଙ୍କ ସହିତ କଥା ହେଲି । ସେ ବେଶ୍ ପୋଖତ ବ୍ୟବସାୟୀ, ଜଣେ ଉଚ୍ଚା ମଣିଷ । ମାତ୍ର ତାଙ୍କ କଥାରେ ମୁଁ ଚମକି ପଡ଼ିଲି । ସେ କହିଲେ ଯେ ସେ ଆଉଥରକୁ ଅଧିକ ପୋଷାକ ପାଇଁ ବରାଦ ଦେବେ । ତେଣୁ ଖାଲି ଶ୍ରୀମତୀ ହାକିଓ୍ୱାଇଙ୍କ କଥା ଭାବିଲି । ସେ ବି ତ ତାଙ୍କୁ ପୋଷାକ ପାଇଁ ଆଗତୁରା ପଇସା ଦେଇ ଦେଇଥିଲେ । ତେଣୁ ତିନି ହଳ ପୋଷାକ ବାଛି ଦେଇ କହିଲି, ''ଶ୍ରୀମତୀ ହାକିଓ୍ୱାଇ ।'' ସେ କାଗଜ କଲମ ଧରି ଆଗେଇ ଆସିଲେ ।

''ଆପଣ ନାମଟି କିପରି ଉଚ୍ଚାରଣ କରନ୍ତି ?''

ମୁଁ ଉଚ୍ଚାରଣ କଲି ।

''ସେଇଟା ମାଓରି ଢାଞ୍ଚା ।'' ଦୋଷ ଦେଲା ପରି ସେ କହିଲେ । କହୁ କହୁ ସେ କାଗଜ କଲମ ଥୋଇ ଦେଲେ ।

''ହଁ ।''

''ମାଓରିମାନଙ୍କ ଉପରେ ଭରସା ନାହିଁ । ସେମାନେ ଜିନିଷ ପାଇଁ ବରାଦ କରନ୍ତି । କିନ୍ତୁ ଜିନିଷ ନିଅନ୍ତି ନାହିଁ ।''

''ତା' ସତ । କିନ୍ତୁ ଇଏ ସେପରି ନୁହନ୍ତି ।''

''କ'ଣ ଶିକ୍ଷୟିତ୍ରୀ ?''

''ହଁ ।'' ମୁଁ ତଳକୁ ଚାହିଁ କହିଲି । ମୋତେ ଲଜ୍ଜା ଲାଗୁଥିଲା ।

ସେ ମୋର ତାଳୁରୁ ତଳିପା ଯାଏଁ ଆଖି ବୁଲେଇ ନେଲେ । ସତେ ଯେପରି କହୁଥିଲେ, ''ହଁ, ଯାଆନ୍ତୁ ଏଥର ।'' ମୁଁ ଗଭୀର ଭାବେ ଚିନ୍ତା କରୁଥିଲି । ମୋର ପିଲାଙ୍କୁ ମାଟିଆ ଆଉ ହଳଦିଆ ପୋଷାକରେ ଦେଖିବାକୁ ଇଚ୍ଛା କରୁଥିଲି । କିନ୍ତୁ ମୋର ସେଇ ସପନ ପାଇଁ ଦେବାକୁ ପଡୁଛି ଏତେ ଦାମ୍ !! ଯାହା ହେବାର ଥିଲା, ହେଲା । ପୋଷାକ ଦେଖିବାକୁ ମୁଁ ଦୋକାନର ଆର ମୁଣ୍ଡଯାଏଁ ଚାଲିଗଲି । ପର ଲାଗିଥିବା ଦାମୀ ପୋଷାକଗୁଡ଼ିକୁ ଦେଖି ଚାଲିଲି ନିଜକୁ ନିଜେ ସାନ୍ତ୍ୱନା ଦେବାକୁ ।



ଗୋଟେ ରାତିରେ ପ୍ରଧାନ ଶିକ୍ଷକମାନଙ୍କ ଆଲୋଚନା ସଭା ବସିଥିଲା । ଜଣେ ବରିଷ୍ଠ ନିରୀକ୍ଷକ (ସିନିଅର୍ ଇନ୍ସପେକ୍ଟର)ଙ୍କ ସହିତ କେ-କଥା ହେଉଥିଲେ । ସେ ଶିକ୍ଷା ବର୍ଷର ଆସନ୍ତା ଭାଗରେ ମୋ ସ୍କୁଲକୁ ଜଣେ ସହକାରୀ ଶିକ୍ଷକଙ୍କୁ ପଠାଇବେ ବୋଲି କେ-ଙ୍କୁ କହିଲେ । ''ଶ୍ରୀମତୀ ହେଣ୍ଡରସନ୍ ଯାହାକିଛି କରିବା ପାଇଁ ଲାଗି ପଡ଼ିଛନ୍ତି । ସେଥିରେ ତାଙ୍କୁ ସାହାଯ୍ୟ କରିବାକୁ ।'' ଏଥିରୁ ଆପଣ ଭଲ ଭାବରେ ଜାଣି ପାରିବେ, ସ୍କୁଲରେ କର୍ମଚାରୀଙ୍କ ସଂଖ୍ୟା-ସମ୍ବନ୍ଧର ଏସବୁ ନୀତି ନିୟମକୁ ଗୋଳେଇ ଘାଣ୍ଟି ଅନ୍ୟ ସ୍କୁଲମାନେ ଯା' ବିରୁଦ୍ଧରେ ନିଶ୍ଚୟ ଲଢ଼ିବେ । ଯାହାହେଲେ ବି, ଗୋଟିଏ କଳ୍ପନାକୁ ରୂପ ଦେଇ କାମରେ ଲାଗିଲାବେଳେ ଝଡ଼ ନିଶ୍ଚୟ ଛକି ବସିଥାଏ । ଗତକାଲି ଜଣେ ସ୍ଥପତି ଆସି ସ୍କୁଲରେ ଗୋଟିଏ ଗୋଟିଏ ଶିକ୍ଷକମାନଙ୍କ କୋଠରୀ, ଧୂଆ-ଧୋଇ ଘର ଓ ଗାଧୁଆ ଘର ପାଇଁ ମାପଚୁପ ନେଇଛନ୍ତି । ଆହୁରି ଝଡ଼ । ହଉ, ଯାହା ହେବାର ଥିଲା, ସେ ସବୁ ହେଇଗଲାଣି । ମୋର ଗୋଟିଏ ଅତି ଛୋଟ ସପନ ରହିଛି: ଗୋରା ପିଲାମାନେ ପୁଣି ଏ ସ୍କୁଲକୁ ଯେପରି ଫେରି ଆସିବେ, ସେପରି ଏହାକୁ ଉପଯୁକ୍ତ କରି ଗଢ଼ିବା । ମୁଁ ସବୁବେଳେ ଭାବୁଛି, ଅନେକଙ୍କ ପାଇଁ ଲଜ୍ଜାକର ବିଷୟ ହେଉଛି, ଗୋରା ପିଲାମାନଙ୍କୁ ତାଙ୍କ ନିଜର ପାଖ ସ୍କୁଲରୁ ତଡ଼ି ଦେବା, ଆଉ ଦୂରକୁ ଯାଇ ଅନ୍ୟ କୌଣସି ସ୍କୁଲରେ ପଢ଼ିବା ପାଇଁ ତାଙ୍କୁ ବିଭିନ୍ନ ଯାତାୟାତ ସମସ୍ୟାରେ ହଇରାଣ କରିବା ।

ଫର୍ଣହିଲ୍ ସ୍କୁଲକୁ ଶୀତଦିନିଆ ପୋଷାକ ଦେବାକୁ ବି ମନା କରିଦେବା ଦିନ ଠାରୁ ମୁଁ ଘାବରେଇ ଯାଉଥିଲି । ମୁଁ ଭଲପାଏ କାମ କରିବାକୁ, ଆଗେଇ ଚାଲିବାକୁ । କିନ୍ତୁ ମନା କରିବାକୁ ଓ ଡେରି କରିବାକୁ ନୁହେଁ । ମୁଁ ସେତେବେଳେ ଅଚଳ ହୋଇଯାଇଥିଲି ଏବଂ କଣ କରିବି ଭାବି ପାରୁ ନଥିଲି । କେବଳ ଏଇଥିପାଇଁ ମୁଁ କିପରି ଏକ ନିଷ୍କ୍ରିୟତା ଅନୁଭବ କରୁଥିଲି ଏବଂ କିଛି କରି ପାରୁନଥିଲି । ଏ ସମୟରେ କିମିତି କ'ଣ ଘଟିଲା କେଜାଣି, ଆଶ୍ଚର୍ଯ୍ୟ ଧରଣର ନୂଆ ମାଟିଆ ଶୀତଦିନିଆ ପୋଷାକ ସ୍କୁଲରେ ଦେଖାଦେବା ଆରମ୍ଭ ହେଲା । ସତେ ଯେମିତି ସରଗରୁ ସବୁ ଓହ୍ଲେଇ ଆସିଲା ।

''ତୁମେ ସେଇଟା କେଉଁଠୁ ପାଇଲ ?''

''ମୋ ମାଉସୀର ଝିଆରୀ ତିଆରି କରିଦେଲା ।''

''ତୁମେ ଏ ଖେଳ ପୋଷାକ (ୟୁନିଫର୍ମ) କେଉଁଠୁ ପାଇଲ, ମାରିଆନ୍ ?''

''ମୋ ଜେଜେ ଏଇଟାର ସିଲେଇ ଗତକାଲି ରାତିରେ ଶେଷ କଲେ ।''

''ଡେଲା, ତୁମେ ତ ସୁନ୍ଦର ମାଟିଆ ପୋଷାକଟିଏ ପିନ୍ଧି ଆସିଛ ଦେଖୁଛି ?''

''ଶ୍ରୀମତୀ ହେନ୍'ସନ୍, ମୋ ମାଆ ନାପିଏର୍‌ରୁ ମୋ ପାଇଁ କିଣି ଆଣିଛନ୍ତି ।''

ତା' ଆରଦିନ ସକାଳେ ମୋ ଦୁଆରରେ କିଏ ଜଣେ ଡାକିଲେ । କବାଟ ଖୋଲି ଦେଖିଲି, ଲିଲି ଗୋଟେ ବଡ଼ ପାର୍ଶଲ୍ (ଗଣ୍ଠିଲି) ଧରି ଆସିଛି । ''ଏଗୁଡ଼ିକ ଆମର ସ୍କୁଲର ଖେଳ ପୋଷାକ, ଶ୍ରୀମତୀ ହେଣ୍ଡର୍‌ସନ୍ । ନାପିଏର୍‌ରୁ ମୋ ମାଉସୀ ଆଣି ଦେଇଛନ୍ତି । ମୋର, ଆମିରିଆର ଆଉ ରେରେମୋଆନାର । ସେ କହିଛନ୍ତି, ପୋଷାକର ଲମ୍ବ ଚଉଡ଼ା ଠିକ ଅଛି କି ନାହିଁ, ଦେଖିବେ ।'' ଏମିତି ସବୁ ।

''ବିଶ୍ୱାସ କରନ୍ତୁ ବା, ନ କରନ୍ତୁ ସମୟ ବଡ଼ ବଳବାନ'' ବାହାରେ ସହକର୍ମୀମାନଙ୍କ ସହିତ ଚା' ଖାଇଲାବେଳେ ମୁଁ କହିଲି । କାରଣ ଆମର କର୍ମଚାରୀଙ୍କ ପାଇଁ ବୈଠକ ଘର ନଥିଲା ।

''ଶ୍ରୀମତୀ ହେଣ୍ଡର୍‌ସନ୍, ଆଜି ଉପରବେଳା ଇରିନି ଆସି ପାରିବ ନାହିଁ ।''

‘‘କାହିଁକି ଲୋଟାସ୍ ?’’

‘‘ସିଏ ତ ହସ୍ପିଟାଲ୍‌ରେ ।’’

‘‘କ’ଣ ହେଇଚି ମୋର ଇରିନି କି ,?’’

‘‘ଇରିନିକୁ ଲରେନ୍‌ସ ସାଇକେଲରେ ବସେଇ ଘରକୁ ଫେରୁଥିଲା । ହଠାତ୍ ଭିକ୍ଟୋରିଆ ସାଥିରେ ଧକ୍‌କା ଲାଗିଲା । ଇରିନି ପଡ଼ିଲା, ଆଉ ତା’ ଉପରେ ଲରେନ୍ସ । ଇରିନିର ମୁହଁରେ ଦୁଇଟା ସ୍ଥାନରେ କଣା ହୋଇଯାଇଛି ।’’

‘‘କେତେବେଳେ ଏଇଟା ଘଟିଲା ?’’

‘‘ରାତିରେ, ଖାଇବା ସମୟ ବେଳକୁ । ତା’ ପରେ ଇରିନିର ମାଆ ଟାକ୍ସିରେ ତାକୁ ହସ୍ପିଟାଲକୁ ନେଇଗଲେ ।’’

‘‘ଆସନ୍ତା ରବିବାର ଦିନ ଆମକୁ ସେଇ ହସ୍ପିଟାଲକୁ ଯିବାକୁ ପଡ଼ିବ ।’’ ମୁଁ ଆଜି କେ-କୁ କହିଲି । ‘‘ଏବେ ତ ଆମର ଅନେକ ପରିଚିତ ଲୋକ ସେଇଠି ଅଛନ୍ତି ।’’

‘‘ଶୁକ୍ରବାର ଦିନ ତା’ର ଅସ୍ତ୍ରୋପଚାର ହୋଇଥିଲା ।’’

‘‘ହେ ଭଗବାନ !’’

‘‘ପନ୍ଦର ଦିନ ତଳେ ଡସ୍କିର ଭୀଷଣ ଛାତି ପୀଡ଼ା ହୋଇଥିଲା । ସେଥିପାଇଁ ସେ ସେଠାରେ ବିଶ୍ରାମ ନେଉଛି ଏବଂ ପଥିରେ ଅଛି ।’’

‘‘ହେ ପ୍ରଭୁ ! ମୁଁ ଜମା ଜାଣିପାରିଲି ନାହିଁ ।’’

‘‘ପ୍ରକୃତରେ ଆମେ ରବିବାର ଦିନ ନିଶ୍ଚୟ ଯିବା ଦରକାର ।’’ ମୁଁ ଯେତେବେଳେ ସେଠାକୁ ଯାଉଛି, ସେଠାରେ ଏ ଭିତରୁ ଦଳେ ଥିବା ଦେଖୁଛି । ସେମାନଙ୍କ ପାଇଁ କଣ ନେବି, ସେଇଟା ଗୋଟେ ସମସ୍ୟା । ଗତ ଥର ମୁଁ ସେମାନଙ୍କ ପାଇଁ ଟିକଟ୍ ଲଗେଇ ଲଫାପା ନେଇ ଯାଇଥିଲି ।



ଗଲାକାଲି ରାତିରେ ହେମିଂୱେ ସିନେମା ଦେଖିଲାବେଳେ ଭେ ରେପାରିତା (ଯାଆଁଳା

:ଆଙ୍କ ମାଆ)ଙ୍କୁ ଜଣେ ମାଓରି ଯୁବକଙ୍କ ସାଥିରେ ଦେଖିଥିଲି । ସେ ବେଶ୍ ସୁନ୍ଦର ପୋଷାକ ପିନ୍ଧିଥିଲେ । ଏଇଟା ବେଶି ଦିନର ନୁହେଁ ବୋଲି ମନେ ହେଲା ।

କେ-ଗାଆଁକୁ ଯାଇ ପ୍ରୋଜେକ୍ଟର୍‌ରେ ସିନେମା ଦେଖଉଛନ୍ତି । ଏଥିରେ ସନ୍ଧ୍ୟାରେ ସିନେମା ଦେଖାଇବା ଏହା ଫଳରେ ବଢ଼ି ଯାଇଛି । ସମସ୍ତେ ଦେଖିବାକୁ ଯାଉଛନ୍ତି । ନିଜର ପ୍ରୋଜେକ୍ଟର୍ ଏ ଦିଗରୁ ବହୁତ ଉପଯୋଗୀ ।

ଗତକାଲି ଉପରବେଳା ସାଢ଼େ ଦୁଇବେଳକୁ ମୁଁ ମୋର ଶିଶୁ ଶ୍ରେଣୀରେ ବ୍ୟସ୍ତ ଥିଲି; ପଢ଼ିବା ଓ ପଦ ଲେଖିବା ଚାଲିଥିଲା । ବାସ୍କେଟବଲ୍ 'ଗ' ଦଳ ପଡ଼ିଆରେ ମୋତେ ଅପେକ୍ଷା କରୁଥିଲେ । ଶିଶୁ ଶ୍ରେଣୀ ପାଖରେ କେତେଜଣ ଝିଅ ବୁଣେଇ ଓ ସିଲେଇ କରିବାରେ ଲାଗିଥିଲେ । ହୋରି ପିଆନୋ ବଜାଉ ଥିଲା । ଲୋଟସ୍ ତା'ର ନୂଆ ସ୍କୁଲ ପୋଷାକ ସିଲେଇ କରୁଥିଲା । ମେରେ ନୂଆ ଇସ୍ତ୍ରୀ ପେଢ଼ିରେ ବଡ଼ ଘରେ ବସି ତା' ସ୍କୁଲ ପୋଷାକ ଇସ୍ତ୍ରୀ କରୁଥିଲା । ବରିଷ୍ଠ ନିରୀକ୍ଷକ ମୋ ପାଇଁ ଆର ଭାଗରେ ଜଣେ ସହକାରୀ ପଠାଇବେ ବୋଲି କହିଥିବା ବିଷୟ ମନେ ପଡ଼ିଲା, ହସ ମାଡ଼ିଲା ।

'ପୁକୀ'ର ଘର ସଡ଼କର ଆରପଟେ । ଏକ ବଖରାର ଘର । ପରିବାରରେ ଆଠ ଜଣ, ମାଆ ବାପାଙ୍କୁ ମିଶେଇ ଦଶ । ଗୋଟିଏ ଶେଯରେ ଆଠ ଜଣଯାକ ପିଲା ଶୁଅନ୍ତି । ସ୍କୁଲକୁ ଆସିଲା ବେଳକୁ ମୁଣ୍ଡରେ ପାନିଆ ବାଜି ନ ଥାଏ, ମୁହଁ ବି ଧୋଇ ନ ଥାନ୍ତି । ମାଆ ବୋଧହୁଏ ସବୁ ଆଶା ଭରସା ହରେଇ ସାରିଲାଣି । ଆଉ, ବାପା ପ୍ରତି ଶନିବାର ସଂଜରେ ହପ୍ତାକର ମଜୁରି ମଦପିଆରେ ଉଡ଼େଇ ଦେଇ ଘରକୁ ଆସେ- ଠିକ୍ ସମୟରେ- ଖାଲି ଗୋଟେ ଭୟଙ୍କର ପିଟାପିଟି ଓ ଫିଙ୍ଗାଫିଙ୍ଗି ସହିତ ସ୍ତ୍ରୀ ସହ କଳି କରିବାକୁ । ଏମିତି ଗୋଟେ ସମୟରେ ଦିନେ ବେଶ୍ ହସଖୁସିରେ ମୁଁ ଆଉ କେ- ସହରକୁ ବୁଲି ଯାଉଥଲୁ । ପିଲେ ଭୟରେ ରଡ଼ି ଛାଡ଼ୁଥିଲେ ଆଉ ବିପଦରୁ ରକ୍ଷା ପାଇବାକୁ ପଦାକୁ ଧାଇଁ ଯାଇ ବାପା-ମାଆଙ୍କର ସେ ନାଟକ ଦେଖୁଥିଲେ । ସବୁଠାରୁ ଅଧିକ ଖରାପ ଲାଗୁଥିଲା- ଆଠଟିଯାକ ପିଲା କାନ୍ଦୁଥିଲେ । ଝାଡୁ ଆଉ ଘରକରଣା ଜିନିଷଗୁଡ଼ିକ ଫିଙ୍ଗାଫିଙ୍ଗିରେ କେବଳ ଉତ୍ତେଜନା ବଢ଼ାଉଥିଲା । ସେ ମହିଳାଟି ପାଇଁ ମୋର ଦୟା ହୁଏ । ମୋ ସାଥିରେ ଏ ବିଷୟ ଆଲୋଚନା କଲାବେଳେ ମୁଁ ଜେଜେ ମାଆଙ୍କୁ କହିଥିଲି, ''ମୁଁ ସେ ସ୍ତ୍ରୀ ଲୋକର ସପକ୍ଷରେ । ଭୁଲ ହେଉ କି ଠିକ୍ ହେଉ ! ମୁଁ ସବୁବେଳେ ମହିଳାମାନଙ୍କ ସପକ୍ଷରେ ।''

''ସେ ଅନ୍ୟ ମହିଳାମାନଙ୍କ ପାଖକୁ ଯାଏ । ମୋଆନା ସେଇଟାକୁ ଭଲ ପାଏ ନାହିଁ ।''

''ମୁଁ ତ କଦାପି ଏହାକୁ ପସନ୍ଦ କରିପାରନ୍ତି ନାହିଁ ।''

''ମୁଁ ମଧ୍ୟ ସେପରି ।''

ସବୁ ଶନିବାର ରାତିରେ ମୁଁ କେ-ଙ୍କୁ କହେ, ଏମିତି ଏକ ଶନିବାରରେ ସେଇଠି ଗୋଟେ ହତ୍ୟାକାଣ୍ଡ ଘଟିବ ।

ଗୋଟିଏ ମେଘୁଆ ଗୁରୁବାର । ବର୍ଷା ହେଉଥାଏ । ମୁଁ ଶିଶୁ ଶ୍ରେଣୀରେ ଥିବାବେଳେ ବେଶ୍ ଖୁସି ଥାଏ । ମୋତେ ବେଶି ଭଲ ଲାଗେ, ସେଠାରେ ଯାହା କିଛି ଆଶ୍ଚର୍ଯ୍ୟ ଘଟଣା ଘଟେ, କିଛି ଗୋଟେ ଆବିଷ୍କାର କଲାପରି ମୋତେ ଆନନ୍ଦ ମିଳେ । ଏବେ ସୁଦ୍ଧା ମୁଁ ଦୁଇଜଣ ଅତି ମେଧାବୀ ପିଲା ଠଉରେଇ ପାରିଛି: ରେରେମୋଆନା ଓ ଟେମ୍ ଟୁହି । ଦି'ଜଣଯାକ ମାଓରି ପିଲା, ତାଙ୍କଠାରେ ଗୋରା ରକ୍ତ ନାହିଁ । ମୁଁ ବରିଷ୍ଠ ନିରୀକ୍ଷକଙ୍କୁ କହିଲି, ''ମୁଁ ଚାହେଁ, ଆପଣ ରେରେମୋଆନା ଓ ଟେମ୍‌କୁ ଦେଖନ୍ତୁ । ମୋର ସାତ ବରଷର କାମ ଭିତରେ ଏଇ ଦୁଇ ଜଣଙ୍କୁ ମୁଁ ଗାରିମୁ ବୃତ୍ତି ପରୀକ୍ଷା ପାଇଁ ବାଛିଛି । ମୁଁ ସେତେବେଳକୁ ଏଠାରେ ନ ଥାଇପାରେ ।''

ପୋଲି ପିଆନୋ ଅଭ୍ୟାସ କରୁଥିଲା । ତା' ସ୍ୱରରେ ସତରେ ଏକ କରୁଣ ରାଗିଣୀର ମୂର୍ଚ୍ଛନା ଥିଲା । ତା'ର ନିଷ୍ଠା ଅଛି । ତା'ର ସଙ୍ଗୀତ ରକ୍ତ ମାଂସର ଦେହ ଅପେକ୍ଷା ମନ ଆଉ ପ୍ରାଣକୁ ଅଧିକ ଛୁଏଁ । ବିଖ୍ୟାତ ବେତାର କଳାକାର କାହୁ, ତା'ର ମାମୁଁ । ହେଲେ ପୋଲି ମୋର । ସେ ମରେର ଭଉଣୀ । ତା'ର ମାଆ ନାହାନ୍ତି । ମେରେ ମୋତେ କହିଥିଲା, ''ମାଆ' ରାନ୍ଧାରେ ମରିଗଲେ ।'' ଦୋକାନୀ କହିଥିଲା, ''ଓଃ, ଏ ପୋଲିର ମାଆ ? ସିଏ ତ ଏଇ ଶେଷ ପିଲାଙ୍କୁ ଜନ୍ମ ଦେଇ ମରିଗଲା ।'' ମୁଁ ମୋର ଏଇ ଦୁଇ ପିଲା ପୋଲି ଓ ମେରେକୁ ନେଇ ଗର୍ବ କରେ । ସେମାନେ ସୁନ୍ଦର । ତା' ଛଡ଼ା ତାଙ୍କ ଦେହରେ ତେଜ ଅଛି.... କିଛି ଗୋଟେ ଆକର୍ଷଣ କଲା ପରି..... ବ୍ୟକ୍ତିତ୍ୱ, କିମ୍ବା ସେପରି କିଛି ଅଧିକା ଗୁଣ ।

ତେବେ, ଗଲା କାଲି କେଜାଣି କାହିଁକି ମେରେ ଓ ଗୋରା ଛୁଆ ଜୁନେ ନାଲି ଚକ୍ ଘୋରି ମୁହଁରେ ବୋଳି ହୋଇଥିଲେ । ସେଇଟା ଗୋଟେ ବୁଧବାର । ବରଷା ହେଉ ଥାଏ । ମୋର କେତେ ଜଣ ବଡ଼ ପିଲା ବୁଣାବୁଣି କରୁଥିଲେ, ପୋଷାକ

ମିଳେଇ ଥିଲେ, ଆଉ ଅନ୍ୟମାନେ ଉତ୍ସବ ଦିନ ପାଇଁ ନାଚ ସହିତ ଗାଇବାକୁ ସବୁ ବାଜା (ବୃନ୍ଦ ବାଦ୍ୟ) ସହ ସ୍ୱର ମିଳେଇ ଅଭ୍ୟାସ କରୁଥିଲେ । ଶିଶୁ ଶ୍ରେଣୀର ଉପର ମୁଣ୍ଡରେ ଏ ସବୁ ହେଉଥିଲାବେଳେ ମୁଁ ଦେଖିଲି ନାଲି ମୁହଁ ଦେଖେଇ ହସି ହସି ଏ ଦୁହେଁ ଧାଇଁଛନ୍ତି । ବଡ଼ ଯତ୍ନରେ ମୁଁ ଧୈର୍ଯ୍ୟ ଅଭ୍ୟାସ କରିଥିଲି । ହେଲେ, ଏଇଟା ଦେଖି ମୋର ଯେପରି ଧୈର୍ଯ୍ୟ ଭାଙ୍ଗିଗଲା । ମୁଁ କହିଲି, ''ଆଗ ମୁହଁ ଧୁଅ, ତା' ପରେ ତୁମକୁ ମୋର କହିବାର ଅଛି ।''

ମେରେ ମୋ କଥାକୁ ବଡ଼ ସହଜରେ ଉଡ଼େଇ ଦେଲା । ମୋର କଡ଼ା କଥାକୁ ଆଦେଶ ରୂପରେ ସେ ଯେପରି ନେଇନି, ସେପରି ଏଡ଼ି ଦେଲା । କିନ୍ତୁ ଗୋରା ଝିଅ ଜୁନେ କଡ଼ା କଥାକୁ ସହି ପାରିଲା ନାହିଁ । ସେ ଦୁଃଖରେ ଫାଟି ପଡ଼ିଲା, ରଡ଼ି ଛାଡ଼ି କାନ୍ଦି ଉଠିଲା, ଆଶ୍ଚର୍ଯ୍ୟ ହୋଇ ମୁଁ କହିଲି ''କାନ୍ଦ ନାଇଁ, ମୁଁ ତୁମକୁ ଗାଳି ଦେବି ନାହିଁ ।'' ମୁଁ ତାକୁ ବୁଝେଇବାକୁ ଚେଷ୍ଟା କଲି । ସେ କିନ୍ତୁ ଅନେକ ବାଟ ଆଗେଇ ଯାଇଥିଲା । ଧକେଇ ଧକେଇ ସେ କହିଲା, ''ମତେ ଗାଳି ଦିଅନ୍ତୁ ନାହିଁ ।''ପାଖକୁ ଲାଗି ଆସିଲା । ଏ ପରିସ୍ଥିତିରେ କେବଳ ଗୋଟିଏ କାମ କରାଯାଇପାରେ । ମୁଁ ତା'କୁ କୋଳକୁ ଉଠାଇ ଆଣିଲି, ତା' ଲୁହ ପୋଛିଦେଲି । ଖୁବ୍ ଶୀଘ୍ର ସେ ଶାନ୍ତ ହୋଇଗଲା । କିନ୍ତୁ ଦି' ତିନି ଜଣ ଛାତ୍ରୀ ହସି ଉଠିଲେ । ''ହସ ନାହିଁ ।'' ମୁଁ ବୁଝେଇଲି ''ସଦୟ ହୁଅ ।''

ଜୁନେ ପାଇଁ ମୋର ଟିକେ ଅଧିକ ଦରଦ ଥିଲା । ଶିଶୁ ଶ୍ରେଣୀରେ ତା'ର ସାଥି ହେବାକୁ ଆଉ କେହି ଗୋରା ଝିଅ ନ ଥିଲେ । ତେଣୁ ମୁଁ ହିଁ ତା'ର ସାଥି ଥିଲି । ଦୁହେଁ ମିଶି ସାଙ୍ଗ ହୋଇ ପେନ୍‌ସିଲ୍ , ରବର୍, କଳାପଟା ଆଦି ବ୍ୟବହାର କରୁଁ । ଆଉ ମୋତେ ଦିନକୁ ତା' ଦଶହଜାର ପ୍ରଶ୍ନ ଆଉ ପର୍ଯ୍ୟବେକ୍ଷଣର ଉତ୍ତର ଦେବାକୁ ପଡ଼େ ।

ଉପସଂହାର : ସେ ରାତିରେ ସକାଳ ଚାରିଟା ବାଜିଲା ଯାଏଁ ମୁଁ ଶୋଇ ପାରିଲି ନାହିଁ । ସେଇ ଜୁନେ ଘଟଣା ମୋ ମନକୁ ଘାରିଥିଲା ।

ଓ୍ୱାଇଓ୍ୱିନି ହେଉଛି ବାର୍ତ୍ତା ପ୍ରସାରର ରାଣୀ । ସେ ଏ ବର୍ଷର ପିଆନୋ ବଜାଳୀ । ତା' ସ୍ୱଭାବ ଯେପରି,ତା' ଅଙ୍ଗୁଳିଗୁଡ଼ିକ ସେପରି ଚଞ୍ଚଳ ଓ ନିପୁଣ । ସେ ପିଆନୋ ବଜାଇଲେ ମୁଁ ମୁଗ୍ଧ ହୋଇପଡ଼େ । ଛଅ ବର୍ଷର ଝିଅ । ହେଲେ ଏଇ ତିନୋଟି

ଗୁଣବନ୍ତ ମାଓରି ଝିଅଙ୍କର ଭଲା କି ଭବିଷ୍ୟତ ଅଛି !! ରେରେମୋଆନା, ଟାମେ ଆଉ ଓ୍ୱାଇଓ୍ୱିନି ? କୌଣସି ପ୍ରକାରେ ବି କ'ଣ ସଫଳତା ମିଳିବ ? ସେମାନେ ସଫଳତା ପାଇଁ ଗୋରାଙ୍କ ପରି କ'ଣ ସଂଘର୍ଷ କରିବେ ? ବରଂ ସେଥିରୁ ମୁକ୍ତ ହେଲେ ଭଲ ହୁଅନ୍ତା । ତାଙ୍କ ମେଧା ଓ ନିପୁଣତା ତାଙ୍କର କର୍ମନିଷ୍ଠା ଓ ଲୋକ ସଂପର୍କକୁ ଉନ୍ନତ କରୁ, ମାର୍ଜିତ କରୁ । ସେମାନଙ୍କ କଥାଭାଷା, ଦୁଆର ମୁହଁରେ ବସିବା ଆଉ ଭଲ ପାଇବା ଆଉ କଳି କରିବା...

ଶ୍ରୀମତୀ କଟର୍ ଗୋରା ଛାତ୍ର ମାର୍କ୍‌ର ମାଆ । ସେ ମୋ ପାଖକୁ ଫୁଲତୋଡ଼ା ପଠାଇଛନ୍ତି । ସଫଳତା ପାଇଁ ଅଭିନନ୍ଦନ ।

ଏ ସପ୍ତାହର ଉନ୍ମାଦନା :

ବୃନ୍ଦ ବାଦ୍ୟରେ ମିଶି ମୋର ମାଓରି ପିଲା ଦଳ ପିଆନୋ ବଜାଉଛନ୍ତି । ଏହା ପ୍ରକୃତରେ ଏ ବର୍ଷର ଏକ ବିରାଟ ଉନ୍ମାଦନା ଏବେ ମୁଁ ପିଆନୋ ବଜାଇବାରୁ ମୁକ୍ତ; ଏଣିକି ବାହାରେ ବସି ଉପଦେଶ ଦେଇ ପାରିବି । ଏଥିରେ କେତେ ଅଲଗା ଆନନ୍ଦ ଭରିରହିଛି ।

ସାରା ଦିନ ମୁଁ ମୋ ପିଲାମାନଙ୍କ ସହିତ କଥା ହୁଏ । ସେମାନଙ୍କର ହଜାର ହଜାର ପ୍ରଶ୍ନର ଉତ୍ତର ଦିଏ । ମୁଖ୍ୟତଃ ସେମାନେ ନିଜକୁ ନିଜେ ଶିକ୍ଷା ଦିଅନ୍ତି । ଅଧିକନ୍ତୁ ମୁଁ ଭାବୁଛି, ତାଙ୍କ ସହିତ ମୋର କଥାଭାଷା ହିଁ ଅସଲି କଥା । ତା' ଫଳରେ ନିଜେ ଉଚ୍ଚ ଧରଣର ଲେଖା ମୁଁ ପାଇ ପାରିଛି ।

ତେବେ, ସତ କହିବାକୁ ଗଲେ ମୋର ଏ ବୟସରେ ଏତେ ହୋ-ହଲ୍ଲା ଅନେକ ସମୟରେ ମୋତେ ଅସହ୍ୟ ବୋଧ ହୁଏ । ହେଲେ ଇଏ ତ ମୋର ଶୃଙ୍ଖଳାର ତାଆ-ବିକଳ୍ପ । ଏଥିରେ ସତ ଶୃଙ୍ଖଳା ତ ରହିଛି । ସେଇଟା ହେଉଛି ଅନ୍ତରର-ମଣିଷ ପ୍ରବୃତ୍ତିର ସ୍ୱଭାବ । ବାହାରୁ ଲଦି ଦେବା ଶାସନର ଶୃଙ୍ଖଳାଠାରୁ ଭିନ୍ନ । ନିଜକୁ ଗଢ଼ି ନିଏ ଏଇ ନିଜ ଭିତରର ଶୃଙ୍ଖଳା ।

କିନ୍ତୁ ଆଃ, ଜୀବନଟା ସତରେ କେଡ଼େ ଛୋଟ । ମୋର କାମନା, ମୁଁ ଯେପରି ଏକ ପ୍ରକୃତ ଶିଶୁଶାଳା ଚଳେଇବା ପାଇଁ ଶକ୍ତି ଓ ସାହସ ପାଆନ୍ତି । ଅଜାଣତରେ ପିଲାଙ୍କର ଭିତରଟା ବାହାରକୁ ଫୁଟି ଉଠନ୍ତା । ଅବଚେତନ ମନର ଅସଲି ରୂପ, ଦେହ ଆଉ ମନର କାର୍ଯ୍ୟକଳାପରେ ପ୍ରକାଶ ଥାଆନ୍ତା । ବିଚିତ୍ର ଭାବରେ ପିଲାଙ୍କ

ଭାବଭଙ୍ଗୀ ରଚନାତ୍ମକ ଢାଞ୍ଚାରେ ଗଢ଼ି ଉଠନ୍ତା । ଏ ବୟସଟିକୁ ମୁଁ ଏପରି ଭାବରେ ବ୍ୟବହାର କରି ନ ପାରିଲେ, ନବେ ବର୍ଷ ବୟସରେ ଆରାମ ଚୌକୀରେ ବସି ଅତୀତକୁ ମନେ ପକାଉବାବେଳେ ମୁଁ ନିଜକୁ ତ କଦାପି କ୍ଷମା ଦେଇ ପାରିବି ନାହିଁ । ବୁଢ଼ା ବୟସର ପଶ୍ଚାତାପ କେଡ଼େ ଦୁଃଖ-ଦାୟକ, ଟିକିଏ ଭାବନ୍ତୁ ତ ଭଲା । ସେତେବେଳେ ନିଜ ଅତୀତର ସମୀକ୍ଷା କଲାବେଳେ ସାହସ ଥିଲେ ହେଲା ।

ଆଜି ରାତିରେ କାହୁର ଜନ୍ମଦିନ ଉତ୍ସବ । ହେଲେ ମୁଁ ଯିବିନି । ଢୁନେ ଘଟଣା ଯୋଗୁଁ ମୋର ଗତ ରାତିର ଅନିଦ୍ରା ମୋତେ ଦୁର୍ବଳ କରି ଦେଇଛି ।

ଆଜି ଗୁରୁବାର, ମୁଷଳ ଧାରାର ବର୍ଷା ଲାଗିରହିଛି । ଖାଲି ବର୍ଷା ....ବର୍ଷା...

ମୋର ସାତ ବର୍ଷର ଜାଆଁଳା ଛାତ୍ରୀ ଦି' ଜଣ ଆଜି ରାତିରେ ହେଷ୍ଟିଂସ୍ ସଭା ଘରେ କାହୁର ଜନ୍ମଦିନ ସମାବେଶରେ ଗୀତ ଯାଉଛନ୍ତି । ସେମାନେ ଆଗରୁ ରେଡ଼ିଓରେ ଗାଇ ସାରିଛନ୍ତି ଏବଂ ଖବର କାଗଜରେ ମଧ୍ୟ ସେ ବିଷୟ ପ୍ରକାଶ ପାଇଛି । ସେମାନେ ବେଶ୍ ସୁନାମ ଅର୍ଜନ କରି ଚାଲିଛନ୍ତି । ଆଜି ସକାଳେ କ'ଣ ସେମାନେ ଗାଇବାକୁ ଯାଉଛନ୍ତି ବୋଲି ପଚାରିବାରୁ, ସେମାନେ ସଙ୍ଗେ ସଙ୍ଗେ ତାଙ୍କର ୟୁକୁଲେଲେ ସବୁ(ଗୋଟେ ଆଦିବାସୀ ଏକତାର ବାଜା) ବଜେଇ ଗୀତ ଗାଇ ଉଠିଲେ । ତାଙ୍କ ଗୀତରେ ମୁଁ ମଧ ସ୍ତବ୍ଧ ହୋଇଗଲି । ଯଦିଓ ମୁଁ ଏଇ ଆଦିବାସୀଙ୍କର ଏ ପ୍ରତିଭା ସହିତ ଭଲ ଭାବେ ପରିଚିତ ତଥାପି ମୁଁ ବିହ୍ୱଳ ହୋଇ ଉଠିଲି ।

ଆଦିବାସୀ ଗାଆଁ ('ପା') ର ରକ୍ତରେ ଯେମିତି ସଙ୍ଗୀତ ଭରି ରହିଛି । ଆଲୋଚନା ି କଲେ ଜଣାଯିବ ଯେ ସେଥିରେ ସେପରି କିଛି ରଚନାତ୍ମକ ଭାବ ନାହିଁ । କିଛି ଗଢ଼ିବା ପାଇଁ ପ୍ରେରଣା ନାହିଁ । ଏପରିକି ମୂଲ୍ୟବାନ ସଭା-ଘର ମଧ ଓ୍ୱାଇରୋଆର ଅନୁକରଣରେ ଗଢ଼ା । ସେମାନଙ୍କ ଘନିଷ୍ଠତା ତାଙ୍କ ସାମାଜିକ ମିଳନରେ ଗପସପ କରିବା, ସାଥି ହୋଇ ବସିବା, ଗୀତ ଗାଇବା, ନାଚିବା, ମଦ ପିଇବା ଏବଂ ପ୍ରେମ କରିବା-ସତରେ, ଏ ସବୁଥିରେ ସେମାନଙ୍କ ଦକ୍ଷତାକୁ କମ୍ କରି ମାପିବା ସମ୍ଭବପର ନୁହେଁ । ତାଙ୍କର ଏ ସବୁଥିରେ ଆବେଗ ବଳ ନଥାଏ ।

ଟିପ୍ପଣୀ : ଦୁଷ୍ଟାମୀ ପାଇଁ ତ ସେମାନେ ବେଶ୍ ପରିଚିତ । ଏଇଟା ବୋଧହୁଏ ସେମାନଙ୍କର ସ୍ଥାନ ବଦଳାଇବା ଯୋଗୁଁ ବଢ଼ିଛି ।

# ଛୁଟି ପରେ : ଏକ ଟିପ୍ପଣୀ

ଛୁଟିରେ ସ୍କୁଲ ବନ୍ଦ ହେବା ପୂର୍ବରୁ ଶୁକ୍ରବାର ଦିନ ଦି'ଜଣ ଗୋଇନ୍ଦା ମୋ ସ୍କୁଲକୁ ଆସିଥିଲେ । ସେମାନେ ମୋର ତିନି ଜଣ ଜଙ୍ଗଲି ଛାତ୍ରଙ୍କୁ ପଚରା ଉଚରା କରିଥିଲେ । ଅଭିଯୋଗଟି ହେଲା, ସେମାନେ ପୋଲ ଆରପଟେ ଥିବା ଆଇସ୍‌କ୍ରିମ୍ ଦୋକାନରୁ ଅଲଗା ଅଲଗା ସମୟରେ ପ୍ରାୟ କୋଡ଼ିଏ ପାଉଣ୍ଡ ଆଇସ୍‌କ୍ରିମ୍ ଚୋରି କରିଛନ୍ତି । ସନ୍ଦେହ କରାଯାଉଥିବା ଜଣେ ପିଲାର ଭାଇକୁ ଗୋଇନ୍ଦା ଜଣକ ପଚାରିଲେ, "ଟେଡ୍, ତୁମେ ଏବେ ନିକଟରେ କିଛି ଚକୋଲେଟ୍ ଖାଇଛ ? ଆଉ ଚୁଇଂଗମ୍ ?"

"ନାଁ", ଦୋଷ କରିଥିଲା ପରି ସେ ଉତ୍ତର ଦେଲା ।

"କ'ଣ ? ତୁମେ କିଛି ପାଇନ ?"

"ମୋତେ ଅଳପ ମିଳିଥିଲା । ସେମାନେ ସବୁ ନିଜେ ନେଇଗଲେ ।" ଏଇପରି ଦଶଟା ଖଣ୍ଡେ ପଦ ଭିତରେ ସବୁ କିଛି ପଚରା ଉଚରା ସରିଲା ।

ଏଇ ଯାଞ୍ଚ ଚାଲିଥିଲାବେଳେ ସ୍କୁଲ ପାଇଁ ଆମେ କାହିଁକି ଗାଧୁଆ ଘର ଓ ଲୁଗାଧୁଆ ଘର ସକାଶେ ଲେଖୁଛୁ ବୋଲି ବୁଝିବାକୁ ସ୍ୱାସ୍ଥ୍ୟ ନିରୀକ୍ଷକ ଆସିଗଲେ । ସେ ଫାଟକ ପାଖରେ ପହଞ୍ଚି ଦେଖିଲେ ମଲା ବିରାଡ଼ିଟିଏ ସେଇଠି ମରି ପଡ଼ିଛି । ସେ ତାର ଲାଞ୍ଜଟିକୁ ଧରି ଭିତରକୁ ବୋହି ଆଣିଲେ ।

ଖବରକାଗଜରେ ଆମ ବିରୁଦ୍ଧରେ ପୋଲିସ କୋର୍ଟର ଯାହା ସବୁ ଅଭିଯୋଗ ପ୍ରକାଶ ପାଉଥିଲା, ସେ ସବୁ ପଢ଼ିବା ମୋ ପକ୍ଷେ ବେଶ୍ ମଉଜିଆ ଥିଲା । ମୁଁ ଏଇଠି ଏଇ ସ୍କୁଲଟିକୁ ସମାଜରେ ପ୍ରତିଷ୍ଠିତ କରିବାକୁ ନିଷ୍ଠାପର ଭାବେ କାମ କରିଚାଲିଛି, ବହିପତ୍ରର ସବୁ ଉଚ୍ଚ ନୀତି ଓ ଗବେଷଣାର ଫଳକୁ କାର୍ଯ୍ୟରେ ଦେଖାଇ ଚାଲିଛି । ଅଥଚ ଅନ୍ୟ ଦିଗରେ ପୋଲିସ୍ ସବୁବେଳେ ଖବରକାଗଜର ତଳ ଭାଗରେ ଛୋଟ ଅକ୍ଷରରେ କିଛି ନା କିଛି ଅଭିଯୋଗ କିମ୍ବା ବିରୋଧ କଲାପରି ଲେଖା ପ୍ରକାଶ କରୁଛି । ଭଙ୍ଗାରୁଜା, ବେଆଇନ ପ୍ରବେଶ ଅଥବା ଚୋରି କିମ୍ବା 'ପାଇ'ର ବାପାଙ୍କ କଥା ସେଥିରେ ବାହାରେ । 'ପାଇ'ର ବାପା କୁଆଡ଼େ କହିଥିଲେ, ତାଙ୍କ ପିଲାଙ୍କୁ ଯେତେ କଠୋର ଭାବେ ମାଡ଼ଦେଲେ ବି ସେ ସ୍କୁଲକୁ ଯିବ ନାହିଁ । ଏପରି ଭାବଧାରା ବୁଲେଇ ବଙ୍କେଇ ପ୍ରକାଶ ପାଏ । ଆଉ ଏସବୁ ପଢ଼ି ମୁଁ ହସି ଉଠେ । ମୋତେ ମଜା

ଲାଗେ; ହେଲେ ମୋ ପରି ଆଉ କାହାକୁ ମଧ୍ୟ ଏମିତି ମଜା ମିଳୁଥିବ କି ନାହିଁ ବୋଲି ଭାବେ ।

ମେ' ମାସ ଛୁଟି ପରେ ଆଜି ସ୍କୁଲରେ ପହଞ୍ଚି ମୁଁ ତାଟକା ହୋଇଗଲି । ମୁଁ ଏକ ଚମତ୍କାରିତା ଦେଖିବାକୁ ପାଇଲି । ଅନେକ ପିଲା ଅତି ସୁନ୍ଦର ଶୀତଦିନିଆ ମାଟିଆ ୟୁନିଫର୍ମ୍ ପିନ୍ଧିଥାନ୍ତି । କେତେ ଜଣ ତ ପୋଷାକରେ ମୁଣି ମଧ୍ୟ ସିଲେଇ କରି ସାରିଛନ୍ତି । ବେଶ୍ ଚମତ୍କାର । ମୁଁ ତ ନିତିଦିନିଆ ଜୀବନରେ ସବୁବେଳେ ଏଇ ଅଦ୍ଭୁତ ଘଟଣା ବା ଚମତ୍କାରିତାକୁ ଅନୁଭବ କରି ଆସିଛି ଓ ଏସବୁକୁ ସମ୍ଭବ ବୋଲି ମାନିଛି । ଏବେ ତ ନିୟମିତ ଭାବେ ମୁଁ ଏହା ଦେଖି ଆସୁଛି । କେବଳ ଶ୍ରୀଯୁକ୍ତ ବି. ଯଦି ଏହା ଦେଖି ପାରନ୍ତେ ! କୁଆଡୁ କିମିତି ଆସି ଏ ପୋଷାକ ଏଇଠି ଜମି ଯାଇଛି- ନାପିଏରରୁ ଆରମ୍ଭ କରି ସୁଦୂର ୱେଲିଂଟନ୍‌ରୁ ମଧ୍ୟ ।

ଏହାଛଡ଼ା ମନେହେଲା ଯେମିତି ନିଯୁକ୍ତି ନିୟମର କୋହଳ କାର୍ଯ୍ୟକାରିତା ମୋ ଶ୍ରେଣୀର ଦୁଆର ମୁହଁରେ ଠିଆ ହୋଇଛି- ମୋ ସହକାରୀ ଭାବେ ଜଣେ ବ୍ୟକ୍ତି ! ଏକ ସ୍ୱତନ୍ତ୍ର ଅନୁଦାନ ନିଷ୍ଚୟ ! ତେବେ ଏଇଟା କଳ୍ପନା ପ୍ରବଣତା । କିନ୍ତୁ କଳ୍ପନାର ବିଳାସ-ଲୀଳା ମଧ୍ୟ ଆଇନ-କାନୁନ୍‌ର ସୀମା ନଟପି କିମ୍ୱା କୁଆଡୁ କେମିତି ବାଟ ନ କଢ଼େଇ କାର୍ଯ୍ୟକାରୀ ହେବ କିପରି ?

କି ସୁନ୍ଦର ଓ ଆନନ୍ଦଭରା ଆଜିର ଦିନ ! ବହୁତ କିଛି ଉନ୍ନତ, ବହୁତ କିଛି ସ୍ୱାଚ୍ଛନ୍ଦ୍ୟ, ଆଜି ଭରି ଯାଇଛି ।

ଫର୍ଣ୍ହିଲ୍ ସ୍କୁଲ, ମେ, ୨୨

*ବିଷୟ : ଫର୍ଣହିଲ୍‌ର ସ୍କୁଲ ୟୁନିଫର୍ମ*

ପ୍ରିୟ ଶ୍ରୀ ବି.,

ମାସେ ଖଣ୍ଡେ ତଳେ, ଆପଣ ମୋତେ କହିଥିଲେ ଯେ ଆପଣଙ୍କ ସଂସ୍ଥା ଆମ ସ୍କୁଲ ପାଇଁ ଗାଢ଼ ମାଟିଆ ରଙ୍ଗର ୟୁନିଫର୍ମ ଯୋଗାଇ ପାରିବ ନାହିଁ । ଅସ୍ଥାୟୀ ଭାବରେ ହେଲେ ହେଁ ଏଇ ପତ୍ରାଳାପରେ ମୁଁ ସବୁ ଆଶା ହରେଇ ବସିଥିଲି । କିନ୍ତୁ ସେ ଦିନଠାରୁ ଏ ଭିତରେ ମୁଁ ମୋ ସ୍କୁଲର ଅନେକ ପିଲା ସେ ୟୁନିଫର୍ମ୍ ପିନ୍ଧିଥିବାର ଦେଖୁଛି ଏବଂ ଜାଣିପାରିଛି ଯେ, ସେ ସବୁ ନାପିଏରରୁ ୱେଲିଂଟନ ଯାଏଁ ରହିଥିବା ଦୋକାନରେ ମିଳୁଛି । ତେଣୁ ମୁଁ ଏଥିରେ ଆଗ୍ରହୀ ଓ ଆଶାବାଦୀ ହୋଇ ଉଠିଛି ।

ମାଓରିମାନଙ୍କ ବିଷୟ ଆପଣ ନିଶ୍ଚୟ ଜାଣିଥିବେ । ଅନ୍ତତଃ ମୁଁ ଭଲ ଭାବେ ଜାଣେ । ଆପଣ ମନେ ପକେଇ ପାରୁଥିବେ ଯେ, ମାଓରିମାନେ ପୋଷାକପ୍ରିୟ, ବିଶେଷତଃ ୟୁନିଫର୍ମ । ଆପଣ ବୁଝି ପାରୁଥିବେ, ଭାବିଚିନ୍ତି ଠିକ୍ କରାଯାଇଥିବା ଭଲ ୟୁନିଫର୍ମ, ଛାତ୍ରଛାତ୍ରୀମାନଙ୍କ ସ୍ୱଭାବ ଓ ଚଳଣି ଉପରେ ଭଲ ପ୍ରଭାବ ପକାଇଥାଏ । ବାଳିକାମାନଙ୍କ ଦିଗରୁ ବିଚାର କଲେ ଲଜ୍ଜିତ ହେବା ପାଇଁ ସେପରି କିଛି କାରଣ ନାହିଁ । କିନ୍ତୁ ସମସ୍ତେ ଜାଣନ୍ତି ଆମ ଭିତରେ କେତେଜଣ ଦୁର୍ଦ୍ଦାନ୍ତ ବାଳକ ଅଛନ୍ତି । ସେ ଦିଗରୁ ଭଲ ଭାବେ ଭାବିଚିନ୍ତି ୟୁନିଫର୍ମ ଠିକ୍ କରିବାକୁ ହୁଏ । କାରଣ: ଚେହେରା ଯାହାହେଲେ ବି ୟୁନିଫର୍ମ ପିଲା ଉପରେ ଗଭୀର ପ୍ରଭାବ ପକାଏ ।

ବାଳକମାନଙ୍କ ୟୁନିଫର୍ମର ଢାଞ୍ଚା ଓ ରଙ୍ଗ ବିଷୟରେ ଆମେ ଆଲୋଚନା କରିଥିଲେ । ଆପଣ ଦୟା କରି ଆପଣଙ୍କ ଚେଷ୍ଟା ବଜାୟ ରଖି ସେଇ ୟୁନିଫର୍ମ ଯୋଗାଇଦେବାର ବ୍ୟବସ୍ଥା କରିବେ କି ? ମୋ ପାଖକୁ ଟ୍ରାଉଜର ସାର୍ଟ ଓ ବ୍ଲେଜର୍‌ର ନମୁନା ପଠାଇ ପାରିବେ ?

ଏହାଛଡ଼ା ବାଳିକାମାନଙ୍କ ଖରାଦିନିଆ ପୋଷାକ ପାଇଁ ଉପଯୁକ୍ତ ମାଟିଆ ରଙ୍ଗର କନା ଉପରେ ଆଖି ରଖିଛନ୍ତି ତ ?

ଗଲା ଦିନଗୁଡ଼ିକରେ ଆପଣଙ୍କ ସାହାଯ୍ୟ ଓ ଶିଷ୍ଟାଚାର ପାଇଁ ଧନ୍ୟବାଦ ଜଣାଉଛି । ଏଇସବୁ ପୋଷାକ ଯୋଗାଇବାରେ ଆପଣଙ୍କ ଅସୁବିଧା ମୁଁ ଭଲ ଭାବେ ପୂରା ବୁଝି ପାରୁଛି ।

ଆପଣଙ୍କ ବିଶ୍ୱସ୍ତ,

(ଶ୍ରୀମତୀ) ଏସ୍. ହେଣ୍ଡେରସନ୍

ସେ ଦିନ ବରିଷ୍ଠ ନିରୀକ୍ଷକ ଶ୍ରୀଯୁକ୍ତ ଟ୍ରେମେଇନ୍ ଆମ ସ୍କୁଲରେ ପହଞ୍ଚିଲେ । ତାଙ୍କୁ ଦେଖି ମୁଁ ବେଶ୍ ଉତ୍ସାହିତ ହୋଇ ଉଠିଲି । ଭାରି ଖୁସି ଲାଗିଲା । ସେ ଜଣେ ସହାନୁଭୂତିଶୀଳ ମଣିଷ । ସେଇ ଦୁର୍ଲଭ ଗୁଣଟି ପାଇଁ ସେ ପରିଚିତ । ସେ ବେଶ୍ ବୁଦ୍ଧିମାନ ମଧ୍ୟ । ମୁଁ ଦୁଆର ମୁହଁରୁ ତାଙ୍କୁ ସ୍ୱାଗତ ଜଣେଇ ଆଦର ସହିତ ସ୍କୁଲ ଭିତରକୁ ପାଛୋଟି ନେଲି । ସେଇଠି ଜଣେ ଡାକ୍ତର ଆଉ ଜଣେ ନର୍ସ ପିଲାଙ୍କୁ ଦେଖୁଥିଲେ । ''ଆପଣଙ୍କ ସହ ସାକ୍ଷାତ୍ ହେବା ଏକ ସୌଭାଗ୍ୟ ।''- ତାଙ୍କୁ ଠିଆ ହୋଇଥିବାର ଦେଖି କହିଲି ।

"ଏଠାରେ ପହଞ୍ଚିବା ମଧ୍ୟ ଆନନ୍ଦଦାୟକ ।" ସେ କହିଲେ । ଏହାପରେ ମୁଁ ମୋ ଶ୍ରେଣୀକୁ ଫେରି ଆସିଲି । ବର୍ଷା ପାଣିର ସୁଅ ପରି ପିଲାଏ ଶ୍ରେଣୀ ଭିତରକୁ ମାଡ଼ି ଚାଲିଥିଲେ । ସେ ମଧ୍ୟ ସେଇ ଧାରାରେ ଆଗେଇଗଲେ । ଶ୍ରୀଯୁକ୍ତ ମାଟାଓ୍ବେରା ଆଜି ତାଙ୍କ କଳା ବିଲେଇ ଛୁଆଟି ଧରି ସ୍କୁଲକୁ ଆସିଥିଲେ । ତାକୁ ସେ ମୋ କାନ୍ଧରେ ବସାଇ ଦେଲେ । ସେ ବେଶ୍ ଡେଙ୍ଗା । ତେଣୁ ମୁହଁ ଟେକି ମୁଁ ତାଙ୍କୁ ଚାହିଁଲି । ଏଣେ ବିଲେଇଟି ମୋ କାନ୍ଧ ଉପରେ ଝାଡ଼ିଝୁଡ଼ି ହୋଇ ମୋ ଆଖି ଆଗରେ ତା' ଲାଞ୍ଜଟିକୁ ତଳ ଉପର କରି ହଲାଉ ଥାଏ । ପିଲାଏ ଆମକୁ ଘେରିଗଲେ । ତାଙ୍କର ଆଗ୍ରହୀ ଆଖି ସ୍ୱଭାବ ସୁଲଭ ଢାଞ୍ଚାରେ ବିଲେଇ ଆଡ଼କୁ ଟାଣି ହୋଇ ଯାଉଥିଲା । ସେମାନେ ଖୁସିରେ ହସୁଥିଲେ ।

"ମୁଁ ଗୋଟେ ଟାଇପ୍ ରାଇଟ୍‌ର ଆଣିଛି ଶ୍ରୀମତୀ ହେଣ୍ଡେର୍‌ସନ୍ । ଠିକ୍ ଆପଣ ଯେପରି ଅକ୍ଷର ଚାହୁଁଥିଲେ । ଏବେ ଚାହିଁଲେ ଆପଣଙ୍କ ପୁସ୍ତକଗୁଡ଼ିକୁ ଟାଇପ୍ କରିବାକୁ ମୁଁ ମୋର ଟାଇପିଷ୍ଟଙ୍କୁ ନେଇ ଆସିପାରିବି ।"

"କୁଆଡୁ ପାଇଲେ ଆପଣ ଏଇଟି ?" ମୁଁ ଆନନ୍ଦରେ ପାଟି କରି ପଚାରିଲି । କାହିଁକି ? କେହି କଳନା କରି ପାରିବେନି, ଷାଠିଏଟି ମାଓରି ପାଠ୍ୟପୁସ୍ତକ ହାତରେ ଛପେଇ ମୁଁ କେତେ ଯେ ମୋର ସମସ୍ତ ଶକ୍ତି ଖଟେଇଛି । ତେଣୁ ଏଗାରଟା ଯାଏଁ ସେ ମୋ ସହିତ ମୋ ମାଓରି ପୁସ୍ତକ ପାଇଁ କାମରେ ଖଟାଇଲେ । ବାଃରେ ବାଃ, ଏଥର ମୋର ପୁସ୍ତକ ଛପାଇବା ଆଗେଇ ଚାଲିଲା । ସେ କହିଲେ, "ମୁଁ ସବୁବେଳେ ଅନୁଭବ କରିଛି, ମାଓରି ଗାଁ (ପା')ର ପରିବେଶ ଓ ସ୍କୁଲ ମଧ୍ୟରେ ଗୋଟିଏ ସେତୁ ଦରକାର । ମୋର ବିଶ୍ୱାସ, ଏଠାରେ ଆପଣଙ୍କ ପାଖରେ ସେପରି କିଛି ରହିଛି ।"

ମୋର ସେଇ ସାଧାରଣ ବହିଗୁଡ଼ିକରେ ସେ ଯେପରି ଲାଗିଗଲେ, ତାହା ମୋତେ ବେଶ୍ ଆନନ୍ଦ ଦେଲା । ତେବେ ତୃତୀୟ ସଂସ୍କରଣଟି ସାଧାରଣ ନ ଥିଲା; ଏହା ବେଶ୍ ଉଚ୍ଚ ଧରଣର ଥିଲା । ପୁଣି ସେ ଚାହୁଁଥିଲେ, ନମୁନା ରୂପେ ଖଣ୍ଡେ ବହିନେବାକୁ । ମୁଁ କିନ୍ତୁ ସେଇଟି ତାଙ୍କ ହାତରୁ ନେଇ ଆସିଲି । ତାଙ୍କୁ କଥାଦେଲି, ମୁଁ ଖଣ୍ଡିଏ ବହି ଭଲରେ ଛାପି ତାଙ୍କୁ ଦେବି, ଯେପରି ତାଙ୍କ ଟାଇପିଷ୍ଟ୍ ତାହାକୁ ସୁବିଧାରେ ପଢ଼ିପାରିବେ । ପୁସ୍ତକଗୁଡ଼ିକୁ ଦେଖିବାକୁ ଆଉ ଦିନେ ସେ ତାଙ୍କ ସେକ୍ରେଟାରୀଙ୍କୁ ସାଥିରେ ଧରି ପହଞ୍ଚିଲେ । ତାଙ୍କ ସେକ୍ରେଟାରୀ ପଚାରିଲେ, "ମୁଁ ଏଥିରୁ ଖଣ୍ଡିଏ ନେଇପାରିବି କି ?"

ମୁଁ ଚଲାକି ଦେଖେଇ ସଙ୍ଗେ ସଙ୍ଗେ କହିଲି, ''ଶ୍ରୀଯୁକ୍ତ ହେଣ୍ଡରସନ୍ ଏ ପୁସ୍ତକଗୁଡ଼ିକୁ ସ୍କୁଲ ବାହାରକୁ ନେବାକୁ କେବେହେଲେ ଅନୁମତି ଦିଅନ୍ତି ନାହିଁ ।'' ଏ କଥାକୁ ସେ ଦୁହିଁଙ୍କର କିଛି ଉତ୍ତର ନଥିଲା । ସେକ୍ରେଟାରୀ ତ ତା'ପରଠାରୁ ମୋତେ ଆଉ କେବେ କିଛି ହେଲେ କହିଲେ ନାହିଁ । ଆଉ ଏବେ ଶ୍ରୀଯୁକ୍ତ ଟ୍ରେମେଇନ୍ ସେଇ କଥା କହୁଛନ୍ତି । ତେଣୁ ସେ ବହି ପାଇଲେ ନାହିଁ ।

ତୃତୀୟ ସଂସ୍କରଣ ପରେ ମୁଁ ଆଉ ଆଗେଇ ପାରୁ ନାହିଁ । ମୁଁ ଶ୍ରୀଯୁକ୍ତ ଟ୍ରେମେଇନ୍‌ଙ୍କୁ ସେପରି କହୁଥିଲି, ''ମୁଁ ଆଉ ଅଧିକ କିଛି କରିପାରିବି ନାହିଁ । ସେଗୁଡ଼ିକର ଗୋଟିଏ ଗୋଟିଏ ଶୁଦ୍ଧ ସଂସ୍କରଣ କରିପାରେ, କିନ୍ତୁ ଅଧିକା ସଂଖ୍ୟାରେ ନୁହେଁ । ମୋର ଛପେଇବା ମଧ ପଛେଇ ଯାଇଛି । ମତେ ଲାଗୁଛି, ଯେମିତି ମୁଁ ଏବେ ବୁଢ଼ୀ ହୋଇଯାଉଛି । ମୁଁ ଯେମିତି ଏକାବେଳେକେ ଅବସନ୍ନ । ବଳ ସବୁ ସରିଯାଇଛି !!

କିନ୍ତୁ ଏବେ ତ ସବୁ ବଦଳି ଯାଇଛି । ଶ୍ରୀଯୁକ୍ତ ଟ୍ରେମେଇନ୍ ଛପା କାମ ଦେଖୁଛନ୍ତି । ଆଉ ମୋର ଅଙ୍କନଗୁଡ଼ିକର ନକଲ ପାଇଁ ଜଣେ ଯୁବକଙ୍କ ଉପରେ ମୋର ଆଖି ଅଛି । ମୁଁ କହିଲି, ''ମୁଁ ଆପଣଙ୍କୁ ଅଭିନନ୍ଦନ ଜଣାଉଛି, ଶ୍ରୀଯୁକ୍ତ ଟ୍ରେମେଇନ୍ । ଏଗୁଡ଼ିକୁ ଆପଣ ମୃତ୍ୟୁଶଯ୍ୟାରୁ ଉଠେଇ ଆଣିଛନ୍ତି ।'' ବର୍ଷ ବର୍ଷ ଧରି ଏଇ ମାଓରି ପାଠ୍ୟ ପୁସ୍ତକଗୁଡ଼ିକ ପାଇଁ ପରୀକ୍ଷା ନିରୀକ୍ଷା କରି ମୁଁ ନୂଆ ନୂଆ ଭାବଧାରା ପାଇଛି । ଗବେଷଣାରୁ ଉଦ୍ଭାବନ ହୋଇଛି । ନୂଆ ବାଟ ଖୋଜି ପାଇଛି ।

ଶ୍ରୀଯୁକ୍ତ ଟ୍ରେମେଇନ୍‌ଙ୍କ ବିଷୟରେ ଏକ ଟିପ୍‌ପଣୀ :

ମୁଁ ପାଠ୍ୟ ପୁସ୍ତକଗୁଡ଼ିକ ଲେଖି ପରଖ କରିଛି । ସେଥିରେ ପଦିକିଆ ବିଶେଷ୍ୟ ପଦ ରଖିଛି । ଶ୍ରୀଯୁକ୍ତ ଶୋନେଲ୍‌ଙ୍କ ମତରେ ଆମେ ବାକ୍ୟରେ ଚିନ୍ତା କରୁ । ମୁଁ ଏଥିସହ ଏକମତ ନୁହେଁ । ସେଥିପାଇଁ ମୁଁ ଦୁଃଖିତ । ବିଶେଷ୍ୟ ପଦଟିଏ କହିଲେ ତା'ର ଛବି ମନ ଧରିନିଏ । ତେଣୁ ଶ୍ରୀ ଶୋନେଲ୍‌ଙ୍କ ମତ ପୂରା ସତ ନୁହେଁ । ଚିନ୍ତା କରିବାକୁ ବାକ୍ୟ ଦରକାର ହୋଇପାରେ । କିନ୍ତୁ ଲେଖିଲାବେଳେ ପଦ ଲୋଡ଼ା ହୁଏ । ବିଶେଷତଃ ମାଓରି ପିଲାଟିଏ ଦୁଷ୍ଟାମୀ କଲାକରି ପଦେ ପଦେ (ଏକ ପଦ) କହିଥାଏ । ମାଓରିମାନେ ନିଜ ଭିତରେ କଥା ହେଲାବେଳେ ପଦିକିଆ ବାକ୍ୟ କହିଥାନ୍ତି । ମୁଁ ତାହାକୁ ''ଏକ 'ପଦ'ର ବାକ୍ୟ'' ବୋଲି କହେ । ମାଓରିମାନଙ୍କ ମନ କଳାକାରର ମନ । ପ୍ରାକୃତିକ ଭାବେ କଳାତ୍ମକ; ସେଇ ତାର ଚରିତ୍ର । ଚିତ୍ର



ପଟଟିଏ କଳନା କରିବାରେ ମାଓରି ମସ୍ତିଷ୍କ ଅତି ଶକ୍ତିଶାଳୀ, ସେଥି ସହିତ କୋଳାହଳମୟ । ତାଙ୍କ ଭିତରେ ଯେପରି ଧ୍ୱନି ପ୍ରତିଧ୍ୱନି ଖେଳି ଉଠୁଥାଏ ବୋଲି ମୁଁ ବିଚାର କରେ । ଭାବନାର ଚିତ୍ରଟିଏ ପାଇଁ ଗୋଟିଏ 'ପଦ'ରେ ସେ କହେ, କିନ୍ତୁ ଏହା ପୂରା ବାକ୍ୟଟିର ଅର୍ଥ ବୁଝାଏ । ତା' ସହିତ ମିଶି ରହିଥିବା କହିବା ଢଙ୍ଗ, ଭଙ୍ଗୀ, ସ୍ୱର, ଗୁରୁ-ଲଘୁ ଡାଞ୍ଚା ଏବଂ ଏସବୁ ଉପରେ ସ୍ପର୍ଶ । ଜଣେ ମାଓରି ଆଉ ଜଣେ ମାଓରି ଲୋକ ସହିତ କଥା ହେଲାବେଳେ ଏହା ସବୁ ସରଳ ସହଜ ଭାବରେ ବୁଝାପଡ଼େ । ଏବେ ସୁଦ୍ଧା ମାଓରି ଲୋକଙ୍କ ମାନସିକ ସାମାଜିକତା ଭାଗ ଭାଗ ହୋଇଯାଇ ନାହିଁ ବୋଲି ଏପରି ରହିଛି । ସହାନୁଭୂତି କହିଲେ ଆମେ ଯାହା ବୁଝୁ, ତାହାର ଅତି ସରଳ ଆଉ ତରଳ ଗୁଣଟି ଯେପରି ସେ ମନରେ ଭରି ରହିଛି । ସେ ସହାନୁଭୂତି ସେମାନଙ୍କ ମନ ଭିତରେ ମନରୁ ମନକୁ ବିଭିନ୍ନ ଭାବ ପଠେଇ ଦିଏ (Telepathy) । ସହାନୁଭୂତି ପାଖରେ ପଦ-ପଦକିଆ କଥାଭାଷା ଖୁବ୍ ଚଞ୍ଚଳ ମଉଳି ଯାଏ, ଉଛଳି ଉଠେ ଭାବଭଙ୍ଗୀ, କହିବା ଢଙ୍ଗ ଓ ସ୍ପର୍ଶ । ମୁଁ କହିବାକୁ ଚାହେଁ ଯେ, କଥାଭାଷା (ବାଚନିକ) ଅପେକ୍ଷା ଦେହର ଆଙ୍ଗିକ ହାବଭାବ ଅଧିକ ପ୍ରଭାବ ପକାଏ । ଘନିଷ୍ଠ ବନ୍ଧୁ ଭିତରେ ଏଇଟି ଉଣା ହୋଇଆସେ । ଆଉ ପଦିକିଆ କଥା କହିବା ଲୋକଙ୍କ ପାଇଁ..... (ବାଚିକ ଅପେକ୍ଷା ଆଙ୍ଗିକ ହିଁ ପ୍ରଧାନ)

ମାଓରି ଭାଷାଟି ବେଶ୍ ଆଳଂକାରିକ । କିନ୍ତୁ ଭାଷଣରେ କେବଳ ଏଇ ବାକ୍-ଚାତୁରୀ ପ୍ରକାଶ ପାଏ । ମନେ କରନ୍ତୁ, ମାଓରି ପିଲାଟିଏ ଆପଣଙ୍କ ପାଖକୁ ଧାଇଁ ଆସିଲା, ଆଉ କହିଲା, ''ଲୋକ ! ଏ ଲୋକ ।'' ତା'ର ଉତ୍ତେଜନାରୁ ଏବଂ ଆପଣଙ୍କ ନିକଟକୁ ତା'ର ପାଖେଇ ଆସିବା କାମରୁ, ତାର ସ୍ୱର ଭଙ୍ଗୀରୁ ଆଉ ଆପଣଙ୍କ ପାଖରେ ହାତ ଟଣାଟଣିରେ ସେ ଯେପରି କହି ଚାଲିଛି, ''ଜଣେ ବିଚିତ୍ରଲୋକ ଫାଟକଯାଏଁ ଆସିଲାଣି । ମୁଁ ଆଗରୁ କେବେ ତାଙ୍କୁ ଦେଖିନି, କିଏ ସିଏ ? କ'ଣ ସେ ଚାହେଁ ? ଆପଣ ସବୁ କଥା ବୁଝି ମୋତେ କହିବେ କି ? ସେ ସବୁ ଜାଣିବାକୁ ମୁଁ କେତେ ବ୍ୟଗ୍ର । ଭଲ ଲାଗେ ମୋତେ, ଏଠାକୁ ଏମିତି ଅଦ୍ଭୁତ ଲୋକ ଆସିବାଟା ।''

ଥରେ ଏକ୍ସଚେଞ୍ଜ୍‌କୁ ଡାକିବାକୁ ମୁଁ ମୋ ଟେଲିଫୋନ୍‌ର ରିସିଭର୍‌ଟି ଉଠାଇଥାଏ । ସେତିକିବେଳେ ଦି'ଜଣ ମାଓରି ଲୋକଙ୍କର ପୂରା କଥାଭାଷା ମୁଁ କାନ ପାରି ଶୁଣି ପାରିଥିଲି ।

ପ୍ରଥମ ଲୋକ: ଚଷିଲ ?

ଦ୍ୱିତୀୟ ଲୋକ: ନାଇଁ ।

ଆଉ ଏହା ସହିତ ସ୍ୱରର ଉଚ୍ଚ, ନୀଚ ଓ କମ୍ପନ, ବିରାମ ଓ ଦମ୍ ଏବଂ ପରସ୍ପର ଭିତରେ କଥାଭାଷା ମଝିରେ ସ୍ୱରରେ ଉଁ, ଆଁ ଧ୍ୱନି ଦେଇ ସେମାନେ ବହୁତ କିଛି କୁହାକୁହି ହେଉଥିଲେ ।

ମାଓରିମାନଙ୍କୁ ପଢ଼ାଇବାକୁ ମୁଁ ଯେଉଁ ପଦିକିଆ ବିଶେଷ୍ୟ ପଦ ବ୍ୟବହାର କରିଥିଲି, ସେଗୁଡ଼ିକ ପଦିକିଆ ବାକ୍ୟ ଥିଲା । ବୁଦ୍ଧି ଅନୁସାରେ ଗୋଟିଏ ଶ୍ରେଣୀରୁ ଉଚ୍ଚ ଶ୍ରେଣୀକୁ ଯିବାରେ ଏହା ଅତି ଦରକାରୀ ଥିଲା । ଜଣେ ମାଓରି ପିଲା ଗୋଟିଏ ବିଭକ୍ତି, ଅବ୍ୟୟ କିମ୍ବା ସର୍ବନାମ ପଦ ଯେତିକି ବେଗରେ ଶିଖିପାରେ, ଗୋଟିଏ ବିଶେଷ୍ୟ ପଦକୁ ତା'ର ପାଞ୍ଚଗୁଣ ଅଧିକ ବେଗରେ ଶିଖିପାରେ । ଆଉ ସେଇ ବିଶେଷ୍ୟ ପଦଟି ଯଦି ତା'ର ଆବେଗ ସହିତ ମେଳ ଖାଏ, ତେବେ, ସେ ତା'କୁ ଦଶଗୁଣ ଅଧିକ ବେଗରେ ଶିଖିପାରେ । ତା' ପରେ ବିଶେଷ୍ୟ ପଦଗୁଡ଼ିକ ଶିଖିଲାବେଳେ ଘଟଣାକ୍ରମେ ସେ ଅକ୍ଷରଗୁଡ଼ିକର ଆକାର ପ୍ରକାର ସହିତ ଭଲ ଭାବେ ପରିଚିତ ହୋଇଉଠେ । ଫଳରେ ପହିଲି ପାଠ୍ୟପୁସ୍ତକ ପାଖରେ ପହଞ୍ଚିଲା ବେଳକୁ ସେ ଏକାଧିକ ପଦ ଥିବା ବାକ୍ୟ ସହିତ ଖୁସିରେ ପରିଚିତ ହୋଇ ଯାଇଥାଏ

ଏବଂ ସର୍ବନାମ, କ୍ରିୟା, ଅବ୍ୟୟ, ଉପସର୍ଗ, ଆଦି ପଦ ବ୍ୟବହାର କରିବାକୁ ସମର୍ଥ ହୋଇଯାଇଥାଏ ।

ସେଇଥିପାଇଁ ପହିଲେ ମୁଁ ଏଇ ଏକୁଟିଆ ପଦ ଲୋଡ଼ିଥାଏ । କିନ୍ତୁ ଏଇସବୁ ପଦକୁ ଅତି ଯତ୍ନରେ ବଛାଯିବା ଉଚିତ । ମାଓରି ଗାଆଁ (ପା')ର ମାନସିକତା ସହିତ ଖାପ ଖୁଆଇ ସେମାନଙ୍କ ପହିଲି ପଢ଼ା ବହିରେ ଦିଆ ଯାଇଥିବା ଏଇ ପଦଗୁଡ଼ିକର ମେଳ ରହିବା ନିହାତି ଜରୁରୀ ।

ଏଇ ଢାଞ୍ଚାଟି ମାଓରି ଛୁଆର ମନକୁ ସ୍ୱାଭାବିକ ଭାବରେ ଛୁଏଁ.... ଆଉ ମୋର ମଧ୍ୟ ।

ଶ୍ରୀଯୁକ୍ତ ଟ୍ରେମେଇନ୍‌ଙ୍କ ପରିଦର୍ଶନ ପରେ ମୋ ବିଚାର:

ୱାଇଓ୍ୱିନି ହେଉଛି: ବିଚାର-ବୋଧର ରାଣୀ । ସବୁ ସମୟରେ ସେ ଟେବୁଲ ପାଖରେ ଠିଆ ହୋଇଥାଏ । ଆଉ ଆମର ମୁହଁର ଭାବଭଙ୍ଗୀ ସବୁକୁ ଭଲ ଭାବେ ନିରେଖି ଦେଖୁଥାଏ । ତା'କାମ କରିବାକୁ ସେଠାରୁ ଯିବାକୁ ମୁଁ କେବେହେଲେ ତା'କୁ କହି ନାହିଁ । ମୁଁ ଜାଣେ, ମୁଁ ତା'ର ସୁନ୍ଦର ବୁଝି ପାରିବା ଶକ୍ତି ଓ ସହାନୁଭୂତି ଗୁଣକୁ ବୁଝିଛି । ସିଏ ତ ଛଅ ବର୍ଷର ଝିଅଟିଏ । ତା' ମୁହଁଟି ଏବେ ବି ମୋର ଆଖିରେ ନାଚୁଛି । କହୁଣୀରେ ଟେବୁଲକୁ ଭରାଦେଇ ଠିଆ ହୋଇଥାଏ । ତା'ର ମୁଣ୍ଡ ବାଳ ରିବନ୍‌ରେ ବନ୍ଧା ଥାଏ । ତା'ର ବଡ଼ ବଡ଼ ମାଟିଆ ଆଖି ଦୁଇଟା ପୂରା ମେଲାଥାଏ । ଆଉ ତା' ଆଖି ଆଗର ସବୁ ଘଟଣାକୁ ସେ ଯେମିତି ପୂରାପୂରି ବୁଝି ନେଉଥାଏ । ସେ କାହିଁକି ସେଠାରେ ଏମିତି ରହେ, ତା' ମୁଁ ଜାଣେ । ସେ ମୋର ଆବେଗ ବୁଝି ପାରିଥାଏ । ଏଇଟା ହେଉଛି ମାଓରିମାନଙ୍କର ଏକ ପ୍ରକୃତି । ସେ ଅନ୍ୟର ମନର ଭାବନା ଅନୁଭବ କରେ । ସେ ବୋଧହୁଏ ଆମର କଥାଭାଷା ବୁଝି ପାରୁ ନ ଥିବ । ତା'କେବଳ ବାଚନିକ କଥାଭାଷା, କିନ୍ତୁ ମୋ ମୁହଁର ଭାବଭଙ୍ଗୀ, ମୋ ସ୍ୱର, ମୋ ହାତ ଓ କାର୍ଯ୍ୟକଳାପକୁ ସେ ଭଲ ଭାବେ ବୁଝି ପାରୁଥିଲା । ସେମିତି ସେ ନଅରୁ ଏଗାରଟା ଯାଏଁ ଠିଆ ହୋଇଥାଏ । ତା'ପରେ ହାତ ଉପରେ ରହିଥିବା ତା' ମୁଣ୍ଡଟି ତଳକୁ ନଇଁ ଆସେ, ସେ ଢୁଳାଏ । କିନ୍ତୁ ସେ ଯାହା କିଛି ପଢ଼ିବାକୁ ଓ ଶିଖିବାକୁ ଆସିଥାଏ, ତା'ଠାରୁ ଢେର ଅଧିକ ଦରକାରୀ ବିଷୟ ଶିଖିଥାଏ ବୋଲି ମୁଁ ଜାଣେ । ପୁସ୍ତକ ବିଷୟ ନେଇ ମୋର ଆବେଗପୂର୍ଣ୍ଣ ସବୁ ଗତିବିଧି ଓ କାମରେ ଯେପରି ସେ

ମୋ ସହିତ ସମାନ ଭାବେ ଅନୁଭବ କରେ । ଏ କଥା ମୁଁ ଜାଣେ । ମୁଁ ମାଓରିମାନଙ୍କୁ ଜାଣେ । ମୁଁ କେବେହେଲେ ଏସବୁ ଭୁଲି ପାରିବି ନାହିଁ ।

ଏ ପ୍ରସଙ୍ଗରେ ଶ୍ରୀଯୁକ୍ତ ଟ୍ରେମେଇନ୍ କହିଲେ, ''ଏଇଟା ମୁଁ ମୋର ଜଣେ ବନ୍ଧୁଙ୍କଠାରୁ ପାଇଛି ।'' ସେ ସେଇ ବିଚିତ୍ର ଟାଇପ୍ ରାଇଟର୍ ବିଷୟରେ କହୁଥିଲେ । ତା' ଦ୍ୱାରା ଶିଶୁ ଶ୍ରେଣୀର ପାଠ୍ୟ ପୁସ୍ତକ ଛପା (ଟାଇପ୍) ହେଉଥିଲା । ''ସେଇଟାକୁ ମୋତେ ବିକି ଦେବାକୁ ମୁଁ ତାଙ୍କୁ କହିଥିଲି । କିନ୍ତୁ ସେଇଟା ତାଙ୍କର ଜଣେ ବନ୍ଧୁ ତାଙ୍କ ନିକଟରେ ଛାଡ଼ି ଯାଇଛନ୍ତି । ସେ ବନ୍ଧୁ ମରି ଯାଇଛନ୍ତି । ତେଣୁ ବନ୍ଧୁତାର ଆବେଗରେ ସେ ତାହାକୁ ପାଖରେ ରଖିବାକୁ ଚାହାନ୍ତି । ମୋ ଜାଣିବାରେ ନିଉଜିଲାଣ୍ଡରେ ଏ ପ୍ରକାର ଟାଇପ୍-ରାଇଟର୍ ଏଇ ଗୋଟିକ । ଆପଣ କ'ଣ ନିଶ୍ଚିତ ଯେ ଏଇଟି ଆପଣ ଚାହୁଁଥିବା ଟାଇପ୍ ରାଇଟର୍ ? ଅବଶ୍ୟ, ସେ ମୋତେ ଏଇଟା କେବଳ ଧାର ଦେଇଛନ୍ତି ।''

ସେଇ ଟାଇପ୍ ରାଇଟର୍‌ରେ ଛପା ହୋଇଥିବା କିଛି ନମୁନା ସେ ସାଥିରେ ଆଣିଥିଲେ । ସେଗୁଡ଼ିକ ଦେଖୁ ଦେଖୁ ମୁଁ ହାତ ବଢ଼େଇ ପକେଇଲି । ''ମୁଁ ମୋ କୋହକୁ ରୋକି ପାରୁନି ।'' ତା' ପରେ ମୁଁ ଭଣ୍ଡାର ଘରକୁ ଧାଇଁଗଲି । ହାତରେ ଛାପିଥିବା ବହିଗୁଡ଼ିକ ଧରି ଆସିଲି । ଗୋଟେ ବିଡ଼ା, ଦୁଇଟି ବିଡ଼ା, ତା'ପରେ ଆହୁରି ବେଗି ବେଗି ବୋହି ଆଣିଲି ମୋ' ପୁସ୍ତକ ସବୁକୁ । ଟେବୁଲ ଗୋଟାକଯାକରେ ଥୋଇଦେଲି, ଗଦା ଗଦା ପୋଥି.... ଆହୁରି, ଆହୁରି ପୋଥି ବୋହି ଆଣିବାରେ ଲାଗିଥିଲି- ଯେତେବେଳେ ସେ କୁଞ୍ଚେଇ ଉଠିଲେ ଆଉ ନିଜ ଆଖିକୁ ହାତରେ ଘୋଡ଼େଇ ପକେଇଲେ, ମୁଁ ବୋହିବା ବନ୍ଦକଲି ।

ଆଗରୁ ଯେପରି ଜାଣି ହେଉଥିଲା, ମୋର ନୂଆ ସହକାରୀଙ୍କ ବିରୁଦ୍ଧରେ ମାଟାଓ୍ୱେରୋ ଠିକ୍ ସେପରି ହିଂସ୍ର ପ୍ରତିକ୍ରିୟା ପ୍ରକାଶ କଲା । ଅତି ସମ୍ବେଦନଶୀଳ ଏଇ ପିଲାଜଣକ । ତା'ର ଲେଖାରେ ବି ସେଇଟା ପ୍ରକାଶ ପାଇଥିଲା । ତା'ର ସେଇ ପ୍ରତିକ୍ରିୟା ଚରମ ସୀମାରେ ପହଞ୍ଚିଥିଲା, ଯେଉଁଦିନ ମୁଁ ମୋର ସହକାରୀ କୋଲୀନ୍‌କୁ ଛୋଟ ପିଲାଙ୍କ ଶିଶୁ ଶ୍ରେଣୀର ଜିମା ଦେଇ ବଡ଼ ପିଲାଙ୍କୁ ବାସ୍କେଟ୍ ବଲ୍ ଅଭ୍ୟାସ କରାଉଥିଲି । ସେ ସମୟରେ ଗୋରା ଯାଆଁଳା ପିଲାଙ୍କ ଭିତରୁ ଗୋର୍ଡ଼ନ୍‌କୁ ମାଟାଓ୍ୱେରୋ ମାଡ଼ଦେଲା । ମୁଁ ଠିକ୍ ସମୟରେ ଫେରି ଗୋର୍ଡ଼ନ୍ ଧକେଇ ହେଉଥିବା ଦେଖିଲି । ''ଘଟଣା କ'ଣ ଗୋର୍ଡ଼ନ୍ ?''

ସେ କହିବାକୁ ଚେଷ୍ଟା କଲା । କିନ୍ତୁ କହି ପାରିଲା ନାହିଁ । ତା' ଯାଆଁଳା ଭାଇ କହିଲା, "ମାଟାଓ୍ୱେରୋ ତା'କୁ ପିଟିଲା ।"

ଅବଶ୍ୟ ଏଥିରେ ଆଶ୍ଚର୍ଯ୍ୟ ହେବା ପାଇଁ କିଛି ନ ଥିଲା । କିନ୍ତୁ କିମିତି ଗୋଟେ ସାମ୍ପ୍ରଦାୟିକତା ମୋ ଭିତରେ ଟକ୍ ଟକ୍ ହୋଇ ଫୁଟି ଉଠୁଥିଲା । ଅନ୍ତରର ଗଭୀର ଭାଗରେ 'ଗୋରାକୁ ମାଟିଆ ବାଡ଼େଇବା' ଘଟଣା ଆଲୋଡ଼ନ ଜାତ କରୁଥିଲା । ତା'ର ପରିଣତି ଭୟଙ୍କର ରାଗ-ରୋଷର ବିପଦ ବାରି ହୋଇ ପଡୁଥିଲା । କିନ୍ତୁ ନିଜକୁ ଢେର ସଂଯତ କରି ଅତି ଶାନ୍ତ ଭାବେ କହିଲି, "ତୁମେ ଛୁଟିପରେ ସ୍କୁଲରେ ରହିବ ମାଟାଓ୍ୱେରୋ ।"

"ସିଏ.....ସେ ମୋର ପେଟକୁ ଚିମୁଟି ଦେଲା", ମାଟାଓ୍ୱେରୋ ବେଶ ଚଲାକିରେ କହିଲା । କିନ୍ତୁ କୌଣସି ପିଲାକୁ ତ ଦୂରର କଥା, କୌଣସି ଜିନିଷକୁ ଚିମୁଟିବା କିମ୍ବା ଅନ୍ୟ କୌଣସି ବାଟରେ ରାଗି ଉଠି କିଛି କରିବା, ଗୋର୍ଡ଼ନ୍‌ର ସ୍ୱଭାବ-ବିରୁଦ୍ଧ । ତେଣୁ ତା'ର କଥାକୁ ମୁଁ ଏଡ଼ି ଦେଲି । ଗୋର୍ଡ଼ନ୍‌କୁ ସାନ୍ତ୍ୱନା ଦେଇ ଶାନ୍ତକଲି । ନିଜର ଆବେଗକୁ ଶାନ୍ତ କରିବାପାଇଁ ସେଇ ସମୟ ପାଇଁ ଘଟଣାଟିର ବିଚାର ବନ୍ଦ ରଖିଲି ।

ସେଇ ବଖରାରେ ଉଚ୍ଚ ଶ୍ରେଣୀର କେତେଜଣ ବଡ଼ ବଡ଼ ଝିଅ ଥିଲେ । କେତେ ଜଣ ସଫେଇରେ ଲାଗିଥିଲେ, କେତେଜଣ ପିଆନୋ ବଜାଉଥିଲେ, ଆଉ କେତେଜଣ ବୁଣାବୁଣି କରୁଥିଲେ । କୋଲୀନ୍ ମଧ୍ୟ ସେଇଠି ଥିଲେ । କିଛି ସମୟ ପରେ ଶିଶୁ ଶ୍ରେଣୀର ଛୁଟି ହେଲା । ମୁଁ ଧୀର ଭାବରେ ମାଟାଓ୍ୱେରୋକୁ କହିଲି, "ତୁମେ ଏବେ ଯାଅ, ମାଟାଓ୍ୱେରୋ ।"

ମୁଁ ଘଟଣାଟିର ବିଚାର ବନ୍ଦ ରଖିଲି । କାରଣ: ତା'ର ମୋ ପ୍ରତି ବିଶେଷ ଖାତିର ଥିଲା । ଆଉ ତା' କାମକୁ ମୁଁ ପୂରା ନାପସନ୍ଦ କରିଛି- ଏ କଥା ସେ ବୁଝିବାକୁ ତାକୁ ସମୟ ଦେଲି । ଏହାଛଡ଼ା ସ୍ୱଭାବଗତ ମାଓରି ଆବେଗରେ ସେ ପ୍ରତିକ୍ରିୟା ପ୍ରକାଶ କରିଥିଲା । ବିଶେଷତଃ ଦେଖଣାହାରୀ ତାକୁ ଉତ୍ସାହିତ କରିଥିବେ । ଆଉ, ମାଟାଓ୍ୱେରୋ ଏ ପ୍ରକାର ଉତ୍ସାହକୁ ବେଶ୍ ପସନ୍ଦ କରେ । ସେ ତା'ର ଛୋଟ ଛୋଟ ପାଦକୁ ତଳେ ବାଡ଼େଇ ବାଡ଼େଇ, ଆଉ ମୁଠିକୁ ହଲେଇ ହଲେଇ ଶ୍ରେଣୀରୁ ବାହାରି ପଡ଼ିଲା ।

ତା'ର ଏ ଢାଞ୍ଚାରେ ମୁଁ ସ୍ତବ୍ଧ ହୋଇଗଲି । ମୁଁ ସବୁବେଳେ ନିଜକୁ ଗୋଟେ ଅଭ୍ୟାସରେ ପକେଇଥିଲି । ସେ ଅନୁସାରେ ମୁଁ ତା' ସପକ୍ଷରେ ମଧ୍ୟ ଯୁକ୍ତି କରିଥାନ୍ତି । କିନ୍ତୁ ମୋ ଭିତରେ ଯେଉଁ ପ୍ରତିକ୍ରିୟା ଆବେଗରେ ବଢ଼ି ଉଠୁଥିଲା, ସେଇଟା ପଦାକୁ ଫାଟି ପଡ଼ିଲା । ଅତି ଶାନ୍ତ ଭାବରେ ମୁଁ ତା'କୁ କହିଲି, ‘‘ରାଗ ନାହିଁ, ମାଟାଓ୍ୱେରୋ ।''

ହେଲେ, ସେ ମୋ ମୁହଁ ଓ ସ୍ୱରରୁ ମୋର ରାଗ ନିଶ୍ଚୟ ଅନୁଭବ କରିଥିବ । ସେଇଟା ତା'ର ସହଜାତ ସ୍ୱଭାବ । ସେ କଥାଭାଷାର ପଦ ଅପେକ୍ଷା ମୁହଁରୁ ମନର ଭାବ ଅନୁଭବ କରେ । ମନ ଓ ଆବେଗ ବୁଝିପାରେ । ଏଇଟା ମାଓରିମାନଙ୍କ ମଧ୍ୟ ଏକ ବିଶେଷ ଗୁଣ । ବେଶ୍ ଅନୁଭବ କଲାପରି ତା'କୁ ଆଘାତ ଲାଗିଥିଲା । ଜାଣି ଶୁଣି ସେ ତା'ର ପାଦକୁ ଜୋର୍‌ରେ ବାଡ଼େଇ ଚାଲୁଥିଲା, ଆଉ ତା'ର ଟିକି ମୁଠିଟିକୁ ଜୋର୍‌ରେ ହଲାଉଥିଲା । ଏଇଟା ତା'ର ସ୍ୱଭାବ; ଆଉ ଦେଖଣାହାରୀ ପସନ୍ଦ କଲେ, ଏହାର ବେଗ ବଢ଼ିଯାଏ ।

ମୁଁ ଏଇ ଦେଖଣାହାରୀଙ୍କ ପ୍ରତି ବେଶ୍ ସଚେତନ । କିନ୍ତୁ ଏ ପ୍ରକାର ଉଦ୍ଧତପଣିଆକୁ କେବଳ ଅନେଇ ରହିବା ଦେଖିଲେ ମୁଁ ବେଶି ଲଜ୍ଜିତ ହୁଏ । କାରଣ, ତା' ଦ୍ୱାରା ଜଣକର ଉଦ୍ଧତ ପଣିଆ ଅତି ବେଗି ବଢ଼ି ଚାଲେ । ଆଉ ସିଏ ହିଁ ଜିଣେ । କିନ୍ତୁ ମୁଁ ମୋ ମନର ଆବେଗକୁ ଜାଣେ । ତେଣୁ ତାକୁ ମୁଁ ଛୁଏଁନାହିଁ । ତାହା ବଦଳରେ ଆଉ କ'ଣ କଲେ ବିପଦ କମ୍‌ହେବ- ମୁଁ ସେ କଥା ଚିନ୍ତା କରେ । ‘‘ତୁମେ ଶ୍ରୀ ହେଣ୍ଡେର୍‌ସନ୍‌ଙ୍କ ପାଖକୁ ଯାଅ, ମାଟାଓ୍ୱେରୋ ।'' ତଥାପି ସ୍ଥିର ଥିଲି । ମୁଁ ସେ ବଖରାରୁ ବାହାରି ତା' ବାହୁକୁ ଧରି ନେଲି । କିନ୍ତୁ ଆମେ ଦୁଆର ଡେଇଁ ବାହାର ପାହାଚରେ ପହଞ୍ଚିଲା ପରେ ସେ ବସି ପଡ଼ିଲା ଓ କାନ୍ଦି ଉଠିଲା । ବେଶ୍ ଜୋର୍‌ରେ । ଏଇଟା ହେଉଛି ଏ ପ୍ରକାର ଘଟଣାର ସବୁଠାରୁ କଦର୍ଯ୍ୟ ଭାଗ । ତା'କୁ ବୋଧେ କିଛି କରିବାକୁ କହିଲି; କିନ୍ତୁ ସେ କୌଣସି କାମ କରିବା ଅବସ୍ଥାରେ ନ ଥିଲା । ତେଣୁ ମୁଁ ମୋର ରାଗକୁ ଚପେଇ ତାକୁ ସାନ୍ତ୍ୱନା ଦେବାରେ ଲାଗିଲି । ‘‘କାନ୍ଦ ନାଇଁ ।'' ମୁଁ କହିଲି । ତା' ଗୋଡ଼କୁ ଆପୁଡ଼େଇ ଦେଲି । ‘‘ତୁମେ ତ ସୁନାପିଲା । ତୁମ ରୁମାଲ କାହିଁ ?''

‘‘ଭିତରେ ଅଛି ।'' ସେ ଘର ଭିତରକୁ ଧାଇଁ ପଳେଇଲା, କିନ୍ତୁ ଆଉ ଫେରିଲା ନାହିଁ । ତେଣୁ ମୁଁ ତା' ପିଛା ଧରିବାକୁ ଗଲି । ‘‘କୁଆଡ଼େ ଗଲା ସେ ଟୋକା ?'' ମୁଁ ପଚାରିଲି ।

ଘରଟିର ଗୋଟେ କୋଣରେ ସିଏ କିପରି ଏକ ଅସହାୟ ଅବସ୍ଥାରେ ତା' ଟେବୁଲ ପାଖରେ ଥିଲା, ରୁମାଲଟିକୁ ଖୋଜି ପାଇବାକୁ ତାକୁ ବହୁତ ସମୟ ଲାଗିଲା । ''ସିଏ ତା' ରୁମାଲ ଖୋଜୁଛି ।'' ତାକୁ ସାହାଯ୍ୟ କଲା ପରି କିଏ ଜଣେ କହିଲେ । ମୁଁ ସେତେବେଳ ଯାଏଁ ବୁଝି ପାରି ନ ଥିଲି ଯେ, ସେମାନେ ସବୁ ମାଟାଓ୍ୱେରୋ ସପକ୍ଷରେ ଅଛନ୍ତି । ତେଣୁ ସିଧା ତା' ପାଖକୁ ଚାଲିଗଲି । ମୁଁ ଭୁଲ ବୁଝିଛି ବୋଲି ଜାଣୁଥିଲି । କିନ୍ତୁ ଆବେଗରେ ଅନ୍ଧ ହୋଇ ମୁଁ ସେତେବେଳେ ସବୁ ଦିଗରୁ ଭୁଲ୍ ହିଁ କରୁଥିଲି । ଆଚ୍ଛା, ତେବେ ମୁଁ ମୋର ଭୁଲ ପାଇଁ ପ୍ରାୟଶ୍ଚିତ କରିବି ସମସ୍ତଙ୍କ ଆଗରେ । ''ତୁମେ ଘରକୁ ଯାଅ, ମାଟାଓ୍ୱେରୋ । ଯେଉଁ ପିଲା ଅନ୍ୟ ପିଲାଙ୍କୁ ମାଡ଼ ମାରେ, ମୁଁ ସେପରି ପିଲାକୁ ଏଠାରେ ରହିବାକୁ ଦେବି ନାହିଁ ।'' ମୁଁ କହିଲି ।

''ମୁଁ ଘରକୁ ଯିବିନି । ଏମିଲିକୁ ଅପେକ୍ଷା କରିବି ।'' ତା' ପରେ ସବୁ ଗତ ଅନୁସାରେ ଗଡ଼ି ଚାଲିଲା । ମୁଁ ଠିକ୍ ସମୟରେ ବୁଝି ପାରିଥିଲି ଯେ ରାଗରେ ମୁଁ ତାକୁ କଦାପି ଛୁଇଁବି ନାହିଁ । କିନ୍ତୁ ମୁଁ ମୋ ମନ ବଦଳେଇ ଦେଲି । ''ତୁମେ ଏବେ ଶ୍ରୀ ହେଣ୍ଡେରସନ୍‌ଙ୍କ ପାଖକୁ ଯିବ ।'' ମୁଁ କହିଲି । ''ଶ୍ରୀ ହେଣ୍ଡେରସନ୍‌ଙ୍କୁ ଏଠାକୁ ଡାକ ।'' ଓ୍ୱାଇଓ୍ୱିନୀଙ୍କୁ ମୁଁ କହିଲି । କିମିତିକା ଗୋଟେ ଭୁଲ୍ । କିମିତିକା ଲୋକଙ୍କୁ କି କାମ ଦିଆଗଲା !! ସେ ଗେଣ୍ଡା ଚାଲିଲା ପରି ଆଙ୍ଗୁଠିରେ ଟିପେଇ ଟିପେଇ ବାହାରି ପଡ଼ିଲା । ମୋ କଥା କହିବାକୁ ଗଲେ, ମାଟାଓ୍ୱେରୋର ପିଠି ପଟୁ ତା କାମିଜ୍‌କୁ ଧରି ତାକୁ ଆଗେଇ ନେଲି । ଦୁଆର ବାଟେ ପାହାଚ ଡେଇଁ ମୁଖ୍ୟ କୋଠା ଆଡ଼କୁ ଘାସ ଉପରେ ଚଳେଇ ନେଲି । ମୋ ସାଥିରେ ଚାଲିବା ସହିତ ତା'ର ''ମୁଁ ଘରକୁ ଯିବାକୁ ଚାହେଁ ନାହିଁ, ମୁଁ ଏମିଲିକୁ ଅପେକ୍ଷା କରିବି ।'' ପ୍ରତିବାଦଟି ତାଳ ପକେଇ ଚାଲିଥିଲା ।

ଘାସ ପଡ଼ିଆଟି ଡେଇଁଲା ବେଳକୁ ସିଏ କେଜାଣି କାହିଁକି ଅଟକି ଗଲା । ମୁଁ ସେମିତି ତାକୁ ଧରିଥାଏ । ଶ୍ରୀ କେ. ଆସିବାକୁ ଏତେ ଡେରି କରୁଛନ୍ତି କାହିଁକି ? ଏ ନାଟକ ମୋତେ ବଳେଇ ପଡ଼ିଲାଣି । ଏହି ସମୟରେ ହଠାତ୍ ବର୍ଷିବାକୁ ଲାଗିଲା, ତଥାପି ମୁଁ ତାକୁ ଧରିଥାଏ । ତା'ପରେ ସେଇ ଅତି ମହାନ୍ ମାଟାଓ୍ୱେରୋ ମତ ବଦଳେଇଲା ''ମୁଁ ଘରକୁ ଯିବି''- ସତେ ଯେମିତି ସେ ଆତ୍ମ ସମର୍ପଣ କଲା ।

ଶ୍ରୀଯୁକ୍ତ କେ.ଙ୍କୁ କାହାରି ଦ୍ୱାରା ଡକେଇବାକୁ ମୁଁ ଚାରିଆଡ଼େ ଆଖି ବୁଲେଇଲି । ମାଟାଓ୍ୱେରୋ ପ୍ରତି ଦରଦ ଥିବାରୁ ଓ୍ୱାଇଓ୍ୱିନୀ ତାଙ୍କର ବାଟ ଭୁଲି ଯାଇଛନ୍ତି

ନିଶ୍ଚୟ । ମୁଁ ଗୋର୍ଡ଼ନକୁ ଦେଖିଲି । ବାଃ, ଯାଠାରୁ ଆଉ କିଏ ଅଧିକା ହେବ ? "ଗୋର୍ଡ଼ନ, ତୁମେ ଯାଇ ଶ୍ରୀଯୁକ୍ତ ହେଣ୍ଡେରସନ୍‌କୁ କୁହ, ତାଙ୍କୁ ମୁଁ ଏଠାରେ ଅପେକ୍ଷା କରିଛି ।" ଗୋର୍ଡ଼ନ୍ ତା'ର ଏଇ ମନଲାଖି କାମ ପାଇଁ ଖୁସିରେ ଧାଇଁଗଲା । ବର୍ଷା ଘନେଇ ଆସିଲା । ମୂଷଳ ଧାରାରେ ବର୍ଷା । ଶିଶୁ ଶ୍ରେଣୀର ପାହାଚ ଉପରେ ଏବେ ବେଶ୍ କିଛି ଦେଖଣାହାରୀ ଜମି ଗଲେଣି । ସେ ଭିତରେ କ୍ଲୀନ୍ ମଧ୍ୟ ଅଛନ୍ତି । ଗଲା ତିନି ଦିନ ଭିତରେ ତାଙ୍କ ବିଚାରରେ ମୁଁ ଆଦର୍ଶ ଶିକ୍ଷୟିତ୍ରୀ ହୋଇଯାଇଛି । ମୁଖ୍ୟ କୋଠାର ପିଣ୍ଡା ଆଉ ପାହାଚ ଉପରେ ଅନେକ ପିଲା ଏତେ ବେଳକୁ ରୁଣ୍ଡ ହୋଇଗଲେଣି- ସେ ସମସ୍ତେ ଏ ସବୁ କାମକୁ ଅନେଇ ରହିଛନ୍ତି । ମାତ୍ର ମୁଁ ମାଟାଓ୍ୱେରୋ ମାଟାରିନାକୁ ସେମିତି ଟାଣି ଧରିଥାଏ । ଶେଷରେ ଶ୍ରୀ କେ. ବର୍ଷାରେ ତିନ୍ତି ତିନ୍ତି ଆସୁଥିବା ଦେଖିଲି । "ଏ ଟୋକାକୁ ଆପଣ କିଛି କହନ୍ତୁ ବୋଲି ମୁଁ ଚାହେଁ ।" ମୁଁ କହିଲି, "ଦିନ ସାରା ଆଜି ଏଇ ଦୁଷ୍ଟ ଖେଚଡ଼ାମୀ କରିଛି । ଆଉ ମୋତେ ମଧ୍ୟ ଅତି ଖରାପ ବ୍ୟବହାର ଦେଖେଇଛି ।" ମୁଁ ତାକୁ ତାଙ୍କ ଜିମା କରିଦେଲି ।

ଏଇଟା ଲେଖିବାରେ ମୁଁ ଖୁସି ନୁହେଁ । କିନ୍ତୁ ଯାହା ଯେମିତି ହେଲା ସେଥିରେ ମୁଁ ବା କିପରି ଖୁସି ହୋଇଥାନ୍ତି ? ଏଥିପାଇଁ ମୁଁ ଅତିଶୟ ଲଜ୍ଜିତ । ଯେଉଁଠି ଭୁଲ୍ ହେଲା, ତା' ମୁଁ ଜାଣି ପାରୁଛି- ସେତେବେଳେ ରାଗରେ ମୁଁ ବିଚାରଶୂନ୍ୟ ହୋଇ ପଡ଼ିଥିଲି..... ।

ଦୁଇଦିନ ହେଲା ଗିସ୍‌ବୋର୍ଣ ହାଇସ୍କୁଲର ଅପେରା ଦେଖିବାକୁ ମୁଁ ଏଠାରେ ଅଛି । ମୁଁ ଏଠାରେ ଥିଲାବେଳେ ମାରିଅନ୍ ଓ ରାଙ୍ଗି ମୋ ଘରକୁ ଯାଇ ଦାଣ୍ଡ ଦୁଆରରୁ ରୋଷେଇ ଘରଯାଏଁ ସବୁ ସଫା କରି ଦେଇଛନ୍ତି । ରୋଷେଇ ଘର, ଗାଧୁଆ ଘର ଆଦି ସବୁ ଧୋଇ ଦେଇଛନ୍ତି । ଘରଟାକୁ ଦେଖିଲେ ଲାଗୁଛି ଏହା ସତେ ଯେମିତି ନୂଆ ଗଢ଼ା ହୋଇଛି । ସବୁ ଜିନିଷ, ଏପରି କି ସବୁ ଖଟ, ସବୁ ବଖରା, ଆଉ ମୋର ଅବାଗିଆ ପ୍ରସାଧନ ଟେବୁଲଟିକୁ ମଧ୍ୟ ସେମାନେ ନୂଆ କରି ଦେଇଛନ୍ତି । ଅକାଳେ ସକାଳେ ବ୍ୟବହାର ହେଉଥିବା ବାଳକମାନଙ୍କ ବଖରାଟି ମଧ୍ୟ ବାଦ୍ ପଡ଼ିନଥିଲା ।

ତା'ପରେ ପୁଣି ସେଇ ମାଟାଓ୍ୱେରୋ ବିଷୟ । ଡି.ଏଚ୍. ଲରେନ୍‌ସ୍ ବିଂଶ ଶତାବ୍ଦୀର ଜଣେ ବିଶିଷ୍ଟ ଇଂରେଜ କବି ଓ କଥାକାର । ନିଜ ରଚନାଗୁଡ଼ିକ ପାଇଁ ସେ ବେଶ୍ ବିବାଦାସ୍ପଦ । କହିଛନ୍ତି, "ପିଲାଟିଏ ଯଦି ଆପଣଙ୍କୁ ବିରକ୍ତ କରୁଛି, ତେବେ

ତାକୁ ମାଡ଼ ଦିଅନ୍ତୁ, କଠୋର ଭାବେ ମାଡ଼ ଦିଅନ୍ତୁ ଏଇଟା ତାର ଭଲ ପାଇଁ । ସେ ଯଦି ଅନ୍ୟମାନଙ୍କୁ ବିରକ୍ତ କରୁଛି, ତେବେ ତାକୁ ଠିକ୍ ବ୍ୟବହାର ଶିଖିବାକୁ ପଡ଼ିବ ।'' ତେବେ ଶ୍ରୀଯୁକ୍ତ ଡି.ଏଚ୍. ଲରେନ୍ସଙ୍କର ତ ନିଜର ପିଲା ନ ଥିଲେ, ତେଣୁ ଆମ ସମସ୍ତଙ୍କଠାରୁ ସେ ଏକ ଭିନ୍ନ ଧାରଣା ସ୍ପଷ୍ଟ ଭାବେ ପୋଷଣ କରିଥିଲେ । ଆମ ପିଲାଙ୍କ ସହିତ ଆମେ କେତେ ଗଭୀର ମମତାରେ ବନ୍ଧା । ମୁଁ ଜଣେ ସ୍ନାୟୁତତ୍ତ୍ୱବିତ୍‌କୁ ଜାଣେ । ସେ କହନ୍ତି, ''ଏଇ ଦି' ବରଷିଆ ଛୁଆଗୁଡ଼ିକ ଜଗତକୁ ଆସୁ ଆସୁ ଜଗତ ଉପରେ ତାଙ୍କର ଓଜନଟାକୁ ଚାପି ଦିଅନ୍ତି । ସେ ସମୟରେ ମାଡ଼ ହିଁ ଦରକାର । ଅନ୍ୟ କୌଣସି ଉପାୟରେ ସୁଧାରିବାକୁ ଚେଷ୍ଟା କଲେ ସେମାନଙ୍କ ମନରେ କେବଳ ଦୁଷ୍ଟ ଚିନ୍ତା ଗଜୁରିବ । ଠିକ୍ ସମୟରେ ମାଡ଼ ଦେଲେ ସବୁ ଦିଗରୁ ଭଲ ଫଳ ମିଳିବ ।'' ବ୍ୟକ୍ତିଗତ ଭାବେ ମୁଁ ମୋ ନିଜ ପୁଅମାନଙ୍କୁ ନେଇ ପରୀକ୍ଷା କରିଛି । ଆଉ ଦେଖିଛି ବିନା ତାଡ଼ନାରେ ତାଙ୍କୁ ଠିକଣା ବାଟରେ ଚଲେଇହୁଏ ନାହିଁ ।

ଏସବୁ ସତ୍ତ୍ୱେ ମୁଁ ଅନୁଭବ କରୁଛି ଯେ, ମୁଁ ଯେପରି ବ୍ୟବହାର ଦେଖେଇଲି, ସେ ଅନୁସାରେ ମାଟାଓ୍ୱେରୋର ମଧ ରାଗ ଦେଖେଇବାର ସେତିକି ଅଧିକାର ରହିଛି । ମୁଁ ଏଠାରେ ଆନ୍ତରିକ ଭାବେ ରଚନାତ୍ମକ ଶିକ୍ଷା ପ୍ରଣାଳୀରେ ଦେହ ଓ ମନର ସ୍ୱାଭାବିକ ଉନ୍ନତି ପାଇଁ ମୁଁ ଲାଗିପଡ଼ିଛି । ଗଠନମୂଳକ ବ୍ୟବହାର ଆପେ ଗଢ଼ି ଉଠିବାକୁ ମୁଁ ଆବେଗର ସହିତ କାମ କରି ଚାଲିଛି । ତଥାପି, ଅସଲ ସମୟରେ ସେଇ ସ୍ୱାଭାବିକ ପ୍ରତିକ୍ରିୟାକୁ ମୁଁ ଅସ୍ୱୀକାର କରୁଛି କିପରି ? କାହିଁକି ? ଏହା କେବଳ ଗର୍ବ, ଗର୍ବ !!

ଲଜ୍ଜାକର, ଅତି ଲଜ୍ଜାଜନକ !

ଆଶ୍ଚର୍ଯ୍ୟଜନକ ଭାବେ, ପାହାନ୍ତିଆ ଚାରି ଘଣ୍ଟା ବାଜିଲାଯାଏଁ ମୁଁ କେବଳ ସେଇ ଘଟଣାକୁ ନେଇ ଚିନ୍ତା କରୁଥିଲି । ଏ ବିଷୟ ଦୁଇଥର ଆଲୋଚନା କରିଥିବାରୁ ବୋଧହୁଏ ନିଦ ହେଲାନି । ଥରେ ଟମ୍‌ଙ୍କ ସାଥିରେ ଓ ଥରେ କେ.ଙ୍କ ସହିତ ମୋର ଆଲୋଚନା ହୋଇଥିଲା ।

କେହି ଜାଣନ୍ତି ନାହିଁ, ମୁଁ ବାଳିକାମାନଙ୍କ ସହିତ କାମ କଲାବେଳେ କିପରି ସବୁବେଳେ ସେମାନଙ୍କର ରାଜି ନହେବା, ମୁହଁ ଫୁଲେଇବା, ଚିଡ଼ି ଉଠିବା ଓ ଲୁହ ଗଡ଼େଇବା ମୋତେ ଦେଖିବାକୁ ପଡ଼େ । ଏ ଦିଗରେ ବାଳକମାନେ ମଧ ସମାନ । ମୋ ମତରେ ଏଇଟା ଆମ ନିଜର କାମ କରିବା ଢାଞ୍ଚା ଅନୁସାରେ ସେମାନେ

ବ୍ୟବହାର ଦେଖାଇଥାନ୍ତି । ତେବେ ଏଇଟା କେତେ ଦୂର ଠିକ୍, ତାହା ବିଚାରଯୋଗ୍ୟ । ୟୁରୋପୀୟ ଢାଞ୍ଚା ଅନୁସାରେ ଏଇଟା ଭୟଙ୍କର । କିନ୍ତୁ ମାଓରି ଚଳଣିରେ ବେଶ୍ ସାଧାରଣ, ସରଳ ଓ ସହଜ । ବାସ୍କେଟବଲ୍ ପଡ଼ିଆରେ:

''ଶ୍ରୀମତୀ ହେନ୍'ସନ୍, ମୁଁ ପାଉଲେଟ୍ ସହିତ ସ୍ଥାନ ବଦଳେଇବି ?''

''ନାଁ ।''

ଏହା ଶୁଣି ତା'ର ଲୁହ ଗଡ଼ିଲା ।

ଆଉ ଜଣେ କହିଲା, ''ହେଲେନ୍, ତୁ ଗୋଟେ ଠକ ।''

ଏଥର ବହି ଚାଲିଲା ଲୁହ । ତା' ସହିତ ଖେଳ ସରିଲା ଯାଏଁ ସେ ମନ ମାରି ରହିଥିଲା ।

''ଶ୍ରୀମତୀ ହେ-, ମୁଁ ଗୋଲ୍ ପାଖରେ ଖେଳିବାକୁ ଚାହେଁ । ପଡ଼ିଆ ମଝିରେ ରହି ରହି ମୋତେ ବିରକ୍ତ ଲାଗିଲାଣି ।''

''ନାଁ । ଯେ ପର୍ଯ୍ୟନ୍ତ ତମେ ତମ ସ୍ଥାନରେ ଖେଳିବା ଭଲ ଭାବେ ଶିଖିନ, ସେ ଯାଏଁ ସ୍ଥାନ ବଦଳେଇ ପାରିବ ନାହିଁ । ଏବେ ମଧ୍ୟ ତୁମେ ବଲ୍ ସହିତ ତୁମର ପାଦକୁ ଚଲାଉଛ ।''

କଥା ଶୁଣୁ ଶୁଣୁ ବଢ଼ିଲା ରାଗ । ମୁଣ୍ଡ ହଲେଇ କେତେ କ'ଣ ! ଆଉ ସମସ୍ତେ ଏହାକୁ ବେଶ୍ ସହାନୁଭୂତିର ସହିତ ଦେଖନ୍ତି, ପସନ୍ଦ କରନ୍ତି ।

ମୁଁ ଏ ବିଷୟ କେ.ଙ୍କ ସହିତ ଆଲୋଚନା କରିଥିଲି । ଆଉ ଏମିତି ଅଭିମାନୀ ଝିଅମାନଙ୍କ ପାଇଁ କିଛି ଗୋଟାଏ ଉପାୟ ସ୍ଥିର କରିବାକୁ କହିଥିଲି । କେ. କହିଲେ, ''ତାକୁ ସେଇକ୍ଷଣି ବାହାର କରିଦିଅ, ଆଉ ଅନାଥ ନାହିଁ । ତା' ସ୍ଥାନରେ ଅନ୍ୟକୁ ନିଅ ।''

ଏହି ଚିନ୍ତାର ଫଳ ଦେଖନ୍ତୁ:

''ଶ୍ରୀମତୀ ହେ, ମୁଁ ରାଙ୍ଗି ସହିତ ସ୍ଥାନ ବଦଳେଇ ପାରେ କି ?''

''ନାଁ ।''

ଏଥର ଲୁହ ନିଗାଡ଼ି ସେ ମୁହଁ ଫୁଲେଇ ରହିଲା ।

''ଠିକ୍ ଅଛି । ତୁମେ ଯାଅ । ତୁମ ଖେଳ ସରିଲା ।''

"ନାଇଁ, ନାଇଁ । ମୁଁ ଠିକ୍ ଅଛି, ଶ୍ରୀମତୀ ହେ- ।"

ବାଃ, ଭାରି ସହଜ ।

କିନ୍ତୁ ମୁଁ କେବେହେଲେ କହେ ନାହିଁ । "କାନ୍ଦ ନାହିଁ ।" କାରଣ ଏଇଟା ପ୍ରକୃତରେ କାନ୍ଦ ନୁହେଁ । ସେମାନେ ଯେତେ ଲୁହ ଗଡ଼ାଇଲେ ବି ମୁଁ ଖୁସି ଥାଏ, ଏହା ମତେ ଭଲ ଲାଗେ । ଏଇ ଛିଦ୍‌ଖୋର ମୁହଁଫୁଲା ଯୋଗୁଁ ସମସ୍ତଙ୍କର ଖେଳ ଖରାପ ହୁଏ । ଲୁହ ବେଶ୍ ସୁନ୍ଦର । ଆପଣ ଜାଣନ୍ତି, ଆପଣଙ୍କ ପାଇଁ ମଧ୍ୟ କ୍ଷଣେ ମାତ୍ର ସୂଚନା ଦେଇ ଦରକାର ପଡ଼ିଲେ ସେମାନେ ଲୁହ ଗଡ଼େଇ ପାରିବେ ।

ଆଉ ମୋ ଶିଶୁ ଶ୍ରେଣୀ ବିଷୟ । ଏମିତି ଗୋଟିଏ ଦିନ ମୁଁ ଭାବି ପାରିବିନି, ଯେଉଁଦିନ କଅଣ ହେଲେ ଗୋଟେ "ଫାଟି ପଡ଼ିଲା" ପରି ଘଟଣା ଘଟି ନ ଥିବ । ତେବେ ଏପରି ବିସ୍ଫୋରଣ ମଧ୍ୟ ବେଶ୍ ଶାନ୍ତ ସରଳ ଅବସ୍ଥା ଆଡ଼କୁ ଗଡ଼ିଯାଏ, ଆଉ ଅତି ଭଲ ଫଳ ଦେବାରେ ସକ୍ଷମ ହୁଏ । ଆଉ ସେଥିପାଇଁ ଲୁହ ଆଉ ଉତ୍ତେଜନା ତ ଅତି ମାମୁଲି ଦାମ୍ ! ଅବଶ୍ୟ ଯଦି ତାହାର ମୂଲ୍ୟାୟନ କରାଯାଏ ।



ମୁଁ ମୋର ପହିଲି ମାଓରି ପାଠ୍ୟ ପୁସ୍ତକ ଇହାକା ବହି ପ୍ରଥମ ଭାଗ ଶ୍ରୀଯୁକ୍ତ ଟ୍ରେମେଇନ୍‌ଙ୍କ ପାଖକୁ ପଠେଇଥିଲି । ଏଇଠି ଷାଠିଏ ପୃଷ୍ଠାର ଏକ ଶୁଦ୍ଧ ଲିଖନ, ତାଙ୍କ କାର୍ଯ୍ୟାଳୟରେ ସେଇ ବିଚିତ୍ର ଟାଇପ୍ ରାଇଟର୍‌ରେ ଶିଶୁ ଶ୍ରେଣୀ ପାଇଁ ଉପଯୁକ୍ତ ବଡ଼ ଅକ୍ଷରରେ ଝିଅଟିଏ ଟାଇପ୍ କରେ । ଛପା ପୁସ୍ତକଗୁଡ଼ିକ ତାଙ୍କଠାରୁ ପାଇଲାବେଳେ ମୁଁ ଯେ କେତେ ଖୁସି ହୋଇ ଯାଇଥିଲି ।

ପୁସ୍ତକର ପ୍ରଥମ ପୃଷ୍ଠାରେ ଛପା ପଦଗୁଡ଼ିକର ଉପରେ ମୁଁ ଛବି ଆଙ୍କି ଦେଲା ପରେ ମୋର ସହକାରୀ କୋଲୀନ୍‌ଙ୍କୁ ଦିଏ । ସେ ଆଉ ପାଞ୍ଚୋଟି ପୃଷ୍ଠାରେ ତା'ର ନକଲ କରି (ଆମେ ପ୍ରତି ପୁସ୍ତକର ଛଅ କିତା ତିଆରି କରୁଁ) ଛବିରେ ରଙ୍ଗ ଦିଅନ୍ତି । ଏ କାମ ସେ ଦକ୍ଷତାର ସହିତ କରନ୍ତି । ତେବେ ଏପରି ଭାବରେ ଆମେ ଅତି ଧୀରେ

ଧୀରେ ଆଗକୁ ଚାଲୁ । ମୁଁ ଏକା ଏକା ଏ ସବୁ କରି ପାରନ୍ତି ନାହିଁ । ମୁଁ ତ ନିତିଦିନିଆ ଜୀବନରେ ଚମତ୍କାରିତାକୁ ସବୁବେଳେ ଅନେଇ ବସିଥାଏ । ମୁଁ ତାହା ଆଶା କରେ । ପାଏ ବି ।

ଆଉ ଦିନେ ହଠାତ୍ ଶିକ୍ଷା ବୋର୍ଡ଼ର ଦଳେ ପରିଦର୍ଶକ ଆମ ପାଖରେ ପହଞ୍ଚିଗଲେ । ସେମାନେ କହିଲେ, ‘‘ହଠାତ୍ ଆମେ ସମସ୍ତେ ଆସିଗଲୁଁ ।’’ ‘‘ହଠାତ୍ ଆପଣମାନେ ଆସିଯାଇଥିବାରୁ ମୁଁ ବେଶି ଆନନ୍ଦିତ । ମୁଁ ଏଇ ଆକସ୍ମିକତାକୁ ଭଲପାଏ ।’’

‘‘ଏ ବାଟେ ଗଲାବେଳେ ଆପଣଙ୍କୁ ସାକ୍ଷାତ ନ କରି ଆମେ ଯାଇପାରିଲୁ ନାହିଁ ।’’

‘‘ଆପଣଙ୍କ ବିଷୟରେ ସବୁ କିଛି ଜାଣିବା ପାଇଁ ଆମେ ବିଶେଷ ଭାବେ ଆଗ୍ରହୀ । ଏବେ ଆମେ ଆପଣଙ୍କୁ ଜାଣିବାରେ ଲାଗିଛୁ ।’’

ମେରିଆନ୍ ପିଆନୋ ବଜାଉଥିଲା । ‘‘ଦି’ଜଣଙ୍କ ପାଇଁ ବହୁତ ବେଶି’’ ଗୀତର ସୁରରେ କୋଠରୀଟି ଭରି ଉଠିଥିଲା । ପିଲାଏ କାନ୍ଥର କଳାପଟାରେ, ଆଉ କେତେ ଜଣ ଟେବୁଲ ଉପରେ ଛବି ଆଙ୍କୁଥିଲେ । ପିଆନୋର ସୁରରେ ସଭିଏଁ ଏକାବେଳକେ ସ୍ୱର ମିଳେଇ ଦେଲେ । ମାତି ଗଲେ । ମୋ ମୁଣ୍ଡକୁ ଗୋଟେ ବୁଦ୍ଧି ଢୁକିଗଲା । ମୁଁ ଅତିଥିମାନଙ୍କୁ ପଚାରିଲି, ‘‘ଆପଣମାନେ ହୁଲା ନାଚ ଦେଖିବାକୁ ଚାହାଁନ୍ତି କି ?’’

‘‘ସେ ତ ଅତି ଆନନ୍ଦର କଥା ।’’ ତା’ପରେ ମୁଁ ପିଆନୋ ଆଡ଼କୁ ଧାଇଁଲି । ମୋତେ ସହକାରୀଟିଏ ମିଳିବା ଦିନଠାରୁ ମୁଁ ସତେଜ ହୋଇଉଠିଛି, ହାଲିଆ ହୁଏନି । ସବୁଆଡ଼େ ଧାଇଁ ଧାଇଁ ଘୂରି ବୁଲେ, ସବୁ କଥା ଦେଖେ । ପିଲାଙ୍କୁ ସତେଜ କରାଏ- ମୋର ସବୁଦିନିଆ ଢାଞ୍ଚାରେ, ଗୋଟିଏ ଦୁଇଟି ଗୀତ ଗାଇଦିଏ । ‘‘ଆପଣମାନେ ଆସିବେ ବୋଲି ଜାଣିଥିଲେ, ମୁଁ କେକ୍‌ଟିଏ ବନାଇ ରଖିଥାନ୍ତି ।’’ ଏଇମିତି ଚାଲିଥାଏ । ସେମାନେ ମଝିରେ ମଝିରେ ଭାଗ ନେଉଥିଲେ, ସୁବିଧା ଦେଖି ପଦେ ପଦେ ଗୀତ ଗାଉଥିଲେ । ତା’ପରେ ମୁଁ ହୁଲା ସୁରକୁ ଓଲ୍‌ହେଇ ଗଲି । ‘‘ଏଇ ତ ଟିକିଏ ହୁଲା, ହୁଲା, ହେ, ହା, ହେ...... ।’’ ଆଉ ସଭିଏଁ, ସେଠାରେ ଯିଏ ସବୁ ଥିଲେ, ଅଜାଣତରେ ମାତିଗଲେ,- କିଏ କିଏ ତାଳ ଅନୁସାରେ ହାତରେ ତାଳି

ପକାଉଥିଲେ, କେତେ ଜଣ ସ୍ୱର ମିଳେଇ ଗାଉଥିଲେ,........ ସଭିଏଁ ଥିଲେ କଳାକାର, ହୁଲାରେ ବିଭୋର । ଆଉ, ସେ ଭିତରେ ଆପଣ ଉପଭୋଗ କରିଥିବେ- ମାଟିଆ ଜେନିର ସୁନ୍ଦର ହାତ, ଆଉ ମାକେରେର ଥୁକୁଲୁ ଥାକଲ ଛୋଟ ଦେହ, ଆଉ ରେରେମୋଆନାର ଚକି ପରି ଘୂରୁଥିବା ଆଖି । କିନ୍ତୁ ତାରକା ତ କାହିଁ ନାହାନ୍ତି ! କୁଆଡ଼େ ଗଲା ୱାଇଓ୍ୱିନି ? ହଁ, ସିଏ ତ ଏଇ ସବୁ ତାରାଠାରୁ ବହୁତ ଉଚ୍ଚରେ... ଅସଲି ତାରକା । ସେ ଜାଣେ କେତେବେଳେ ମଞ୍ଚକୁ ଆସିବାକୁ ହୁଏ, ଆଉ କେତେବେଳେ ନୁହେଁ । ତେବେ ତାକୁ ହରେଇବା କଥା ନୁହେଁ, ତାକୁ ଡାକିବାକୁ ପଡ଼ିଲା । ମୁଁ ଡାକିଲି, ‘‘ୱାଇଓ୍ୱିନି ।’’ ଦେଖାଦେଲା ୱାଇଓ୍ୱିନି, ଚାଲି ଆସିଲା ନାଚି ନାଚି... ସର୍ବୋତ୍ତମ ଚଳନ୍ତି ହୁଲା ଭଙ୍ଗୀରେ । କି ପିଲା କି ଯୁବା, କି ମାଟିଆ କି ଗୋରା । ସଭିଏଁ ବିଭୋର । ମୁଁ ତ ଦେଖି ଆସିଛି । ତାଳି ମାରି ଗୀତ ଗାଉଥିବା ପିଲାଙ୍କ ଭିତରେ ନିଜକୁ ଝୁଲେଇ ଝୁଲେଇ, ହଲେଇ ନଚେଇ ଆନନ୍ଦ ବିଭୋର ହୋଇ ଉଠିଥିଲେ ସଭିଏଁ ଆପଣା ଛାଏଁ !! ତା’ର ଦୋଳି ଖେଳିଲା ପରିକା ଗତି ଆଉ ଭଙ୍ଗୀ ଯେ କୌଣସି ସମାବେଶକୁ ଆନନ୍ଦରେ ବୁଡ଼େଇ ଦେଇ ପାରିବ ।

ଅତିଥିମାନେ ବିଦାୟ ନେଇ ଚାଲିଯିବା ପରେ ହିଁ ମୋ ମୁଣ୍ଡକୁ ଚିନ୍ତା ଘାରିଲା । ଏମିତି କରିବାଟା ଉଚିତ୍ ହୋଇଛି ନା, ନାହିଁ ? ସେମାନେ ହେଉଛନ୍ତି ଶିକ୍ଷା ବୋର୍ଡର ସମ୍ମାନାସ୍ପଦ କର୍ମଚାରୀ । ଆମ ଶିଶୁ ଶ୍ରେଣୀକୁ ଆସିଥିବା ମହାନ ପରିଦର୍ଶକ । ତେବେ, ‘‘ ଆଗ କାମଟି କର, ପରେ ଶେଷକୁ ଚିନ୍ତା କର ।’’ ଏଇଟା ତ ମୋ ନୀତି । ଆସନ୍ତା ବୁଧବାର ଦିନ ଟାଇଫୋର୍ଡ ସହିତ ଆମର ମେଚ୍ । ସେଥିପାଇଁ ସମସ୍ତେ ଲାଗି ପଡିଥାଉଁ । ହଳଦିଆ ସ୍ୱେଟର ସହିତ ବ୍ଲେଜରର ମୁଣି ସିଲେଇ ଶେଷ କରାଯାଉଥାଏ । ଗତ ବାର ବର୍ଷ ଭିତରେ ଏଇ ପ୍ରଥମ ଥର ପାଇଁ ମୁଁ ଖେଳାଳୀ ଦଳ ସାଥିରେ ଯିବି । ଏହା ମୁଁ ଚାହେଁ । ସେଇଥିପାଇଁ ତ ଏଇ ତିନୋଟି ଦଳକୁ ମୁଁ ପ୍ରତିଦିନ ଅଭ୍ୟାସ କରାଉଥିଲି । ମୁଁ ନିଜେ ଦେଖିବାକୁ ଚାହେଁ । ମୁଁ ନିଜେ ସେମାନଙ୍କର ଭୁଲ ଭଟକା ଦେଖିବାକୁ ଚାହେଁ । କାରଣ, ସତ କହିବାକୁ ଗଲେ, ଆସନ୍ତା ଶୁକ୍ରବାର ଦିନ ହେଭ୍‌ଲକ୍ ନର୍ଥ୍ ଦଳ ଖେଳିବାକୁ ଆସିବା ଆଗରୁ ମୁଁ ମୋ ଖେଳାଳୀଙ୍କୁ ଗଢି ନେବା ଦରକାର । ଆଃ ! ମୁଁ ବେଶ୍ ଚାଲାକ୍ ହୋଇ ଉଠୁଛି ତ ! କଳ୍ପନା କରି ଦେଖନ୍ତୁ, ମୁଁ ଏଥର ବାସ୍କେଟ୍‌ବଲ୍ ବିଷୟରେ ଚିନ୍ତା କରୁଛି ।

ପୋଲି: ''ଶ୍ରୀମତୀ ହେଣ୍ଡରସନ୍, ଆପଣଙ୍କ ବୟସ କେତେ ?''
''କାହିଁକି ?''

''ଆଜି ସକାଳର ପ୍ରଶ୍ନୋତ୍ତର (କ୍ୱିଜ୍) ପ୍ରତିଯୋଗିତାରେ ମୋର ପାଳି ଅଛି । ମତେ ଲାଗୁଛି, ଏଇ ପ୍ରଶ୍ନଟି ବଢ଼ିଆ ହେବ । କିନ୍ତୁ ମୋତେ ଏହାର ଉତ୍ତର ବି ଜଣାଥିବା ଦରକାର ନା ।''

ଏବେ ମାଟାଓ୍ୱେରୋ ବିଷୟ । ସେ ଆମ ସ୍କୁଲ କମିଟି ସଭାପତିଙ୍କ ନାତି । ଜଣେ ମହିଳା ହିସାବରେ ସେ ଦିନର ଘଟଣାବେଳେ ମୁଁ ଏ ବିଷୟରେ ସଚେତନ ଥିଲି । ସେଥିପାଇଁ ମୁଁ ଅବଶ୍ୟ ଲଜ୍ଜିତ । ମୁଁ ଯେତେ ପୁରୁଷ ଲୋକଙ୍କୁ ଦେଖିଛି, ସେମାନଙ୍କ ଭିତରେ ଆମ ସଭାପତି ଲମ୍ବା- ଚଉଡାରେ ସମସ୍ତଙ୍କଠୁଁ ଅଧିକ, ଆଉ ତାଙ୍କ ନାତି ମାଟାଓ୍ୱେରୋ ଆକାରରେ କ୍ଷୁଦ୍ରତମ । କିନ୍ତୁ ସେମାନେ ଗୋଟିଏ ବିଷୟରେ ଏକା ପରି । ତା' ହେଲା ମିଛ କହିବାରେ । ହେଲେ, ମୁଁ ବି ମିଛ କହିବାକୁ ଭଲ ପାଏ । ଆପଣ ଜାଣିଥିବେ ନିଶ୍ଚୟ, ଏଥିପାଇଁ ଯଥେଷ୍ଟ କଳ୍ପନାଶୀଳ ହେବାକୁ ହୋଇଥାଏ । ଏହାଛଡା ମିଛ କହିଲେ ସାଧାରଣ ମାନ୍ଦା ସ୍ଥିତି ବଦଳରେ ବିଭିନ୍ନ ଉଦ୍ଦୀପକ ସ୍ଥିତି ଦେଖା ଦେଇଥାଏ ।

ସେ ଦୁର୍ଘଟଣା ପରେ ମାଟାଓ୍ୱେରୋ ତା'ଆର ଦିନ ସକାଳେ ସ୍କୁଲ ଫାଟକ ଯାଏଁ ଆସିଥିଲା । ସେଠାରୁ ସେ ଘରକୁ ଫେରିଗଲା । ମୁଁ ମୋ ଶୋଇବା ଘରେ ଦର୍ପଣ ପାଖରେ ଠିଆ ହୋଇଥିଲି । ତେଣୁ ଦେଖି ପାରିଲି । ପିଲାଙ୍କ ପଛରେ ଗୋଡେଇ ନଯିବା ମୋ ନୀତି- ଏପରିକି ଯିଏ ହୁଅନ୍ତୁ ଓ ଫଳ ଯାହା ହେଉପଛେ । ମାଟାଓ୍ୱେରୋ ସ୍କୁଲ କମିଟି ସଭାପତିଙ୍କ ନାତି,- ମୁଁ ଯେ ସେଥିପ୍ରତି ଆଦୌ ସଚେତନ ନଥିଲି, ତା' ନୁହେଁ । ତଥାପି ଜଣେ..... । ମୁଁ ଆଗରୁ ତାଙ୍କ ବିଷୟରେ କହିଥିଲି ନା ?

ମୁଁ ଦେଖିଲି, ମାଟାଓ୍ୱେରୋ ଚିନ୍ତା କଲାପରି ଘରମୁହାଁ ଫେରିଯାଉଛି । ରବର ଜୋତା, କୋଟ୍ ଆଦି ପିନ୍ଧି ସେ ଖ୍ରୀଷ୍ଟୋଫର୍ ରବିନ୍ ପରି ଦେଖା ଯାଉଥିଲା । ମୁଁ ତାକୁ ପଛରୁ ଡାକିଲି । ''ମାଟାଓ୍ୱେରୋ ସ୍କୁଲକୁ ଆସ । ତୁମେ ଠିକ୍ ହୋଇଯାଇଛ !''

ସେ ବୁଲି ପଡି ଚାହିଁଲା । ଅନାସକ୍ତ ଭାବେ ମୋର ତାଳୁରୁ ତଳିପା ଯାଏଁ ଆଖି ବୁଲେଇ ନେଲା । ମୁଁ ଅନୁଭବ କଲି: ସତେ ଯେମିତି ତା' ଆଖିରେ ମୁଁ ଗୋଟେ କଂକାଳମୟ ବୁଢୀ ଡାହାଣି । ତଥାପି ମୁଁ କହିଲି, '' ଫେରି ଆସ''- ଅବଶ୍ୟ ମୋ ସ୍ୱର ଧୀର ଥିଲା, ଆଉ ସେଥିରେ କମ୍ ଆସ୍ଥା ଥିଲା ।

ସେ କ୍ଷଣକ ପାଇଁ ଏକଥା ଚିନ୍ତା କଲା । ତା' ପରେ ବୁଲିପଡି ଘରମୁହାଁ ଚାଲିଲା ।

ତା' ପରେ....ମୁଁ ଯେତେବେଳେ ସ୍କୁଲରେ ଥିଲି, ସେତେବେଳେ ଷଣ୍ଢ ଗର୍ଜ୍ଜନ କଲା ପରି ଚିତ୍କାର କରି ପହଂଚି ଗଲେ- ଶ୍ରୀଯୁକ୍ତ ସଭାପତି ।

''ମୁଁ ଏବେ ସହରକୁ ଯାଉଥିଲି । ବାଟରେ ମାଟାଓ୍ୱେରୋକୁ ଘରକୁ ପୁଣି ଫେରି ଯାଉଥିବା ଦେଖିଲି । ଗତକାଲି ତା'କୁ ଧମକ ଦିଆ ଯାଇଥିଲା ବୋଲି ସିଏ କହିଲା । ଆଜି ସକାଳେ ସ୍କୁଲରେ ପହଂଚିବାରୁ ତା'କୁ ଶ୍ରୀମତୀ ହେଣ୍ଡରସନ୍ ଘରକୁ ଫେରିଯିବାକୁ ଏବଂ ସ୍କୁଲକୁ ଆଉ ନ ଆସିବାକୁ କହିଲେ ବୋଲି ସିଏ ମୋତେ କହିଲା ।''

''ସେଇଟା ଗୋଟେ ପିଲାଳିଆ କଥା, ପିଟର୍ ।'' ଶାନ୍ତି ଦୂତ କେ. ତାଙ୍କୁ ଶାନ୍ତ କରିବାକୁ, କହିଲେ ''ଶ୍ରୀମତୀ ହେଣ୍ଡରସନ୍ ସେପରି କିଛି କହି ନାହାନ୍ତି ।''

''ଆଚ୍ଛା, ସେଇଟା ସିଏ ମୋତେ ଯାହା କହିଲା । ଗାଡି ଧରିବାକୁ ଯାଉଥିଲା ବେଳେ ମୁଁ ତା'କୁ ଦେଖିଲି ।''

''କିନ୍ତୁ, ପିଟର୍ । ସିଏ ତ ଛୁଆଟିଏ । ଆପଣ ତା' କଥା ଅନୁସାରେ କାମ କରିବା କ'ଣ ଠିକ୍ ହେବ ?''

''ସେ ଗତ କାଲି ଧମକ ପାଇଥିଲା ବୋଲି କହୁଥିଲା ।''

''ହଁ, ଗତ କାଲି ସେ ଗାଳି ଶୁଣିଥିଲା । ଶିଶୁ ଶ୍ରେଣୀରେ ସେ ଅନ୍ୟମାନଙ୍କୁ ନିଷ୍ଠୁର ବ୍ୟବହାର ଦେଖେଇଥିଲା । ସେଥିପାଇଁ ମୁଁ ନିଜେ ତା'କୁ ଭାବିଚିନ୍ତି ସତର୍କ କରି ଦେଇଥିଲି ।''

ଏହା ପରେ ପିଲେ ମୋତେ କହିଲେ, ''ପିଟର୍ ଦୁଆର ମୁହଁରେ ଠିଆ ହୋଇଛନ୍ତି ।''

''ତାଙ୍କୁ ଭିତରକୁ ଆସିବାକୁ କୁହ ।''

କିନ୍ତୁ ସବୁ ଦିନ ପରି ସେ ଭିତରକୁ ଆସିଲେ ନାହିଁ । ସେ ଶ୍ରୀମତୀ ହେଣ୍ଡରସନ୍‌ଙ୍କୁ ଦେଖା କରିବାକୁ ଚାହାନ୍ତି ବୋଲି କହିଲେ । ତେଣୁ ମୁଁ ଗଲି । ଅତି ଛୋଟ ଛୋଟ ପିଲାମାନେ ଉପକରଣ ଲଗେଇ ଘର ଗଢୁଥିଲେ । ସେମାନଙ୍କ ମେଳ ଭିତରୁ ମୁଁ ତାଙ୍କୁ ଚାହିଁଲି । ସେ ଏତେ ବିବ୍ରତ ଦେଖା ଯାଉଥିଲେ ଯେ ତାଙ୍କୁ ଦେଖି ମୁଁ



ଚମକି ପଡିଲି । ତାଙ୍କ ଦେହଟି ଯେପରି ଓଚ୍ଛନିଆ, ହୃଦୟଟା ବି ସେମିତି । ଏହା ପୂରା ଛୋଡା ଯାଏଁ ଲମ୍ବିଛି । ସେ ମାଟାଓ୍ୱେରୋର ଲଞ୍ଚ୍ ଡବାଟି ଧରିଥିଲେ, "ମୁଁ ଟିକେ ମାଟାଓ୍ୱେରୋକୁ ଦେଖିବାକୁ ଚାହେଁ," ଗମ୍ଭୀର ଗଳାରେ ସେ କହିଲେ ।

" ସେ ଏଇଠି ଥିବ ।"

" ମୁଁ ତା'କୁ ଏବେ ତା' ର ଲଞ୍ଚ୍ ଡବାଟି ଟିକେ ଦେଇଦିଅନ୍ତି ।"

ସେ ନାତିକୁ ଦେଖିବାକୁ ନ କହି ମୋତେ କାହିଁକି ଡାକୁଥିଲେ- ଏଇ କଥା ଭାବି ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି । ସେ ତଥାପି ମୋତେ ଚାହିଁ ଥାନ୍ତି ।

ମୁଁ କହିଲି, " ମୁଁ ତା'କୁ ଡାକୁଛି ।"

ମୁଁ ତା'କୁ ଛାଡି ଆସିଲି । ମାଟାଓ୍ୱେରୋକୁ ଡାକିଲି । କିନ୍ତୁ ସେ ଦିନ ରାତିରେ ତାଙ୍କର ସେଇ ବିଷର୍ଣ ଅସହାୟ ମୁହଁ ( ତାଙ୍କ ସ୍ତ୍ରୀ ମରିଯାଇଛନ୍ତି । ସେ କଥା ଆପଣମାନେ ଜାଣନ୍ତି) ଶୋଇବା ପର୍ଯ୍ୟନ୍ତ ମୋର ମନେ ପଡୁଥିଲା ।

ଏହାର କେତୋଟି ରାତି ପରେ, ଦିନେ ସ୍କୁଲ କମିଟିର ସଭା ପରେ, ସେ ମୋର ବୈଠକଖାନାରେ ବସି ରହିଲେ ଅନେକ ସମୟ ଯାଏଁ । ଏଇଟା ତାଙ୍କର ଗୋଟେ ମାଓରି ଅଭ୍ୟାସ, ଆମମାନଙ୍କ ସହିତ ଥିଲା ବେଳେ ଦେଖାନ୍ତି ।

"ମୁଁ ବହୁତ ବିଳମ୍ବ କରିଦେଲି ।" ଭୂଲ୍ ମାନିଲା ପରି ସେ କହିଲେ ।

"ସେଥିରେ କ'ଣ ଅଛି ? ଆପଣ ଆଜି ଟିକିଏ ଲମ୍ବା ସମୟ ଶୋଇପଡନ୍ତୁ । ସବୁ ଠିକ୍ ହୋଇଯିବ ।"

"ମୋ କଥା ନୁହେଁ ।"

"ଆପଣଙ୍କ କଥା ନୁହେଁ ? କାହିଁକି ନୁହେଁ ?"

"ମୋତେ ସକାଳୁ ମୋ ନାତି ପାଇଁ ଜଳଖିଆ ତିଆରି କରିବାକୁ ପଡିବ ।"

''ମାଟାଓ୍ୱେରୋର ? କିନ୍ତୁ ତା' ମାଆ କ'ଣ ଢଳଖିଆ କରନ୍ତି ନାହିଁ ? ନ ହେଲେ ତା' ବାପା ?''

''ସିଏ ମୁଁ ସେକିଥିବା ରୋଟି ଭଲ ପାଏ । ତା' ରୁଚି ଅନୁସାରେ ମୁଁ ହିଁ ଠିକ୍ ସେକିଥାଏ ବୋଲି ସେ କହେ । ତା' ମାଆ ତା' ରୁଚି ଅନୁସାରେ ବନାଇ ପାରନ୍ତି ନାହିଁ ।''

କିଛି ଦିନ ଭିତରେ, ଗରଜିବା/ଗୁଜୁଗୁଜୁ ହେବା ପଦଟି ନୂଆ ପିଲାଙ୍କ ପାଖରେ ପହଞ୍ଚିଗଲା । ଏହା ଅବଶ୍ୟ ମୋ ମାଓରି ବହିରେ । ଆପଣ କେବେହେଲେ ଏଇମିତିକା ପଦ କୌଣସି ସମ୍ଭ୍ରାନ୍ତ ପରିବାରରେ ପାଇବେ ନାହିଁ - ଅତି ସାଧାରଣ, ତରଳ, ବିରକ୍ତିକର ଆଉ ଦି' ପାଖିଆ- ଇଂରାଜୀ ବହିରେ ଏହା ନଥାଏ । ମାଟାଓ୍ୱେରୋ ଏଇ ପଦଟିକୁ ନିରେଖି ଦେଖିଲା ଆଉ ବୁଝିଗଲା । ସେଇଟା ତା' ପାଇଁ ଭଲ ।

ଆଜି କାହୁ ଆମ ସ୍କୁଲକୁ ଆସିଲେ । ପିଲାଙ୍କୁ ଓ୍ୱାଇଏଟା (ଏକ ବିଶେଷ ମାଓରି ଗୀତ) ଶିଖାଇବାକୁ ଓ ଆସନ୍ତା ସପ୍ତାହରେ ଆସୁଥିବା ହେଭ୍‌ଲକ୍ ନର୍ଥ ସ୍କୁଲ ଦଳ ପାଇଁ ହାକା (ମାଓରି ଯୁଦ୍ଧ ନାଚ) ଅଭ୍ୟାସ କରେଇବାକୁ । ଆମେ କାହୁଙ୍କୁ ଅନୁରୋଧ କରିଥିଲୁ । କାହୁ ବେଶ୍ ଆଧୁନିକ ପୋଷାକ ପିନ୍ଧିଥିଲେ । ଉପରବେଳା ଠିକ୍ ସାଢେ ଦୁଇଟା ବେଳେ ଆସି ସେ ଆମ ଭିତରେ ଅଭ୍ୟାସ ଆରମ୍ଭ କରି ଦେଲେ । ମୁଁ ଅଧିକ ସମୟ ଧରି ଏହା ସହିପାରିଲି ନାହିଁ । କାରଣ ସରଳ ତାଳଲୟରେ ଗାଉଥିବା ଗୀତ ମଧ୍ୟ ଥରକୁ ଥର ଗାଇବାକୁ ମୋତେ ଭଲ ଲାଗେ ନାହିଁ । କିନ୍ତୁ ଆଜି ରହିଲି । ଆଜି କାମରୁ ମୁକ୍ତି ମିଳିଥିଲା । କୋଲୀନ୍ ଶିଶୁ ଶ୍ରେଣୀରେ ଥିଲେ । ଆଉ ଆଜି, ସେମାନେ ଧୈର୍ଯ୍ୟର ସହିତ, ନୂଆ ଗୀତଗୁଡ଼ିକ ଥରକୁ ଥର ଗାଉଥିବାର କାରଣ ବୁଝି ପାରିଲି । ସେଇଟା ହେଉଛି: ନୂଆ ଗୀତଟିକୁ ଭଲ ଭାବେ ଅଭ୍ୟାସ କରିବା ପାଇଁ ନୁହେଁ,- ଗୋଟେ ନିଶା, ସଂଗୀତର ମାଦକତା । ତା' ପୁଣି ଅତି ଆନନ୍ଦରେ ସେଇ ଗୋଟେ ସ୍ୱରରେ, ଘନ ଘନ ସେଇ ସରଳ ତାଳ-ଲୟରେ, ଗୀତଟିକୁ ଅନୁସରଣ କରି ଗାଇବା- ମାଓରି ଗଳାର ସ୍ୱରରେ ଅତି ଚମତ୍କାର ଭାବେ ତା'ର ଆବୃତ୍ତି, ମୋତେ ବି ଯେପରି ନିଶାସକ୍ତ କରିଦେଲା । ସେଇ ଗାନରେ ମୁଁ ବି ମିଶିଗଲି, ବସିଗଲି ସେଇଠି । କାହୁଙ୍କର ଗିଟାର୍ ଲହର ସହ ସ୍ୱର ମିଳେଇ କଳାପଟାରେ ଲେଖାଥିବା ମାଓରି ପଦଗୁଡ଼ିକ ଗାଉ ଗାଇ ମୁଁ ଭାବି ଚାଲିଥିଲି ।

ଏଇଟା ଥିଲା ଚମତ୍କାର ଉଦାହରଣ, ମାଓରି ସଂପ୍ରଦାୟ ଦଳଗତ ମନରେ କାମ କରୁଥିବାର ଏକ ପ୍ରଦର୍ଶନୀ । ସେମାନେ ସମସ୍ତେ ମିଶି ଜଣେ ଗାଇଲା ପରି ଗାଉଥିଲେ । କାହୁ ଥିଲେ ଯେପରି ସେଇ ଜଣକର ହୃଦୟ ଓ ସେହି ଜଣକର ତାଳ ଲୟ-ଲାଗୁଥିଲା ସମସ୍ତେ ଯେପରି ଜଣେ ।

ମୁଁ ଧୈର୍ଯ୍ୟର ସହିତ ଏଇ ନୂଆ ଗୀତଟି ଶିଖିବାରେ ଲାଗି ପଡ଼ିଥିଲି । ଯଦି କେତେବେଳେ କାହୁ ପହଞ୍ଚି ନପାରନ୍ତି, ତେବେ ମୁଁ କାମଟିକୁ ଚଳେଇ ନେଇ ପାରିବି - ଏଇ ଉଦ୍ଦେଶ୍ୟରେ । କିନ୍ତୁ ମୋର ଏ ବିଚାର ଭୁଲ ଥିଲା । କାହୁ ଯେପରି ତାଙ୍କ ଗଳାରୁ ସେ ସଙ୍ଗୀତର ଧାରା ବୁହାଇ ଦେଉଥିଲେ,ମୋ ପକ୍ଷେ ତା' ସହଜ ନଥିଲା ।

ତା'ର କାରଣ: ଅତି ସରଳ - ମୁଁ ମାଓରି ନୁହେଁ ।

ଆଉ ସେଥିପାଇଁ ଅଭ୍ୟାସ କରିବାକୁ ଯିବା ମୋ ପାଇଁ ଦରକାର ହେଲା ନାହିଁ ।

### *ପହିଲି ପୁସ୍ତକ: ପଠନ*

### *ଫେବୃଆରୀ ମାସରେ ନୂଆ ଆସିଥିବା ପିଲାଙ୍କ ପାଠୋନ୍ନତି*

| | |
|---|---|
| ହାରୀ (ଅନେକ ଦିନ ଅନୁପସ୍ଥିତ) ... | ୩ଟି ପଦ (ଶବ୍ଦ) |
| ପେଟୀ (ଏବେ ଜାଣି ପାରିଲୁ ଯେ ସେ 'କାଲ') | ୧୨ଟି ପଦ |
| ବ୍ଲୋକମ୍ (ଶିଶୁ ସୁଲଭ ସ୍ୱଭାବ ଆହୁରି ରହିଥିଲା) | ୧୦ଟି ପଦ |
| ୱିକୀ (ବେଶ୍ ମାନ୍ଦା) ୧୨ଟି ପଦ | |
| ମାର୍କ୍ (ସାଧାରଣ ୟୁରୋପୀୟ, ଉପସ୍ଥାନ ଭଲ) | ୪୬ଟି ପଦ |
| ଟେମ୍ (ଜଣେ ବିଶୁଦ୍ଧ ମାଓରି, ମେଧାବି) | ୬୮ଟି ପଦ |

ମୁଁ ନିଶ୍ଚିତ ଭାବେ ସ୍ଥିର କରିନେଲି ଯେ, ୟୁରୋପୀୟମାନଙ୍କୁ ଇଂରାଜୀ ବହି ଏବଂ ମାଓରିମାନଙ୍କୁ ଇହାକା ମାଓରି ବହି ଦ୍ୱାରା ପଢ଼ାଯିବ । ଏହାଦ୍ୱାରା ପାଠ୍ୟ ପୁସ୍ତକ ଦୁଇ ଗୁଣ ଲୋଡା ହେବ । କିନ୍ତୁ ତା' ଛଡ଼ା ଆଉ ବାଟ ନାହିଁ । ଗୋରା ପିଲାମାନେ ଗୋରା ବହି ଓ ମାଟିଆ ପିଲେ ମାଟିଆ ମାଓରି ବହିକୁ ଭଲ ପାଆନ୍ତି । ସେମାନେ ଏ କଥା କହନ୍ତି । ଆଉ ସେମାନଙ୍କ କହିବା କଥା ସତ ବୋଲି ଆମ ହାତରେ ତ ଯଥେଷ୍ଟ ପ୍ରମାଣ ରହିଛି ।

ମୁଁ ଭାବୁଛି, ଯେତେ ଶୀଘ୍ର 'ଅସଲି' ବହିଟିଏ ପିଲା ହାତରେ ଦିଆଯିବ, ସେତେ ଶୀଘ୍ର ସେମାନେ ଅଧିକ ପଦ ଶିଖି ପାରିବେ । ବହିଟି ହାତରେଧରି ଅନୁଭବ କରିବା, ଓଲଟ ପାଲଟ କରି ଦେଖିବା ଓ ଛବିରୁ ଅର୍ଥ ବୁଝି ନେବା - ଏସବୁ ପିଲାକୁ ଉତ୍ସାହିତ କରେ । ଏ ଯାଏଁ ମାଓରି ବହି ଛପା ହୋଇ ପାରି ନଥିଲା । ଏବେ ଛପା ହେଲା । ମୁଁ ମାଓରି ପିଲାଙ୍କ ହାତରେ ଇହା'କା ବହି ଏବେ ଦେଇଛି; ଆଉ ସେମାନେ ଅଧିକ ପଦ ଶିଖି ପାରିବେ ବୋଲି ଆଶା କରୁଛି । ଏଇ ସମୟରୁ ଗୋଟିଏ ଗୋଟିଏ ପଦ ଅଧିକା ଶିଖି ପାରିଲେ ଯଥେଷ୍ଟ ଭଲ ଉନ୍ନତି ହେବ ।

ମୋତେ ଦୁଃଖର ସହିତ ଲେଖିବାକୁ ପଡୁଛି ଯେ, ମାର୍କ୍‌କୁ ପ୍ରଥମରୁ ଇଂରାଜୀ ବହି ଦେଇଥିଲେ ସେ ଆହୁରି ଅଧିକ ପଦ ଶିଖିପାରିଥାନ୍ତା । ତା'କୁ ପହିଲେ ମୁଁ ଇହା'କା ବହିଟିଏ ଦେଇଥିଲି ।

ଖେଳ ସମୟ । 'କ' ଦଳ ଶିଶୁ ଶ୍ରେଣୀରେ ମସିଣା ଉପରେ ବସିଥିଲେ । ସେମାନେ ବେଶ୍ ଶାନ୍ତ ଆଉ ଗମ୍ଭୀର । ଏହାର କାରଣଟା ମୁଁ ଜାଣିନି ।

''ମୁଁ ଦୁଃଖିତ'', ମୁଁ କହିଲି, ''ହେଲେନ୍‌କୁ ମୋତେ ଦଣ୍ଡ ଦେବାକୁ ପଡ଼ିବ ।'' ହେଲେନ୍ ବଡ଼ ପାଟିଆ ଆଉ ଆତ୍ମ-ବିଶ୍ୱାସ ଥିବା ପିଲା । ସେ ମୋ କଥା ଶୁଣି ହଠାତ୍ ଟିକିଏ ପଛକୁ ଘୁଂଚିଗଲା, ତା' ଦେହଟା ନାଲି ପଡ଼ିଗଲା । ତା'ର ଖରାପ ବ୍ୟବହାର, ମୁହଁ ଫୁଲେଇବା ଓ ଅବାଧ୍ୟତା ଯୋଗୁଁ ସେ ଖେଳର ଶେଷ ଭାଗରେ ଆଦୌ ଗୋଲ୍ କରି ପାରିଲା ନାହିଁ । ହାରୁହାରୁ ଜିତିଗଲା । ଝିଅଟିଏ କାନ୍ଦି ପାରେ । ଯେତେବେଳେ ଦୁଃଖ ଲାଗେ, ସେତେବେଳେ ଆମେ ବି କାନ୍ଦୁ । ଆଉ ଖେଳରେ ତୁମେ ତୁମର କାମରେ ଭୁଲ ମଧ୍ୟ କରିପାର । କିଛି ଭୁଲ୍ କରି ପାର । ସେଇଟା ବି ଠିକ୍ । ତୁମେ ପୁଣି ଶିଖି ନେବ, ସୁଧାରି ନେବ। କିନ୍ତୁ ମୁହଁ ଫୁଲା ! ନା । ତୁମେ ହେଡ୍‌ଲକ୍ ମେଚ୍‌ରେ ଖେଳି ପାରିବ ନାହିଁ ହେଲେନ୍, ତୁମକୁ ତ ଦଳରୁ ବାହାର କରି ଦେଇଥାନ୍ତି । କିନ୍ତୁ ତୁମେ ଜଣେ ଭଲ ଝିଅ । ବର୍ଷସାରା ଭଲ କାମ କରିଛ । ଜଣେ ଅତି ଭଲ ବାଳିକା ଆଉ ମୋତେ ବହୁତ ସାହାଯ୍ୟ କରିଛ । ଏସବୁ କାରଣରୁ ମୁଁ ତୁମକୁ ଆଉ ଗୋଟେ ଥର ସୁଯୋଗ ଦେବି । ତା' ପରେ ହେବାକୁ ଥିବା ପାକି-ପାକି ଖେଳରେ ଖେଳିବାକୁ ତୁମକୁ ଅନୁମତି ଦେବି, ଆଉ ତୁମେ କିପରି ବ୍ୟବହାର କରୁଛ, ଦେଖିବି ।''

ଏହା ପୂର୍ବରୁ ମୁଁ ବିଶେଷ ଭାବେ ବିଚଳିତ ହୋଇ ପଡ଼ିଥିଲି । ଭାବିଥିଲି, ସେ ତା'ର ଉଚ୍ଚ ସ୍ୱର ଓ ଲମ୍ବା ଜିଭରେ ରଡ଼ି ଛାଡ଼ି ମୋ ଆଡକୁ ମାଡ଼ି ଆସିବ । କିନ୍ତୁ

ମୋର ଏ ବିରୋଧରେ ସେ ଯେପରି ଚୁପ୍‌ଚାପ୍ ଓ ପୂରା ସଂକୁଚିତ ହୋଇଗଲା । ମୁଁ ତ ସ୍ୱପ୍ନରେ ମଧ୍ୟ ଏହା ଭାବି ପାରି ନଥିଲି ।

ଜଣେ ଆଉ ଜଣକ ପାଖକୁ ବଲ୍ ପଠାଇ ଖେଳିବାକୁ ମୁଁ 'ଖ' ଦଳର ଅଭ୍ୟାସ କରାଉ ଥିଲି । ଭଲ ଖେଳ ଦେଖାଇ ପାରୁ ନଥିବାରୁ ଜେନ୍ ହେମଣ୍ଟ ଚୁପ୍‌ଚାପ୍ ଠିଆ ହୋଇ ରହିଲା । ଏଇ ହେମଣ୍ଟପରି ଝିଅମାନେ କେବଳ ନିଜର ବାହାଦୁରୀ ଦେଖାଇବାକୁ ଚାହାନ୍ତି । ନିଜକୁ ସେ ସୁଧାରି ନେବ ଭାବି ମୁଁ ତା'ର ମୁହଁ ଫୁଲାକୁ ପହିଲେ ଏଡ଼ିଦେଇଥିଲି, ରାଗି ନଥିଲି । କିନ୍ତୁ ଲିଲି ପାଟିକରି କହିଲା, "ଜେନ୍ ତୁ କାହିଁକି ଖେଳୁ ନାହୁଁ ?" ମୁଁ ହୁଇସିଲ୍ ବଜେଇଲି, ତା'କୁ ଚାହିଁଲି ।

"ତୁମେ ଭିତରକୁ ଯାଅ । ଖେଳ ବନ୍ଦ କର । ମୁହଁ ଫୁଲାଇଲେ ଚଳିବ ନାହିଁ ।" ହେମଣ୍ଟ ଟିକିଏ ବି ହଲିଲା ନାହିଁ । ସେ ପ୍ରତିଆକ୍ରମଣ କରିବାକୁ ଚେଷ୍ଟା କଲା । ଅଭ୍ୟାସଗତ ବଡ଼ ପାଟିରେ କାନ୍ଦି ଉଠି ସେ ଲିଲି ଆଡ଼କୁ ମୁହେଁଇଲା । "ମୋତେ ଆପଣ ସେପରି କହିବେ ନାହିଁ; ମୋତେ ଆପଣ ସେମିତି କାହିଁକି କହିଲେ ? ମୋତେ ପୁଣି ଆପଣ ସେପରି କହିବେ ?" ପା' (ମାଓରି ଗାଆଁ)ରେ ଧାଡ଼ି ବାନ୍ଧି ରାଗ ଦେଖେଇ ହେବାର ଏକ ଅବିକଳ ନକଲ ଏଇଟା । ଲିଲି କେବଳ ହେମଣ୍ଟ ଖେଳୁ ନଥିବା ଦେଖି ଯାହା କହିଥିଲା । ସେ ଆଉ କିଛି କହିଲାନି ।

"ଭିତରକୁ ଯାଅ ।"

ଜେନ୍ ତଥାପି ପ୍ରତି-ଆକ୍ରମଣର ଚେହେରା ଦେଖାଉ ଥିଲା ।

"ଲୋଟସ୍, ଶୀଘ୍ର ଯାଇ ଶ୍ରୀ ହେଣ୍ଡରସନ୍‌କୁ ଏଠାକୁ ଡାକି ଆଣ ।"

ହେମଣ୍ଟର ଲୁହ ବୁହେଇବା ଏବଂ ଦୋଷ ଦେବାର ଆକ୍ରମଣ ଭାବ ପୂରା ଫୁଟି ଉଠିଲା ବେଳକୁ ଶ୍ରୀ କେ. ପାହାଚ ଦେଇ ଆସୁଥିଲେ ।

"ଶ୍ରୀ ହେଣ୍ଡରସନ୍, ହେଇଟି ଏ ଝିଅ; ମୁହଁ ଫୁଲଉଛି ।

"ମୋତେ ଆପଣ ଏପରି କହିବେ ନାହିଁ । ଲିଲି ! ଇଏ କି ବାଟ... ।"

ଶ୍ରୀ କେ. କହିଲେ, "ଭିତରକୁ ଯାଅ ।"

ପ୍ରଥମ ଥର ପାଇଁ ହେମଣ୍ଟ ଛୁଆ ନିଜ ମନ ଅନୁସାରେ କାମ କରିବାକୁ ସୁବିଧା ପାଇଲା ନାହିଁ । ଟମ ଟମ ହୋଇ ଭିତରକୁ ଗଲା । ତେଣିକି ଆମେ ଆମର ଖେଳରେ ମନ ଦେଲୁ ।



''ଯେଉଁମାନେ ବୁଣେଇ କରୁଛ, ହାତ ଟେକ ।'' ଶ୍ରୀ କେ.ଙ୍କ ବଡ଼ ପିଲାଙ୍କ ଶ୍ରେଣୀ ପରିଦର୍ଶନ କରି ମୁଁ କହିଲି ।

ଅଳ୍ପ କେତୋଟି ହାତ ଉପରକୁ ଉଠିଲା । ଜଣେ ଦି'ଜଣ ବିପଦ ଠଉରେଇ ପାରିଥିଲେ, ଭଲ ଭାବେ ଜାଣିଥିଲେ । ଅବିକଳ ହେମଣ୍ଟ ମତିଗତି ।

''ତୁମ ବୁଣେଇ କାହିଁ, ୱିନୀ ?''

''ଘରେ ଅଛି, ଶ୍ରୀମତୀ ହେଣ୍ଡରସନ୍ ।''

''ତୁମର କାହିଁ, ଜୀନ୍ ?''

''ଘରେ, ଶ୍ରୀମତୀ ହେଣ୍ଡରସନ୍ ।''

ରୋଣ୍ଡାକୁ ଭଲ ଲାଗିଲାନି । ସେ ବହିଟିଏ ଉଠେଇ ପଢ଼ିବାରେ ଲାଗିଲା ।

''ନା, ସେପରି କରନା,'' ଶ୍ରୀ କେ. କହିଲେ । ''ଶ୍ରୀମତୀ ହେଣ୍ଡରସନ୍ କହିଲାବେଳେ ବହି ପଢୁଛ ?'' ସେ ତାକୁ କଡା ଧମକ ଦେଇ ବାହାର କରି ଦେଲେ । ଅବଶ୍ୟ ରୋଣ୍ଡା ଠିକ୍ ଭାବେ ଆଦେଶ ପାଳନ କଲା । ଅଧିକାଂଶ ମାଓରିଙ୍କ ଚମ

ବେଶି ମୋଟା । ଯେ କୌଣସି ଘଟଣାରେ ଧମକ ଚମକ ପାଇବାରେ ସେମାନେ ଅଭ୍ୟସ୍ତ । ଯେଉଁ କେତୋଟି ନୀତି ନିୟମ ପ୍ରତି ସେମାନଙ୍କର ସମ୍ମାନ ରହିଛି, ଏଇଟା ସେ ଭିତରୁ ଗୋଟିଏ । ମୁଁ ମୋ କାମରେ ଆଗେଇ ଚାଲିଲି । ସର୍ଦ୍ଦି ଯୋଗୁଁ ମୁଁ ଟିକେ ଅସୁସ୍ଥ ଥାଏ । ଆଉ ମୋର ମନଟା ମଧ୍ୟ ପୂରା ବିକ୍ଷେଇ ଯାଇଥାଏ ।

"ତୁମ ବୁଣେଇ କାହିଁ, ହେଲେନ୍ ?"

" ମୁଁ ବାସ୍କେଟ୍ ବଲ୍ ପଡ଼ିଆରେ ବୁଣୁଥିଲି । ଜଣେ ପୁଅ ଧାଇଁ ଆସି ମୋତେ ଧକ୍କା ଦେଲା । ତା' ଯୋଗୁଁ ମୋ ଛୁଂଚି ଭାଙ୍ଗିଗଲା ।

"ତାହା କେଉଁଠି ଅଛି ?"

"ଘରେ ଅଛି, ଶ୍ରୀମତୀ ହେଣ୍ଡରସନ୍ ।"

"ତୁମେ ତ ବୁଣେଇ ନେଇଛ, ରାଚେଲ୍ ? ତୁମେ କାହିଁକି ହାତ ଉଠେଇନ ?" ଧୀରେ ଧୀରେ ତା' ହାତ ଉପରକୁ ଉଠିଲା ।

"ତୁମର କେଉଁଠି ଅଛି,ରୋଣ୍ଡା ?"

"ଘରେ ।"

"ତୁମର କେଉଁଠି ଅଛି, ନେଟା ?"

"ସ୍କୁଲରେ ଅଛି, ଶ୍ରୀମତୀ ହେଣ୍ଡର୍ସନ୍ ।"

ମୁଁ ମୋ ପଖାରେ ଠିଆ ହୋଇଥିବା ଲୋକଙ୍କ ଆଡ଼କୁ ବୁଲିଲି । ସେ ଆଉ ମୋର ସ୍ୱାମୀ ନଥିଲେ । କିନ୍ତୁ ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ । "ଶ୍ରୀ ହେଣ୍ଡରସନ୍ । ଏ ଝିଅମାନେ ଜାଣନ୍ତି ଯେ ପ୍ରତିଦିନ ସାଢ଼େ ଦୁଇରେ ସେମାନଙ୍କ ବୁଣେଇ ଶ୍ରେଣୀ ହୁଏ । କିନ୍ତୁ ସେମାନେ କ୍ୱଚିତ୍ ଶ୍ରେଣୀକୁ ଆସନ୍ତି । ସ୍କୁଲକୁ କିନ୍ତୁ ବୁଣେଇ ଜିନିଷ ଆଣନ୍ତି ନାହିଁ । ମେ' ମାସର ଛୁଟି ପୂର୍ବରୁ କେତେ ଜଣ କାମ ଆରମ୍ଭ କରିଛନ୍ତି । କିନ୍ତୁ କେହି ବି ଏବେ ସୁଦ୍ଧା କାମ ପୂରା କରି ନାହାନ୍ତି । ତେଣୁ ସାଢ଼େ ଦୁଇର ଶ୍ରେଣୀକୁ ଯେଉଁମାନେ ବୁଣେଇ ଜିନିଷ ନ ଆଣିବେ, ସେମାନଙ୍କ ସହିତ ଆପଣ ଟିକେ କଥା କୁହନ୍ତୁ ।"

"ମୁଁ ନିଶ୍ଚିତ ଭାବରେ ଏହା କରିବି ।" ସେ ସମସ୍ତଙ୍କ ନାଆଁ ଟିପି ନେଲେ ।

ମୋ ମୁଣ୍ଡ ଅଧିକରୁ ଅଧିକ ଗରମ ହୋଇ ଉଠୁଥିଲା । ମୁଁ ଏହା ଅନୁଭବ କରୁଥିଲି । ଆଉ ତା'ର ବିପଦ କ'ଣ ହୋଇପାରେ, ଜାଣିବାକୁ ଚେଷ୍ଟା କରୁଥିଲି । ଉଚ୍ଚ ଶ୍ରେଣୀର ବହୁତ ବଡ ପିଲା କୋଠରୀଟିରେ ଯେପରି ଭରି ହୋଇ ବସିଥିଲେ ।

''ଉଲ୍ ଦିଆଯାଇଛି । ଛୁଂଚି ଯୋଗାଇ ଦିଆଯାଇଛି । ସମୟ ଠିକ୍ କରାଯାଇଛି । ତା'ଛଡ଼ା ବୁଣେଇ ବିଷୟରେ ସବୁ କିଛି ଜାଣିଥିବା ଜଣେ ଶିକ୍ଷୟିତ୍ରୀ ଏଠି ଅଛନ୍ତି । ତଥାପି ତୁମେମାନେ ବୁଣେଇ କରି ପାରୁନ । ଜଣେ ବି ଝିଅ ତା ସୁଏଟର୍ ପୂରା ବୁଣି ପାରିନି । ତୁମେ ସବୁ..... '' ଗତ ଅନେକ ବର୍ଷର ଲମ୍ବା ଅଭିଜ୍ଞତାରୁ ସବୁଠାରୁ ଅଧିକ ଆଘାତ କଲା ପରି ଜାଣିଥିବା ପଦ ଭିତରୁ ଗୋଟିଏ ମୁଁ ଖୋଜୁଥିଲି । ''ତୁମେମାନେ ସବୁ..... ନିପଟ ମୂର୍ଖ ।''

ମୋ ମନର ଅବସ୍ଥା ଯଥେଷ୍ଟ ବିଗିଡ଼ି ଯାଇଥିଲା । ମୋତେ ନିଜକୁ ଯଥାଶୀଘ୍ର ରୋକିନେବା ଦରକାର ଥିଲା ।

''ଏଇ ବୁଣେଇ ଆସନ୍ତା ଶୁକ୍ରବାର ସୁଦ୍ଧା ସରିବାକୁ ହେବ । ନହେଲେ ତୁମମାନଙ୍କୁ କଠୋର କଥା ଅପେକ୍ଷା ଅଧିକ କିଛି ଭୋଗିବାକୁ ପଡ଼ିବ ।'' ମୋର ସ୍ୱର ଥରିବାକୁ ଆରମ୍ଭ କରିଥିଲା । ମୁଣ୍ଡରେ ଆଉ ଗରମ ନଥିଲା । ତେଣୁ ମୁଁ ଚାଲି ଆସିଲି ।

ଆସନ୍ତା ଶୁକ୍ରବାର ଦିନ ହେଭ୍‌ଲକ୍ ସ୍କୁଲ ଦଳ ସହ ଆମ ସ୍କୁଲର 'କ' ଦଳର ଖେଳ ହେବାକୁ ଥିଲା । ତେଣୁ 'କ' ଦଳର ଅଭ୍ୟାସ ସେ ଦିନ ହେବାକୁ ଥିଲା । ମୁଁ ଆଗରୁ ଏହା ଠିକ୍ କରିଥିଲି । କିନ୍ତୁ ତା' ବନ୍ଦ କରି ଘରକୁ ଫେରିଲି । ନିଜକୁ କୌଣସି ପ୍ରକାରେ ଖୁସି କରିବାକୁ ଚେଷ୍ଟା କଲି । ନିଜର ବୟସକୁ ବିଚାର କରି ମୁଁ ଯେଉଁ ଖାଦ୍ୟପେୟ ନିଜ ପାଇଁ ସ୍ଥିର କରି ମାନି ଚଳୁଥିଲି, ଆଜି ତା'ର ଓଲଟା କଲି । ମନକୁ ଯାହା ପାଇଲା, ସେ ସବୁ ରାନ୍ଧିଲି । ଚା ତିଆରି କଲି । ଗତ କେତେ ବର୍ଷ ଧରି ମୁଁ ଲଢ଼ି ଆସିଛି ଅନ୍ୟମାନଙ୍କ ବିରୁଦ୍ଧରେ -ସେମାନଙ୍କ ସାଂପ୍ରଦାୟିକ ବିଦ୍ୱେଷ ଯେତେ ଅଧିକ ହୋଇପାରେ, ତା'କୁ ନେଇ ମୋ ଗଳାରେ ନିଜକୁ ମୁଁ କହିଲି, ''ମାଓରି !''

ନରମ କେକ୍‌ଟି ଭାରି ବଢ଼ିଆ ହୋଇଥିଲା । ମୋଗ ପାଗ ଦିଆ ଥଣ୍ଡା କଟ୍‌ଲେଟ୍ ବି ସେମିତି ସୁଆଦିଆ ଥିଲା । ସେପରି ସବୁ ରୁଚିକର ଓ ସୁସ୍ୱାଦୁ ହୋଇଥିଲା । ବହଳା ସର ସହିତ ଚା'କଥା କହିଲେ ନସରେ ! ସତେ ଯେପରି ମୁଁ ସ୍ୱର୍ଗ ଲୋକକୁ ଉଠିଗଲି !!

''ବିଚରା ମାଓରି !....''

ତା'ପର ଦିନ ସକାଳେ ମୁଁ ଶ୍ରୀ କେ.ଙ୍କୁ ଭେଟିଲି । ସେ ଏବେ ଆଉ ମୋର ସ୍ୱାମୀ ନ ଥିଲେ, ଥିଲେ ମୋର ପ୍ରଧାନ ଶିକ୍ଷକ । କହିଲି, ''ଦି' ଜଣ ଝିଅ ଥିଲେ ।

ସେମାନେ ବୁଣାବୁଣି ଶିଖୁଥିଲେ । କିନ୍ତୁ ଏତେ ବୁଦ୍ଧିଆ ଥିଲେ ଯେ ହାତ ମଧ୍ୟ ଉଠାଉ ନଥିଲେ । ଜେନ୍ ଆଉ କ୍ରିଷ୍ଟାଲ୍ ହେମଣ୍ଡ''।

ଆଜି ମୁଁ ଆଉ ସ୍କୁଲକୁ ଗଲି ନାହିଁ । କୋଲୀନ୍‌ଙ୍କ ହାତରେ ଶିଶୁ ଶ୍ରେଣୀର ଦାୟିତ୍ୱ ଦେଇ ଦେଲି । ଦି'ପହରରେ ପ୍ରଧାନ ଶିକ୍ଷକ ଘରକୁ ଭୋଜନ ପାଇଁ ଆସିଲେ । ସେ ଭିତରେ ସେ ଧୀର ଭାବରେ କହିଲେ, ''ଆଜି ତ ସ୍କୁଲରେ ଯନ୍ତ୍ର ତନ୍ତ୍ର ବୁଣେଇ ଚାଲିଛି ।''

ସେ ଥିଲେ ଜଣେ ଦକ୍ଷ ପ୍ରଧାନ ଶିକ୍ଷକ । ଯାହା ହେଉ, ଏଇଟା କଳ୍ପନା ବିଳାସର ଲେଖା ନୁହେଁ, ଏଇଟା ମୋର ଦିନଲିପି (ଡାଏରି)- ସତ ଘଟଣାର ବିବରଣୀ । ତେଣୁ ଏଇଟା ମୋ ପାଇଁ ସୁଖକର ନ ହେଲେ ବି ମୁଁ ନିଶ୍ଚୟ ଲେଖିବି । ଆଜି ସକାଳେ 'କ' ଦଳର କପ୍ତାନ୍ ମାରିଆନ୍‌କୁ ଡକାଇ ପଠାଇଲି ।

''ମାରିଆନ୍ ! ମୁଁ ତୁମ ଦଳର କେତେ ଜଣ ଝିଅଙ୍କୁ ଶୁକ୍ରବାର ସୁଦ୍ଧା ତାଙ୍କର ଖେଳ ପୋଷାକ ତିଆରି କରିବାକୁ କହିଥିଲି । କିନ୍ତୁ ତା' ସମ୍ଭବ ବୋଲି ମୁଁ ଭାବୁନି । ଡେଲାକୁ କୁହ,ମୁଁ ବୁଧବାର ଯାଏଁ ତା'କୁ ସମୟ ଦେବି । ଆଉ ଜେ'ନ୍ ତ ବହୁତ ପଛରେ ପଡ଼ି ଯାଇଚି । ତା'କୁ କହିବ, ତା'କୁ ତା'ପର ଶୁକ୍ରବାର ଯାଏଁ ସମୟ ଦେବି । ଏହା ସେମାନଙ୍କୁ କହିଦିଅ ।''

ଏହାର ଫଳାଫଳ ଯାହା ହେଉନା କାହିଁକି, ଏଇଟା ''କଥାଭାଷା ହେବା ଅପେକ୍ଷା ଢ଼େର ଅଧିକ,'' ନୁହେଁ କି ? ଇଏ ଥିଲା ସେହି ପିଲାଟି, ଯାହାକୁ ମୁଁ ସେଦିନ ଶ୍ରେଣୀରେ ଧମକଭରା ସ୍ୱରରେ କହିଥିଲି !

ମୁଁ ନିଜେ ବେଶ୍ ସନ୍ତୁଷ୍ଟ ।

ତେବେ, ପ୍ରକୃତରେ ସେମାନେ ଆଶ୍ଚର୍ଯ୍ୟଧରଣର ପିଲା । ନ ହେଲେ,ମୁଁ ସେମାନଙ୍କ ବିଷୟରେ ଏତେ ଚିନ୍ତା କରୁ ନଥାନ୍ତି କି ସେମାନଙ୍କ ବିଷୟରେ ଲେଖୁ ନଥାନ୍ତି । ଆସନ୍ତା କାଲି ହେଭଲକ୍ ଦଳ ଆସି ପହଂଚିବେ । ଆଜି କାହୁ ଠିକ୍ ନିରୂପିତ ସମୟରେ ଆସି ପହଞ୍ଚିଲେ । ହେଭଲକ୍ ଦଳପାଇଁ ଉଚିତ ସମୂହ ସଙ୍ଗୀତ ଅଭ୍ୟାସ ସାରିଲେ । ଏଥର କିଛି ଗୋଟେ ହୋଇ ପାରିବ ବୋଲି ଆଶା । ସବୁ ଦରକାରୀ ଜିନିଷ ଆଉ ଏତେ ଉଚ୍ଚକୋଟୀର ସଙ୍ଗୀତ ଶିକ୍ଷୟିତ୍ରୀ ମୁଁ କେବେ ଦେଖି ନଥିଲି । କ୍ରମେ ବଡ ପିଲାଙ୍କ ସଙ୍ଗୀତ ମଧ୍ୟ ଦିନକୁ ଦିନ ଅଧିକ ମଧୁର ହୋଇ ଉଠୁଛି .... ।

କେଉଁଦିନ ଆପଣ ଡେଲା ବଜାଉଥିବା, 'ହେରୀ ଲାଇମ୍ ଧୂନ୍', ବା ପୋଲିର 'ଦ'ଅମ୍ବ୍ରେଲାମାନ୍' (ଛତାବାଲା ମଣିଷ) ବା ଜର୍ଜର 'ସଙ୍ଗ୍ ଏଟ୍ ଟୁଇଲାଇଟ୍' (ସନ୍ଧ୍ୟା ଗୀତ) ଶୁଣି ଦେଖନ୍ତୁ । ଏଥି ସହିତ ବୁଣେଇ ମଧ୍ୟ ଏବେ ଢ଼େର ଅଧିକ ହୋଇଛି । ଏହା ବି. ମୋ ଚିଠିର କୌଣସି ଉତ୍ତର ଏବେ ସୁଦ୍ଧା ଦେଇ ନାହାନ୍ତି । ଆକର୍ଷଣୀୟ ଶୀତ ଦିନିଆ ସ୍କୁଲ ୟୁନିଫର୍ମ୍ ମଧ୍ୟ ବହୁତ ପରିମାଣରେ ପିଲାଙ୍କ ପାଖରେ ପହଞ୍ଚି ଯାଇଛି ।

ଗତକାଲି ହେଭ୍‌ଲକ୍ ନର୍ଥ୍ ବେଶ୍ ସଂଖ୍ୟାରେ ସଦଳବଳେ ଆସି ଏଠାରେ ରହିଥିଲେ । ଠିକ୍ ସେତିକିବେଳେ ଶ୍ରୀଯୁକ୍ତ ଲପ୍‌ଡେଲ୍ ଏବଂ ନିଉଜିଲାଣ୍ଡ ପ୍ରାଥମିକ ଶିକ୍ଷାର ବରିଷ୍ଠ ନିରୀକ୍ଷକ ଶ୍ରୀଯୁକ୍ତ ଟ୍ରେମେଇନ୍ ଆସି ପହଞ୍ଚିଗଲେ । ସେମାନେ ମୋ ମାଓରି ପାଠ୍ୟ ପୁସ୍ତକ ଦେଖିବାକୁ ଆସିଥିଲେ । ପୂରା ଉପରବେଳାଟି ସେମାନେ ମୋ ସହିତ ରହିଲେ । ତେଣେ, ମୋ ଖେଳ ଦଳଟି ତାଙ୍କର ଚମତ୍କାର ହଳଦିଆ ଖେଳ ପୋଷାକ ସହିତ ବୁଣେଇ ପୋଷାକ ପିନ୍ଧି ଲଢ଼େଇ କରୁଥିଲେ - ମୋ ଅନୁପସ୍ଥିତିରେ ।

ଆସନ୍ତା ସପ୍ତାହରେ ମୋ ପାଠ୍ୟ ପୁସ୍ତକ ଦେଖିବାକୁ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଫର୍ଣହିଲ୍ ସ୍କୁଲ୍‌କୁ ଆସୁଛନ୍ତି । ଏଇ ବଂଧୁମାନେ ତାଙ୍କୁ ଆଣୁଛନ୍ତି ଆସନ୍ତା ଗୁରୁବାର ଦିନ । ମୁଁ ପ୍ରକୃତରେ ବେଶ୍ ବିବ୍ରତ ହୋଇ ଯାଉଛି । ଶ୍ରୀଯୁକ୍ତ ଟ୍ରେମେଇନ୍ ପୁସ୍ତକଗୁଡ଼ିକର ଏକ ଆଦର୍ଶ କିତା ପାଇଁ କହିଲେ । ସେ ସେଗୁଡ଼ିକ ନେଇ ସୋମବାର ଦିନ ୱେଲିଂଟନ୍‌ଠାରେ ନିର୍ଦ୍ଦେଶକଙ୍କୁ ଦେବେ । ମୁଁ ଏବେ ସେଗୁଡ଼ିକୁ ପ୍ରସ୍ତୁତ କରୁଛି ।

ଏହା ହେଲା ମୋ ପୁସ୍ତକଗୁଡ଼ିକର ଚତୁର୍ଥ ସଂସ୍କରଣ । ଶ୍ରୀଯୁକ୍ତ ଟ୍ରେମେଇନ୍ ତାଙ୍କ ପାଇଁ ମଧ୍ୟ ଏକ ଏକ କିତା ମାଗିଛନ୍ତି । ମୁଁ ଉତ୍ତର ଦେଇଥିଲି, ''ଆପଣ ସେ କଥା କହିବା ଦରକାର ନାହିଁ ଶ୍ରୀ ଟ୍ରେମେଇନ୍ । ସେଇଟା ତ ଅନେକ ଦିନରୁ ମୋ ମନରେ ରହିଛି ।''

''ଧନ୍ୟବାଦ, ଶ୍ରୀମତୀ ହେଣ୍ଡରସନ୍ ।'' ସେ ଜଣେ ବେଶ୍ ଉଚ୍ଚା ମଣିଷ ।

ତାଙ୍କ ସହିତ ମୋ କଥାଭାଷା ବେଶ୍ ଆନନ୍ଦଦାୟକ ହୋଇଥିଲା । ସେ ସବୁକୁ ଲେଖି ରଖିବାକୁ ସମୟ ହେଲା ନାହିଁ । ସେଥିରୁ ଅଳ୍ପ କିଛି ଏଠାରେ ଦେଉଛି ।

ଆମେ ଆସନ୍ତା ସପ୍ତାହରେ ଏଠାକୁ ନିର୍ଦ୍ଦେଶକଙ୍କୁ ଧରି ଆସିବୁ ।

''ନାଇଁ, ନାଇଁ, ନିର୍ଦ୍ଦେଶକଙ୍କୁ ଆଣନ୍ତୁ ନାହିଁ ।''

''ଏଁ କାହିଁକି ? ସିଏ ତ ଜଣେ ଚମତ୍କାର ଲୋକ ।''

''ନିର୍ଦ୍ଦେଶକଙ୍କ ନାଆଁ ପଡ଼ିଲେ ମୋତେ ଡର ମାଡ଼େ ।''

''ଆପଣ ତାଙ୍କୁ କେବେ ଭେଟିଛନ୍ତି ?''

''ନା ।''

''ସେ ବିଷୟରେ ଭୟ କରିବାର କିଛି ନାହିଁ । ସେ ଏପରି ଜଣେ ଲୋକ, ଯିଏ ଛୋଟ ଛୋଟ କାମରେ ମଧ୍ୟ ଭଲ ଗୁଣ ଦେଖିଲେ ତା'ର ଗୁରୁତ୍ୱ ବୁଝନ୍ତି, ତା'ର ସମ୍ମାନ କରନ୍ତି ।''

''ମତେ ଗୁରୁତ୍ୱ ପାଇବାକୁ ଭଲ ଲାଗେନି ।''

ତା'ପରେ, ମୁଁ ଦେଖିଲି, ଶ୍ରୀଯୁକ୍ତ ଟ୍ରେମେଇନ୍ ତୁନି ପଡ଼ିଲେ । କିନ୍ତୁ ମାଓରି ପାଠ୍ୟ ପୁସ୍ତକ ବିଷୟରେ ତାଙ୍କର ଯୋଜନା ଆଉ ଉତ୍ତେଜନା ଗୋଟିଏ ବିରାଟ ଜାହାଜ ପୂରା ବେଗରେ ଗତିକଲା ପରି ଆଗେଇ ଚାଲିଥିଲା । ଉତ୍ସାହ ଉତ୍ତେଜନାକୁ ମାରି ଦେବାଟାକୁ କେତେ ଯେ ଘୃଣା କରେ ! ହେଲେ ଏବେ ମୁଁ ନିଜେ ଟିକିଏ ଟିକିଏ ବିରୋଧ କରିଦେଇ କାମ କରୁଛି । ସେଇ ହାତୀ ପରି ମଣିଷଟିର ମହାନ୍ ଗୁଣ ମୋତେ ଉତ୍ସାହିତ କଲା, ତାଙ୍କ ପ୍ରତି ବିଶ୍ୱାସ ଆଣିଦେଲା । ହାତ ଯୋଡ଼ି କହିଲି, ''ଶ୍ରୀଯୁକ୍ତ ଟ୍ରେମେଇନ୍, ଆପଣ ଯାହା କହିବେ, ମୁଁ ତା' କରିବି ।''

''ଧନ୍ୟବାଦ, ଶ୍ରୀମତୀ ହେଣ୍ଡର୍‌ସନ୍ ।''

ସହରରେ ସେ ଦିନ ରାତିରେ ଅର୍ଥାତ୍ ଗତ ଶୁକ୍ରବାର ରାତିରେ କେ. ଙ୍କ ସହିତ ବଜାର ସଉଦା କଲାବେଳେ ଜଣେ ପାଉଁଶିଆ ପୋଷାକ ଓ ଟୋପି ପିନ୍ଧିଥିବା ଉଚା ଲୋକଙ୍କୁ ଦେଖି, ମୁଁ ଭାବିଲି, ଇଏ ସେଇ ବୋଧେ; କିନ୍ତୁ ସେ ସିଏ ନଥିଲେ ।

ଈଶ୍ୱରଙ୍କୁ ଧନ୍ୟବାଦ, ନିର୍ଦ୍ଦେଶକ ମହାଶୟ ଆସିଲେ ନାହିଁ । କିନ୍ତୁ ମୁଁ ଆଉ କୋଲୀନ୍ ମିଶି ଆମ ଶ୍ରେଣୀ କୋଠରୀଟିକୁ ସଜେଇ ଅତି ସୁନ୍ଦର କରି ଦେଇଥିଲୁ । ମୁଁ ତାଙ୍କୁ କହିଲି, ''ଆମ କୋଠରୀଟିକୁ ସୁନ୍ଦର ଭାବେ ସଜାଇବା ପାଇଁ ନିର୍ଦ୍ଦେଶକଙ୍କ ଆବଶ୍ୟକତା ଥିଲା ।''

ସେଇ ଅଦ୍ଭୁତ ଟାଇପ୍ ରାଇଟର୍‌ଟି ଆଣିବାକୁ ସୋମବାର ଦିନ ମୁଁ ବୋର୍ଡ୍ ଅଫିସ୍‌କୁ ଯାଇଥିଲି । ମାଓରି ପାଠ୍ୟ ପୁସ୍ତକ ଭିତରୁ ଇହା'କା ପ୍ରଥମ ଭାଗଟିକୁ ଶ୍ରୀଯୁକ୍ତ

ଟ୍ରେମେଇନ୍‌ଙ୍କ ପାଇଁ ପୂରା ଛାପିବା ଦରକାର ଥିଲା - ଶିଶୁ ଶ୍ରେଣୀ ପିଲାଙ୍କ ପାଇଁ ବଡ଼ ବଡ଼ ଅକ୍ଷରରେ । ସେଇ ଟାଇପ୍ ରାଇଟର୍‌ଟି ତାଙ୍କୁ ଦେବାକୁ ପଡ଼ିଲା । ନ ହେଲେ ନିର୍ଦ୍ଦେଶକଙ୍କ ପାଇଁ ସବୁ ପୁସ୍ତକ ସେ ପାଇବେ କିପରି ? ସେଇ ଚମତ୍କାର ଟାଇପ୍ ରାଇଟର ଦ୍ୱାରା ଶନି, ରବି ଓ ସୋମବାର ଭିତରେ ଇହାକା ପାଠ୍ୟ ପୁସ୍ତକଗୁଡ଼ିକର ପ୍ରଥମ କିତା ଛପା ହେଲା । ଯାହା ପାଇଁ ବି ହେଉ, ଛପେଇ ବେଶ୍ ସୁନ୍ଦର ହୋଇପାରିଲା । ମୁହିଁ ଫ୍ଲେଇବାରୁ ହେଭ୍‌ଲକ୍ ଦଳ ସହ ଖେଳିବାକୁ ଥିବା 'କ' ଦଳରୁ ହେଲେନ୍‌କୁ ତଡ଼ି ଦେଇଥିଲି । ସେଇ ଦିନରୁ ସେ ସ୍କୁଲକୁ ଆସିନି । ''ସିଏ କହିଲା, ସିଏ ଆଉ କେବେ ହେଲେ ବାସ୍କେଟ୍ ବଲ୍ ଖେଳିବନି, ଶ୍ରୀମତୀ ହେଣ୍ଡରସନ୍ । ସିଏ ଆହୁରି କହିଲା, ସେ ଆଉ ସ୍କୁଲକୁ ମଧ ଆସିବ ନାହିଁ ।'' ଅନ୍ୟ ପିଲାମାନେ ମୋତେ କହିଲେ । ମୋତେ ହସ ମାଡ଼ିଲା ।

ମୋର ବଡ଼ ବଡ଼ ପିଲାଙ୍କୁ ନେଇ ଶ୍ରୀମତୀ କୋଲୀନ୍ ବୁଲି ଯାଇଥିଲେ । ବାଟରେ ହେଲେନ୍ ସହିତ ଦେଖା ହୋଇଗଲା । ସେ କହିଲା, ''ମୁଁ ତ କେବେ ଆଉ ସ୍କୁଲକୁ ଯିବିନି । ମୋ ମାଆ କହିଛନ୍ତି ।''

କୋଲୀନ୍ ସେଇ ବଡ଼ ବଡ଼ ଝିଅଙ୍କଠାରୁ ବୟସରେ ସାମାନ୍ୟ ଅଧିକ ଥିଲେ । ତେଣୁ ସେ ଠିକ୍ ଉତ୍ତର ଦେଇ ପାରିଥିଲେ । ''ତମେ କ'ଣ ମଙ୍ଗଳବାର ଦିନ ସେଣ୍ଟ୍ରାଲ ଦଳ ବିରୁଦ୍ଧରେ ଖେଳିବ ନାହିଁ ?''

''ମଙ୍ଗଳବାର ଦିନ କଣ ସେଣ୍ଟ୍ରାଲ୍ ଦଳ ସହିତ ଖେଳ ହେବ ?''

''ଆଉ କ'ଣ ? ଶ୍ରୀମତୀ ହେଣ୍ଡରସନ୍ ଚାହାନ୍ତି, ତମେ ମଙ୍ଗଳବାର ଦିନ ସେଣ୍ଟ୍ରାଲ୍ ଦଳ ବିରୁଦ୍ଧରେ ରକ୍ଷାତ୍ମକ ଜାଗାରେ ଖେଳିବ ?''

''ଆରେ, ମୁଁ ଖେଳିବି କେମିତି ? ପ୍ରଥମେ ତ ସେ ମୋତେ ସେଠାକୁ ଯିବାକୁ ଅନୁମତି ଦେବା ଦରକାର ।''

ଯଦିଓ ସେ ନ ଥିଲା, ଖେଳ ବେଶ୍ ସୁନ୍ଦର ଓ ଶାନ୍ତିପୂର୍ଣ୍ଣ ଥିଲା ।

ଶୁକ୍ରବାର ଦିନ ହେଭ୍‌ଲକ୍ ସହିତ ଖେଳରେ ମୋର ଦୁଇଟିଯାକ ଦଳ ବିଜୟୀ ହୋଇଥିଲେ । ଦଳ ଭିତରେ ସୁନ୍ଦର ମେଳ ଥିଲା ।

ନିରୀକ୍ଷକମାନେ ସେଠାରେ ଉପସ୍ଥିତ ଥିଲେ । ସେମାନେ ସମବେତ ଅଭିନୟ ସଙ୍ଗୀତ ଶୁଣିଥିଲେ । ସେ ସବୁ ଅତି ଭଲ ଥିଲା । 'ପା' (ମାଓରି ଗାଆଁ)ର ଚାଲି ଚଳଣିରେ ବିଶୃଙ୍ଖଳା ବାରି ହୋଇଯାଏ । ତାଙ୍କ ଅନ୍ତର ଭିତରେ ଶୃଙ୍ଖଳା ଜ୍ଞାନର



ଅଭାବ, ଏହାର କାରଣ । ଏଇଟା ଅବଶ୍ୟ ଏକାବେଳକେ ଖୋଲାଖୋଲି ସରଳ ବ୍ୟବହାର, ସେଇଟାକୁ ମୁଁ ଯଥେଷ୍ଟ ଭଲପାଏ । କିନ୍ତୁ ଗୋପନରେ । କାରଣ କଥାରେ ପ୍ରକାଶ କଲେ, ଲୋକେ ଏ ବିଶୃଙ୍ଖଳାକୁ କଦାପି ଭଲ କହିବେ ନାହିଁ । ତଥାପି ମୁଁ ବାରମ୍ବାର ଭାବୁଥାଏ, ଆଗକୁ କ'ଣ ହେବାକୁ ଯାଉଛି । ଏହା ଭାବି ହୁଏ ନାହିଁ- ମୋତେ ଆଶ୍ଚର୍ଯ୍ୟ ଲାଗେ । ଏହାର ଉପାୟ କ'ଣ ? ଆଦେଶ ପାଳନ ? ତାହା ତ ଆମ ପା'ର ପିଲାମାନେ ଜମା ଜାଣନ୍ତି ନାହିଁ । ମୁଁ ଦେଖିବାରେ କେବଳ ସ୍କୁଲ ସମୟ ଟିକକ ସେମାନେ ଆଦେଶକୁ ମାନନ୍ତି । ତା' ମଧ ସବୁବେଳେ ନୁହେଁ । ସତରେ ଏଇଟା କେଡ଼େ ବିଚିତ୍ର !

ମୁଁ ଜାଣୁଛି, ଆଜି ଯାହା ସବୁ ଲେଖୁଛି, ସେଗୁଡ଼ିକ ଭିତରେ କାହାର ସହିତ କା'ର ସଂପର୍କ ନାହିଁ । କିନ୍ତୁ ଲେଖି ଚାଲିଲାବେଳେ ମୁଁ ଏଥିପ୍ରତି ମନ ଦିଏନାହିଁ- ତାହା ଯେମିତି ହେଉ ପଛକେ । ମୁଁ ଏବେ ବି ଅଧାଅଧି କ୍ଲାନ୍ତ- ସେଇ ନିର୍ଦ୍ଦେଶକଙ୍କ ସପ୍ତାହ ସମୟରୁ । 'ପୁଷି ବିଲେଇ' ଗୀତଟିକୁ ଛବିରେଦେଖାଇବାକୁ ମୋତେ ଘଣ୍ଟା ଘଣ୍ଟା ଧରି କଳାପଟା ପାଖରେ ଠିଆ ହେବାକୁ ପଡ଼ିଲା । ଫିକା ଶାଗୁଆ ରଙ୍ଗର ବଡ଼ ବଡ଼ ଆଖି ମେଲି ପାଉଁଶିଆ ରଙ୍ଗର ବିଲେଇ ଛୁଆ ସବୁ କଢ଼ଗୁଡ଼ିକରୁ ବାହାରି ଆସି ଡାଳରେ ଗୁଡ଼େଇ ହେଉଛନ୍ତି ଓ ଧୀରେ ତଳକୁ ଖସି ପଡୁଛନ୍ତି । ସୁନ୍ଦର ଛପା ପାଇଁ ଇହା'କା ପାଠ୍ୟ ପୁସ୍ତକରେ ପୂରା ତିନି ଦିନ, ତିନି ରାତି ଲାଗି ଯାଇଥିଲି !! ବେଶ୍ ଅଛି ।

ଆଜି ରାତିରେ ଆମ ବୈଠକ ଘରେ ଚଳଚ୍ଚିତ୍ର ଦେଖାହେଲା । ଉତ୍ସବ ସମୟରେ କିଣା ହୋଇଥିବା ନୂଆ ପୋଜେକ୍ଟରଟି ମୋର ଆଉ ଗୋଟିଏ ପ୍ରିୟ ବିସ୍ମୟ । ଶିଶୁ ଶ୍ରେଣୀ ପିଲାଙ୍କ ପାଇଁ ବଡ଼ ବଡ଼ ଅକ୍ଷରରେ ଛାପିବା ପାଇଁ ଥିବା ଟାଇପ୍ ରାଇଟର୍‌ଟି ଶ୍ରୀଯୁକ୍ତ ଟ୍ରେମେଇନ୍‌ଙ୍କ ଅବଦାନ । ସେଇଟି ଯେପରି ମୋ ପାଇଁ ଗୋଟିଏ ଅତି ଆନନ୍ଦଦାୟକ ବିସ୍ମୟ, ଏଇ ପ୍ରୋଜେକ୍ଟରଟି ମଧ୍ୟ ସେପରି । ଜୀବନରେ, ବେଶ୍ ବିଳମ୍ବରେ ଏଇ ଅଦ୍‌ଭୁତ ପ୍ରୋଜେକ୍ଟର୍‌ଟି ମଧ୍ୟ ସେମିତି ବେଶି ଆନନ୍ଦଦାୟକ । ଆମ ସାଥିରେ ଥିଲେ, ଆମ ସହ ଲାଗିପଡ଼ି କାମ କରୁଥିବା, କେତେ ଜଣ ଅଭିଭାବକ ଓ ଆମ ସମିତିର ସଭାପତି ପିଟର୍ । ନିଜ ବୈଠକ ଘରେ ଚୂଲି ପାଖରେ ବସି ସାରା ଜଗତର ଘଟଣା ସିନେମାରେ ଦେଖିବା ମୋ ପାଇଁ ଅତି ସୁଖକର ଥିଲା । ଆନନ୍ଦରେ ମୁଁ ବିଭୋର ଥିଲି । ଏଠାରେ ତ ପ୍ରେକ୍ଷାଳୟର ବିରକ୍ତି ନ ଥିଲା । ପଛପଟେ ଚୁଇଂଗମ୍ ଖାଇବା ଦଳ ନ ଥିଲେ, କି ନାଟକ ସମୟର ଶସ୍ତା ଗୁଲି ଆଉ ବାକବିତଣ୍ଡା ନ ଥିଲା; ତା ସହିତ ଆରମ୍ଭରେ ଆଇସକ୍ରିମ କାଗଜର ଫଡ୍ ଫାଡ୍ ଶବ୍ଦ ନ ଥିଲା କି ସିନେମା ଶେଷରେ ଥଣ୍ଡା କାକରରେ ଘରକୁ ଫେରିବା କଷ୍ଟ ବି ନ ଥିଲା । ସେଇଥିପାଇଁ ଘରେ ଏଇ ସିନେମା- ଦେଖା ସଂଜ ବେଶ୍ ଉପଭୋଗ୍ୟ ଥିଲା । ଆନନ୍ଦରେ ଛାତି ମୋର ଫୁଲି ଉଠୁଥିଲା । ଏଇଟା ଥିଲା ଯେପରି ଉତ୍ସବ ଦିନଗୁଡ଼ିକର ପରିଶ୍ରମର ମିଠା ଫଳ !! ଆଃ, କି ଆନନ୍ଦ !

ରାତିରେ ଅଢ଼େଇ ଘଣ୍ଟା ଧରି ଆମେ ସିନେମା ଦେଖିଲୁ ।

ଆଜିକାଲି ଉପରବେଳା ବେଳକୁ ମୁଁ ହାଲିଆ ହୋଇପଡୁଛି । ବଢ଼ି ପାଣି ମାଡ଼ି ଆସିଲା ପରି ପାଞ୍ଚ ବର୍ଷିଆ ମାଓରି ପିଲା ବହୁତ ସଂଖ୍ୟାରେ ଆସି ଯାଇଛନ୍ତି । ଶିଶୁ ଶ୍ରେଣୀରେ ପାଠ ପଢ଼ାଉଥିବା ଶିକ୍ଷୟିତ୍ରୀମାନେ କେବଳ ବୁଝିପାରିବେ- ମୁଁ କାହିଁକି ଉପରବେଳା ଆଡ଼କୁ କ୍ଲାନ୍ତ ହୋଇପଡ଼େ । ତାଙ୍କର ଗୋଡ଼ର ଜୋତା (ବୁଟ୍) ବେଶ୍ ଓଜନିଆ, ଓଜନରେ ଏକ ଟନ୍ ହୋଇପାରେ । ମନ ଲାଗି ରହିବା ସମୟ ପ୍ରାୟ ଦଶ ମିନିଟ୍, ତାଙ୍କର ସ୍ୱର ବଣୁଆ ଷଣ୍ଢଙ୍କ ପରି- ଆଉ, ଏମାନଙ୍କୁ ପଢ଼େଇବା କାମ ଅସମ୍ଭବକୁ ସମ୍ଭବ କରିପାରିବା ସହିତ ସମାନ । ସପ୍ତାହ ସପ୍ତାହ ଧରି କଥା ମାନି ଚଳିବାକୁ ଆପଣଙ୍କୁ ଶିଖେଇବାକୁ ପଡ଼ିବ । ଅସଲ ଶିକ୍ଷା ତ କମ୍ । ହେଲେ, ଏମାନଙ୍କଠାରେ ରହିଛି ଅସଲି ମାଓରିର କଳା ଟିକକ । ୟୁରୋପୀୟ ଶୃଙ୍ଖଳାରେ ପେଷି ହୋଇଯିବା ଆଗରୁ ମାଓରି ଯୋଦ୍ଧାମାନେ ଅତୀତରେ ପ୍ରକୃତରେ କିପରି ଥିଲେ



ଜାଣିବାକୁ ହେଲେ ଆମେ ଏଇ ଶିଶୁମାନଙ୍କୁ ଚିହ୍ନିବା ଦରକାର । ଅବଶ୍ୟ ସବୁ ପିଲା ସେ ତାଲିକାରେ ଯିବେନି । କିନ୍ତୁ ୱାଇଓ୍ୱିନୀର ଭାଇ କ'ଣ ନୁହେଁ ? ସେଇପରି, ମାଟାଓ୍ୱେରୋର ଭାଇ, ଲୈଲାର ଭାଇ ! ପୁଇଆର ପୁଅ ଆଉ ବେବ୍‌ର ସଂପର୍କୀୟମାନେ ! ଆହୁରି ମଧ୍ୟ ସେଇ ଛୁଆ ବେଟି, ଆଉ ଟିକି ଓ୍ୱି ମାର୍ଡ଼ି । ହେଲେ ମୁଁ ଛାଡ଼ି ଦେଇପାରିବି କି ଟାମାଟି ଛୁଆ ଆଉ ଲାରୀକୁ ? ସେଇଟା ମାଟି ! ଆଉ ଛୁଆ ଲାରୀ !!

'ବେବ୍'ର ସେଇ ସଂପର୍କୀୟ ଭାଇକୁ 'ସେଭେନ୍' ବୋଲି ଡାକନ୍ତି । ସେ ଦିନ ଟିକିଏ ଆଗରୁ ଏଇ ଛୋଟ ଛୁଆଙ୍କୁ ଶ୍ରେଣୀ ବାହାରକୁ ଛାଡ଼ିଛି କି ନାହିଁ, କିଏ ପଛରୁ ପାଟି ରଡ଼ି ଛାଡ଼ି କହିଲା,

"ଶ୍ରୀମତୀ ହେନ୍'ସନ୍ । ସେଭେନ୍ ମୋ ପେଟକୁ ଚିମୁଟି ଦେଲା ।"

"ଆଚ୍ଛା, ତୁମେ ମୋ ପାଖରେ ରୁହ ।"

ୱାଇଓ୍ୱିନୀର ଭାଇ ଠିକ୍ ୱାଇଓ୍ୱିନୀ ଢାଞ୍ଚାରେ ଖେଳ ପଡ଼ିଆରୁ ଚିତ୍କାର କରି ଉଠିଲା । "ପୋଲୀ", ମୁଁ ପୋଲୀକୁ କହିଲି । ସେ ସେଠାରେ ବ୍ଲେଜର୍ ତିଆରିରେ ଲାଗିଥିଲା, ମୁଁ ତା' ପାଇଁ ସେ ସବୁ କିଣି ଆଣିଥିଲି । "ଯାଅ ତ ସେଠାକୁ । ଦେଖ, କଣ ସବୁ ହଉଚି ।"

"ଶ୍ରୀମତୀ ହେନ୍'ସନ୍ । ସେ ୱାଇଓ୍ୱିନୀର ଭାଇ । ସେଭେନ୍ ତାକୁ ବାଡ଼ିରେ ବାଡ଼େଇ ଦେଇଛି ।"

ପାମୀ ଭିତରକୁ ଧାଇଁ ଆସିଲା । "ଶ୍ରୀମତୀ ହେନ୍'ସନ୍ । ମାଟାଓ୍ୱେରୋର ଭାଇ ବେବ୍‌ର ଭାଇ ସେଭେନ୍ ସଙ୍ଗେ ଲଢ଼େଇ କରୁଛି ।"

"ଭଲ ।"

ବ୍ରୁସ୍ ଗୋଟିଏ ଟାଙ୍ଗିଆ ଧରି ଭିତରକୁ ଆସିଲା । "ଶ୍ରୀମତୀ ହେଣ୍ଡର୍‌ସନ୍, ଏ ଟାଙ୍ଗିଆଟାକୁ ମୁଁ ଏଇଠି ରଖିଦେବି ? ସେଭେନ୍ ଓ୍ୱି'କୁ ହାଣି ଦେବାକୁ ଯାଉଥିଲା ।"

"ହଁ, ସେ କବାଟ ପଛରେ ରଖିଦିଅ । କୋଲୀନ୍, ଟିକିଏ ବାହାରକୁ ଯାଇ ଦେଖ ତ ଆମର ଏ ନୂଆ ବନ୍ଧୁମାନେ କ'ଣ ସବୁ କରୁଛନ୍ତି ।"

ମାଟାଓ୍ୱେରୋ ଓ ତା' ଭାଇ ଦୁହେଁ ଗାଢ଼ ଶାଗୁଆ ରଙ୍ଗର ବ୍ଲେଜର୍ ପିନ୍ଧି ପହଞ୍ଚିଲେ । ମାଟାଓ୍ୱେରୋ ଜାଣେ ଯେ, ସ୍କୁଲ ୟୁନିଫର୍ମର ରଙ୍ଗ ମାଟିଆ ଓ ହଳଦିଆ । ସେଥିପାଇଁ ସେ ବିବ୍ରତ ଥିଲା । ହେଲେ ସେ ଆଉ ତା' ଜେଜେଙ୍କୁ ବୁଝାଇବା କଷ୍ଟକର । ତା' ଜେଜେ ସଭାପତି ଅଛନ୍ତି । ସେ ବେଶ୍ ତେଜରେ ପଚାରିଲେ, "ଶ୍ରୀମତୀ ହେନ୍'ସନ୍, ଆମେ ଏ ୟୁନିଫର୍ମ୍‌ର ରଙ୍ଗକୁ ବଦଳାଇ ଶାଗୁଆ କରିଦେଲେ ଆପଣଙ୍କର କ'ଣ କିଛି କହିବାର ଅଛି ?"

ହେଲେନ୍ ସୋମବାର ଦିନ ସ୍କୁଲକୁ ଧାଇଁ ଆସିଲା । ସେ ସିଧାଯାଇ କୋଲୀନ୍‌ଙ୍କୁ ଭେଟିଲା । "ଶ୍ରୀମତୀ ବର୍ଣସ୍, ମଙ୍ଗଳବାର ଦିନ ମୁଁ ଏବେ ସେଇ ମଝିରେ ରହି ସେଣ୍ଟ୍ରାଲ ସହ ଖେଳିବି ତ ?"

ଏହା କୋଲୀନ୍ ଓ ମୋ ପାଇଁ ପୁଣି ଏକ ସଫଳତା ଥିଲା । କିନ୍ତୁ ସେଣ୍ଟ୍ରାଲ୍ ସହିତ ହେବାକୁ ଥିବା ଖେଳ ଆଗକୁ ଘୁଞ୍ଚିଗଲା । ଗତବର୍ଷର ବିଜୟୀ ପାକି-ପାକି ସହିତ ଶୁକ୍ରବାର ଦିନ ଆମକୁ ଖେଳିବାକୁ ଠିକ୍ ହେଲା । ପାକି-ପାକି ଏକ ବେଶ୍ ଟାଣୁଆ ଦଳ । ଆଜି ସକାଳେ କେ. ଯେତେବେଳେ ଏ କଥା ଘୋଷଣା କଲେ, ସେତେବେଳେ ଖେଳାଳୀ ଦଳରେ ଶିହରଣ ଖେଳିଯିବା ସମସ୍ତେ ଦେଖିଥିବେ । ଏଇଟା ଆମର ଓ୍ୱାଟର୍‌ଲୁ । ମୋର ଭୟ ହେଲା । ଏମାନଙ୍କୁ ଭେଟିବା ଆଗରୁ ଆମେ ବହୁତ ଥର ଅଭ୍ୟାସ କରିବୁ ବୋଲି ମୁଁ ଆଶା କରିଥିଲି । କିନ୍ତୁ ଅଭ୍ୟାସ ପାଇଁ ବିଶେଷ ସୁଯୋଗ ମିଳିଲା ନାହିଁ । ଏଯାଏଁ ଆଉ ସବୁ ଦଳ ସାଥିରେ ଖେଳି ଆମେ ଜିଣିଛୁ ସତ । କିନ୍ତୁ ଏଦଳଟି ଅଲଗା । ଏହାର ଖେଳାଳୀମାନେ ବଡ଼ ବଡ଼ ପିଲା । କେବଳ ଖେଳ-କୌଶଳ, ଦଳର ମେଳ ଓ ଚଲାକି ଦ୍ୱାରା ତାଙ୍କୁ ହରେଇ ହେବ । ଆଉ ବେଗ । ମୋ 'କ' ଦଳର ଗତିରେ ବେଗ ଅଛି, ମାତ୍ର.... ମଝି (ସେଣ୍ଟର୍)ରେ ଟିକିଏ ଖଇଚା ରହି ଯାଇଛି । ଏଇ ଲଢ଼େଇ ବେଳକୁ ହେଲେନ୍ ଦଳକୁ ଫେରି ଆସିଥିବାରୁ

ମୁଁ ଖୁସି । କେ. ତା' ସହିତ ଆଜି ସକାଳେ କଥା ହେଇଥିଲେ । ସେ କ'ଣ କହିଛନ୍ତି, ମୁଁ ଜାଣେନି । ମାତ୍ର ସେ ଏବେ ଦଳରେ ଖାପ ଖୁଆଇ ଚଳିବ, ମାନିବ ଆଉ ବୁଝି ବିଚାରି ଧୀର ମନରେ ଖେଳିବ । ଏତେ ବଦଳି ଯାଇଛି ଯେ, ଚିହ୍ନି ହେଉନି ।

ଗତକାଲି ସହରରେ ମୁଁ ଆରୋହାକୁ ଦେଖିଲି । ପ୍ୟାରିସ୍‌ର କେଉଁ ବଗିଚାରୁ ଆଣିଥିବା ଫୁଲଟିଏ ପରି ସେ ସୁନ୍ଦର ଦିଶୁଥିଲା । ମାଓରି ପିଲାଙ୍କ ଭିତରେ ତା' ରଙ୍ଗ ସଫା । ଏବେ କିନ୍ତୁ ସେ ଅତି ସୁନ୍ଦରୀଟିଏ ପରି ଦିଶୁଥିଲା, ବୋଧହୁଏ ଗର୍ଭବତୀ । ସୁନ୍ଦର ଭାବେ ପିନ୍ଧିଥିଲା । ଆମ ସ୍କୁଲର ତେର ବର୍ଷର ଝିଅଟିଏ ଭଏ । ତା'ର ଗୋଟେ ପାଖରେ ଜଣେ ଭଦ୍ର ମହିଳା । ତାର ମାଆ ହେବେ ବୋଧେ । ଆଉ ଆରପଟେ ଜଣେ ସୁନ୍ଦର ମାଓରି ଯୁବକ । ଜୋଇଁ ପୁଅ ନିଶ୍ଚୟ । ଏଠାକାର ଲୋକଙ୍କର ଏଇଟା ସାଧାରଣ ଚଳଣି । ଏମିତି ସବୁ ହୁଏ ।

''ସେମାନଙ୍କୁ କ'ଣ ଭଲା ମୁଁ ପଢେଇବି ?'' ସେ ପଚାରିଲେ । କଣ୍ଠରେ ତାଙ୍କର ଯୁବସୁଲଭ ମଧୁରତା ଭରି ରହିଥିଲା । ଷୋଳ ବର୍ଷର ସୁନ୍ଦର ଝିଅଟିଏ ସେ ।

'''ଘର', 'ଟ୍ରକ୍' ଆଉ 'ଡାଡି' ପଦରେ ଥିବା ସବୁ ଅକ୍ଷର । ସେ ଦଳଟା ଗତକାଲି ମୋତେ ପ୍ରାଣରେ ମାରିଦେଲେ କହିଲେ ଚଳେ । ତୁମେ ଜାଣ, ଗତ ରାତିରେ ମୁଁ ଭାବୁଥିଲି, କୋଲୀନ୍ ହାତରେ ଏଇ ନୂଆ ବଂଧୁମାନଙ୍କୁ ସମର୍ପି ଦେବି । ଆଉ, କୋଲୀନ୍, ଏମାନଙ୍କ ଚାଲିଚଳଣ ଓ ଏମାନଙ୍କ ପାଇଁ ଦିଆଯିବା ସମୟ ମଧ ଟିପି ରଖିବା ।''

ସ୍କୁଲ ଘଣ୍ଟା ବାଜି, କିଛି ସମୟ ବିତିଗଲାଣି । କିନ୍ତୁ ନୂଆ ବଂଧୁମାନଙ୍କର ସେଥିପ୍ରତି ଦୃଷ୍ଟି ନାହିଁ । କୋଲୀନ୍ କାନ୍ଥ ଘଡିକୁ ଚାହିଁଲେ, ''ଏବେ ତ ପ୍ରାୟ ୨ଟା କୋଡିଏ ବାଜିଲାଣି ।''

''ଆହା, ଏମାନେ ତ ଏଇଆ । ଘଣ୍ଟା ବାଜିଥିଲା, ୨ଟା ୧୦ ମିନିଟ୍‌ରେ । କୁଆଡେ ଗଲେ ଏମାନେ ସବୁ ? ପାଖକୁ ଯାଇ ତାଙ୍କୁ ଡାକି ଆଣିବାଟା ତାଙ୍କୁ ଠକିବା ପରି ହେବ ।''

କୋଲୀନ୍ କିନ୍ତୁ ଟିକିଏ ହେଲେ ବ୍ୟସ୍ତ ନଥିଲେ । ''ରାଙ୍ଗୀ !'' ଆମ ପୁରୁଣା ପାଞ୍ଚ ବର୍ଷିଆ ଭିତରୁ ଜଣେ ପଛୁଆ ପିଲାକୁ ସେ କହିଲେ, '' ତୁ ଯାଆ, ସବୁ ସାନ ପିଲାଙ୍କୁ ଡାକି ଆଣେ । ସେମାନଙ୍କୁ କହିବୁ, ପାଠ ପଢିବାକୁ ସମସ୍ତେ ଭିତରକୁ ଆସନ୍ତୁ ।''ରାଂଗୀ ''ପାଠ'' କହିଲେ କ'ଣ ବୁଝେନା । ସେ ଇଂରାଜୀ ଅତି କମ୍

ଜାଣେ । ଆଉ ଏପରି ଭାବେ ପିଲାଙ୍କୁ କହି, ମୁଁ କଦାଚିତ୍ ଭଲ ଫଳ ପାଇଛି । ଯାହା ହେଉ, ଏଇଟା ତ କୋଲୀନ୍‌ଙ୍କ ସମସ୍ୟା । ମୁଁ କିଛି କହିଲି ନାହିଁ ଯଦିଓ ହସି ପକାଇଲି । ''ଏବେ ତ କୋଡିଏ ମିନିଟ୍ ଗଲାଣି ।'' ମୁଁ କହିଲି ।

ପ୍ରକୃତରେ କିନ୍ତୁ କୌଣସି ପିଲା ଭିତରକୁ ଆସିଲେ ନାହିଁ । ସେଥିପାଇଁ ଢି'ନ ଓ ପୋ'ଲିକୁ ଦେଖେଇ ମୁଁ କହିଲି, ''ଏମାନଙ୍କ ଭିତରୁ ଜଣକୁ ତୁମେ ପଠାଇ ପାର, ସେମାନଙ୍କୁ ଡାକି ଆଣିବାକୁ ।'' ସେ ଦୁହେଁ ସେଠାରେ ସିଲେଇ କରୁଥିଲେ ।

''ପୋ'ଲି'' କୋଲୀନ୍ କହିଲେ ସେ ବେଶ୍ ତେଜି ଉଠିଥିଲେ, ''ତୁମେ ଯାଅ ତ,ସେ ସବୁ ଛୋଟ ଛୁଆଙ୍କୁ ନେଇ ଆସିବ । ସେମାନଙ୍କୁ ମୁଁ ଆଜି ଗୋଟେ ଶିକ୍ଷା ଦେବାକୁ ଚାହେଁ ।''

କିଛି ସମୟ ପରେ ତାଙ୍କ ସମୟ ଅନୁସାରେ ସେମାନେ ଦେଖା ଦେଲେ । ତାଙ୍କର ଆସିବାଟା ତାଙ୍କ ଜୋତା ଘୋଷଡା ଓ କଥାଭାଷାର ଶବ୍ଦରୁ ଜଣା ପଡି ଯାଇଥିଲା । କୋଲୀନ୍ ତାଙ୍କୁ ବସେଇବାକୁ ପ୍ରାୟ ବାହାରି ପଡିଥିଲେ । ''ତାଙ୍କର ଜୋତା ଆଗ ଖୋଲା ହେବା ଦରକାର ।'' ମୁଁ କହିଲି, '' ଆଉ ସେମାନେ ନିଜ ନିଜର ଚକ୍, କଳାପଟା ଓ ଡଷ୍ଟର୍ ନେଇ ଆସନରେ ବସିବେ । ଆହୁରି , ସେମାନଙ୍କୁ ଏଥିରେ ସାହାଯ୍ୟ କରିବା କିମ୍ବା ମନା କରିବା- ଦୁଇଟା ଯାକ ନିୟମ ବିରୁଦ୍ଧ ।''

''ଜୋତା ଖୋଲି ଦିଅ । ଆସ, ଏଠାରେ ବସ । ସବୁ ଛୁଆ ଆସ ।'' ସେ ପାଟି କରି କହିଲେ ''ପାଖରେ ତୁମର କଳାପଟା, ଚକ୍ ଓ ଡଷ୍ଟର୍ ରଖ ।''

ତା' ପରେ ମୁଁ ଗୋଟିଏ କୋଣକୁ ଧୀରେ ଘୁଂଚି ଗଲି । ପୂରାପୂରି ମଜା ଦେଖିବାକୁ ।

ତା' ପରେ ଯାହା ସବୁ ହେଲା, ମୁଁ ପ୍ରକୃତରେ ପୂରା ଉପଭୋଗ କଲି । ଅନେକ ସମୟରେ ମୁଁ ବଡ଼ ପାଟିରେ ହସି ଉଠୁଥିଲି । ଆହ୍ୱାନକୁ ଗ୍ରହଣ କଲା ପରି କୋଲୀନ୍‌ଙ୍କ ସ୍ୱର ଉଚ୍ଚା ଥିଲା । ମାତ୍ର ଷୋଳ ବର୍ଷ ବୟସର ଝିଅଟିଏ ହେଲେ ବି କୋଲୀନ୍ ବେଶ୍ ସୁନ୍ଦର ଭାବେ ପଢାଉଥିଲେ । ଥରେ ହେଲେ ଧୈର୍ଯ୍ୟ ହରେଇ କିଛି କହି ନ ଥିଲେ । ''ମାତ୍ର'', ମୁଁ ତାଙ୍କୁ ମନେ ପକେଇ ଦେଲି, ''ଗଲା କାଲି ମୁଁ ମାଟାଓ୍ୱେରୋର ଭାଇକୁ ଦେଖିଥିଲି । ଆଜି ତ କାହିଁ ଏଇଠି ଦେଖାଯାଉ ନାହିଁ ।''

''ମାତ୍ର ମାଟାଓ୍ୱେରୋର ଭାଇକୁ ମୁଁ ଯାହା କହୁଛି, ସେ ତା' କରୁଛି ।''

''ଠିକ୍ ଅଛି । କିନ୍ତୁ ବେଦ୍‌ର ସଂପର୍କୀୟ ଭାଇ ସେଭନ୍‌କୁ ଦେଖ ତ । ସିଏ ଶୋଇ ପଡ଼ିଛି । ତୁମର ପଢ଼ାରେ ବୋଧ ହୁଏ, ତା'କୁ ନିଦ ଆସି ଯାଉଛି ।

''ଗଲାକାଲି ତ ଖେଳିବାକୁ ଯିବା ଆଗରୁ ସେ ହାଇ ମାରୁଥିଲା, ମୁଁ ଦେଖିଛି । ତେଣୁ ମୋ ପଢ଼ାରୁ ନୁହେଁ ।''

''ହଁ, ସତ କଥା । ମୁଁ ମଧ୍ୟ ନିଜେ ଦେଖିଛି ।''

''ଓ୍ୱି', ସେଭେନ୍‌କୁ ଉଠାଇ ଦେ ।''

''ନା, ସେଭେନ୍‌କୁ ଉଠାଅ ନାହିଁ ।'' ମୁଁ ପାଟି କରି କହିଲି, '' ସେଭେନ୍ ଶୋଇଛି ବୋଲି ତୁମେ ମୋ ଠାରୁ କେବେ ଅଭିଯୋଗ ଶୁଣିବନି । ମୁଁ ତ ଚାହେଁ, ଆଉ କେତେ ଜଣ ବି ଶୋଇଯାଆନ୍ତୁ ।''

''ମୁଁ ତା'ର ସବୁ ଅକ୍ଷର ଦେଖି ନେଇଛି, ଶ୍ରୀମତୀ ହେଣ୍ଡରସନ୍ ।''

ମୁଁ ଘଡିକୁ ଚାହିଁଲି । ''କୋଡ଼ିଏ ମିନିଟ୍ । ଏବେ ତୁମକୁ ଦେଖିବାକୁ ହେବ । ସେମାନେ ପୁଣି ତାଙ୍କ ଜୋତା ପିନ୍ଧିବେ, ସେମାନଙ୍କର ଜିନିଷ ଠିକ୍ ଭାବେ ରଖିବେ, ଆଉ ଦୁଆର ଦେଇ ପଦାକୁ ଯିବେ ।''

ଆଗରୁ ମୁଁ କେବେ ଏତେ ସୁନ୍ଦର କାମ ଦେଖି ନ ଥିଲି । ''ଦେଖ, ମୁଁ ତୁମକୁ ଏଇ ନୂଆଁ ବଂଧୁମାନଙ୍କ ସବୁ ଦାୟିତ୍ୱ ଦେଇ ଦେଇଛି । ମୁଁ ଏଣିକି ଭଦ୍ର ମହିଳା ଓ ଭଦ୍ର ବ୍ୟକ୍ତିଙ୍କୁ ପଢ଼େଇବି ।''

''ମୁଁ କିନ୍ତୁ ଆସନ୍ତାକାଲି ଆପଣଙ୍କ ସମୟ ନେବି ।'' ସେ କହିଲେ ।

ଆସନ୍ତା କାଲି କଥାରେ ମୁଁ ବିବ୍ରତ ହୋଇପଡ଼ିଲି । ମୁଁ ଠିକ୍ ସେତିକିବେଳେ ମନେ ପକେଇଲି ଆଜି ମଧ୍ୟ ତାଙ୍କ ପାଖରେ ଓ୍ୱାଇଓ୍ୱିନୀର ଭାଇ ନାହିଁ ।

''ସେମାନେ ସବୁ ବେଶ୍ ଭଲ କାମ କରିଛନ୍ତି'', ସେ କହିଲେ ।

''ଅବଶ୍ୟ ମୁଁ ସେମାନଙ୍କୁ କିଛିଟା ଅଭ୍ୟାସ କରେଇଛି ।''

''ଆପଣ ଦେଖନ୍ତୁ, ଆସନ୍ତାକାଲି ମାଟାଓ୍ୱେରୋର ଭାଇ ଓ ଓ୍ୱାଇଓ୍ୱିନୀର ଭାଇ ଏଠାରେ ଥିବେ । ଆଉ ବେବ୍‌ର ସଂପର୍କୀୟ ଭାଇ ସେଭେନ୍ ବି ଚେଇଁ ଉଠିଥିବ ! ଆଃ, ତେବେ.....''

''କୋଲୀନ୍, ମୁଁ ଏବେ ଘରକୁ ଯାଉଛି । ମୁଁ ଭାରି କ୍ଳାନ୍ତ । ଆଜି ସ୍କୁଲ ସମୟ ପରେ ସାଢ଼େ ଚାରିରେ ପା' (ମାଓରି ଗାଆଁ) ଦଳ ଆମ 'କ' ଓ 'ଖ' ଦଳ ସହିତ ଖେଳିବେ । ମୋର ସେ ସବୁ ଦେଖିବାର ଥିଲା ତୁମେ ଟିକିଏ ଏ ସବୁ ଦେଖି ନେବ ।''

ସେଇଠି ପୋ'ଲି ତା'ର ବ୍ଲେଜର୍ ଠିକ୍ କରୁଥିଲା । ଲୋଟସ୍ ବି ଖେଳ ପୋଷାକ ସଜାଡୁ ଥିଲା । ଫ୍ରାନ୍ସ ନେଟାକୁ ପିଆନୋ ବଜେଇ ଗୋଟେ ସୁର ଶିଖାଉଥିଲା । ରେରେମୋ'ନା ଓ ଏଡ୍‌ନା ଛବି ଆଙ୍କୁଥିଲେ ।

ଆଉ ବଡ଼ ପିଲାମାନେ କାହାଣୀ ଲେଖୁଥିଲେ । ହଁ, ମାର୍କ୍ କଥା ଭୁଲି ଯାଇଛି, ସେ ତା' ମାଉସୀଙ୍କ ପାଖକୁ ଚିଠି ଲେଖୁଥିଲା । ଆଉ,ପା'ଚି.......

ପାକି ପାକି ସହିତ ଖେଳିବା ଆଗରୁ ମୋ ଦଳ ପାଇଁ ଅଭିଜ୍ଞତା ଦରକାର । ସେଥିପାଇଁ ତରତରରେ ଗାଁ (ପା')ର ଯୁବକ ସଂଘ ସହିତ ମୋ ଦଳର ଅଭ୍ୟାସ ପାଇଁ ଖେଳଟିଏ ଯୋଗାଡ଼ କଲି । ଦିନେ ଆଗରୁ ଖବର ଦେବା ଏଥିପାଇଁ ପ୍ରାୟ ଯଥେଷ୍ଟ, ପସନ୍ଦ-ଯୋଗ୍ୟ । ମୁଁ ଆଶା କରୁଥିଲି, ସେମାନଙ୍କ ଖେଳାଳୀଙ୍କ ଭିତରେ ''ହାଙ୍କ୍-ବେ'' ସହିତ ଖେଳିବାକୁ ଥିବା ଦି'ଜଣ-କାହ୍ନୁ ଓ ଟିଟୀ ନଥା'ନ୍ତୁ ।

ଏଇ ଯୁବକ ସଂଘରେ ଗୋଟିଏ ବିଚିତ୍ର ଗୁଣ ରହିଥିବା ମୁଁ ଦେଖିଲି । ଯଦିଓ ପିଟର୍‌ଙ୍କ ମତରେ ଯେତେ ସବୁ ଅବିବାହିତା ଷୋଳ ବର୍ଷିଆ ଝିଅ ମାଆ ହୁଅନ୍ତି, - ତା' ମୂଳରେ ଏଇ ଯୁବକ ସଂଘ ।

''ଏଇ ଯୁବକ ସଂଘର ପ୍ରକୃତ ଉଦ୍ଦେଶ୍ୟ ଠିକ୍ କ'ଣ ହୋଇପାରେ ?'' ମୁଁ ତାଙ୍କୁ ପଚାରିଲି, ''ଯୁବ ସମାଜକୁ ଏକାଠି କରିବା ।'' ସେ ଗମ୍ଭୀର ସ୍ୱରରେ ଉତ୍ତର ଦେଲେ । ହେଲେ, ଗଳାରେ ସେ ଯେମିତି କିଛି ଚାପି ଦେଲେ ।

ମୋ ଭାବନାର ଧାରାରେ ଦେଖାଦେଲା: ଗେ'ଲ ଟାମାଟି, ଷୋଳ ବର୍ଷର ବିବାହ ପରେ ବି ତା'ର କଇଁ କଇଁ କାନ୍ଦଣା । ଭେରେପାରିତାର ସମାଧି ପାଇଥିବା ଯାଆଁଳା ଛୁଆ ! ଆଉ, ଗତ କାଲି ସହରରେ ଦେଖିଥିବା ଆରୋହା କୁମାରୀ ମେରୀ ପରି ଦିଶୁଥିଲା ।

''ଏକାଠି କରିବାକୁ,'' ମୁଁ ପାଳି ଧରିଲାପରି କହିଲି, କିଛି ସମୟ ପାଇଁ ମୁଁ ଯେମିତି ଜଣେ ସନ୍ୟାସୀ ପାଲଟି ଯାଇଥିଲି, କିନ୍ତୁ ପା'ର ଯୁବକ ସଂଘ ସହ ମୋ ଦଳର ଖେଳରେ ରେଫରୀ ହେବା ପରେ ପରେ ମୋ ମନ ବଦଳି ଗଲା । ମୁଁ ଆଶ୍ଚର୍ଯ୍ୟ ହେଲି । ମନେ ହେଲା: ଯଦି ଏଇଟା ଜୀବନ ନୁହେଁ, ତା' ହେଲେ ଜୀବନଟା କ'ଣ, ମୁଁ ଜାଣେନା । ଆଃ, ଏଇଟା ଯଦି ଜୀବନ ନୁହେଁ ! ଆଉ, ଏଇ ମାଓରି ସ୍କୁଲର ପରିବେଶରେ ମନର ଟିକିଏ ଆଗର ଭାବନା ବଦଳି ଗଲା.... ନହେଲେ, ଜୀବନଟା ଆଉ କ'ଣ ଭଲା ?

ଯଦି ଜୀବନର ଅର୍ଥ ସଂପୂର୍ଣ ଆତ୍ମ ବିସ୍ମରଣ (ନିଜକୁ ପୂରା ଭୁଲିଯିବା) ହୁଏ, ତେବେ ଏଇ ଠିକ୍ ଅଧା ଘଣ୍ଟାଧରି ମୁଁ ସେଇଟା ଉପଭୋଗ କରିଛି।

ଖେଳ ଆରମ୍ଭ କରିବାକୁ ହୁଇସିଲ୍ ପାଇଁ ମୋତେ ଲଢ଼େଇ କରିବାକୁ ପଡ଼ିଲା। କାରୋଲିନ୍ ପାଖରେ ସେଇଟା ଥିଲା, ଆଉ ସିଏ ରେଫରୀ ହେବାକୁ ଦୃଢ଼ପ୍ରତିଜ୍ଞ ଥିଲା। ମୁଁ ତ ଏଇ ଖେଳଟି ଯୋଗାଡ଼ କରିଥିଲି, କେବଳ ଶୁକ୍ରବାରର ଖେଳ ପାଇଁ ଅଭ୍ୟାସ କରିବାକୁ, ମୋ ଝିଅଙ୍କୁ ତାଲିମ୍ ଦେବାକୁ, ତା'କୁ ଆରମ୍ଭ କରିବାକୁ ଛାଡ଼ି ଦେଲି। କିନ୍ତୁ ଖୁବ୍ ଶିଘ୍ର ସେଇ ଖେଳାଳୀଙ୍କ ପରି ଉତ୍ସାହ ଦେଖେଇ ଉଚ୍ଚସ୍ୱରରେ ହୁଇସିଲ୍ ଦାବୀ କଲି। ସେ ମୁହଁ ଫୁଲେଇ ଗୁମ୍ ମାରି ରହିଲା। ମୁଁ କିନ୍ତୁ ମୋ କାମରେ ଲାଗିଗଲି। ସେ ଯେଉଁ ଦୁଇଜଣ ଖେଳାଳୀଙ୍କୁ ସେମାନେ ମୋତେ ଅନୁରୋଧ କରି ଦଳରେ ରଖିଥିଲେ, ସେମାନେ ଚାରିଜଣ ବୟସ୍କଙ୍କ ପରି ଖେଳୁଥିଲେ। ସେଥିରେ "ହା'କ୍ସ-ବେ" ଦଳର ପ୍ରତିନିଧି କାହୁ ବି ଥିଲା। ସ୍କୋର ଅବଶ୍ୟ ୯-୨ ରେ ଥିଲା। ହେଲେ, ବେଗ ? ମୁଁ ଆଗରୁ ଏପରି ବଲ୍ ପାଶ୍‌ଦେବା ଦେଖି ନଥିଲି।

ମଧ୍ୟାନ୍ତର ସମୟରେକାରୋଲିନ୍ ଆନୁଷ୍ଠାନିକ ଭାବେ ଅଭିଯୋଗ କଲା। ସେ କହିଲା ଯେ ଖେଳର ନିୟମ ଲଂଘନ କରାଯାଉଛି। ମୁଁ କେବେହେଲେ ଆମେରିକାନ୍ ଢ଼ାଞ୍ଚାରେ ତ କହେନି, କିନ୍ତୁ ମୁଁ ନିଜକୁ ନିଜେ କହିଲି, "କେମିତି ଲଂଘନ କରାଯାଏ, ମୁଁ ସେମାନଙ୍କୁ ଦେଖେଇଦେବି। ତା'ପରେ ତୃତୀୟ ଭାଗ.... ଆମେ ତିନି ଭାଗରେ ଖେଳ ରଖାଇଥିଲୁ.... କେହି କାହାରିକୁ ସେମିତି ଟପି ଯାଇ ପାରିଲେ ନାହିଁ।

ଆପଣମାନେ ଦେଖିଥାଆନ୍ତେ ସେ ବାଳକମାନଙ୍କ ଡ଼ିଆଁ - ପୂରା ବୟସ୍କଙ୍କ ପରି। ମୁଁ କହିବାକୁ ଚାହେଁ, ମୋ ଝିଅମାନଙ୍କ ଉପରକୁ ସେମାନେ ସିଧା ଲମ୍ଫ ଦେଉଥିଲେ।

ପରେ ସେମାନଙ୍କୁ ମୁଁ ପ୍ରଶଂସା କଲି। ସେମାନେ ମାଓରି ସଂପ୍ରଦାୟର ସୁନ୍ଦର ସୁନ୍ଦର ଯୁବକ ଥିଲେ। ମୁଁ ପ୍ରାର୍ଥନା କରୁଛି: ମଦ ନିଶା ସେମାନଙ୍କୁ ନ ଛୁଉଁ। ବୟସର ଆବେଗରେ ପ୍ରେମରେ ପଡ଼ନ୍ତୁ ପଛେ, ନିଶାରେ ନ ପଡ଼ନ୍ତୁ।

ସୁନ୍ଦର, ଟାଣୁଆ, ଉଚ୍ଚା, ଚଂଚଳିଆ, ଭଦ୍ର ବ୍ୟବହାର ଦେଖାଉଥିବା ଏବଂ ସ୍ୱାଭିମାନ ଥିବା ଯୁବକ ଥିଲେ ସେମାନେ। ଆଉ ବେଶ୍ ସୁନ୍ଦର ଚେହେରା ବି।

ସ୍କୁଲର ଶିଶୁ ଶ୍ରେଣୀକୁ ଯିବା ପାଇଁ ମୁଁ ନିଜକୁ ପ୍ରସ୍ତୁତ କରୁଥିଲି। ଟା'କପ୍‌ର ଶେଷ ଭାଗଟି ପିଇଲା ବେଳକୁ ପାଉଲେଟ୍ ଦୁଆର ମୁହଁରେ ଦେଖା ଦେଲା। ସେ

ଜେନ୍‌ଙ୍କ ଚିଠିଟିଏ ଦେଲା । ସେଥିରେ ଲେଖାଥିଲା: ''ପ୍ରିୟ ଶ୍ରୀମତୀ ହେଣ୍ଡରସନ୍, ଆଜି ମୁଁ ପାକି - ପାକି ବିରୁଦ୍ଧରେ ଖେଳରେ ଯୋଗ ଦେଇ ପାରିବି ନାହିଁ । ଶ୍ରୀମତୀ ହେଣ୍ଡରସନ୍, ମୋତେ ଡ଼ବଲ୍ ନିମୋନିଆ ହୋଇଯାଇଛି ।''

ମନରେ ମୋର କେବଳ କେତେକ ବ୍ୟକ୍ତିଗତ କାମର ଭାବନା ଥିଲା । କିନ୍ତୁ ଜେନ୍‌ଙ୍କର ଏ ଚିଠିଟି ମିଳିଲା ପରଠୁଁ ମୋ ଭାବନା ବଦଳି ଗଲା । ଡବଲ୍ ନିମୋନିଆ ବିଷୟରେ ମୁଁ ଯେତିକି ଜାଣେ, ସେଥିରେ ଆକ୍ରାନ୍ତ ହୋଇ ଏପରି ଯତ୍ନ ସହକାରେ ଚିଠି ଲେଖି ହେବ ନାହିଁ । ହୁଏତ ଏଇଟା ଅନ୍ୟ କୌଣସି ପ୍ରକାରର ଡବଲ୍ ନିମୋନିଆ ହୋଇଥିବ ।

ପାକି-ପାକି ସହିତ ଖେଳିବାକୁ ଠିକ୍ ହୋଇଥିବା ଦିନ ବର୍ଷା ପଡ଼ିଲା । ଦିନ ବାରଟା ବେଳକୁ ମେଘ ଛାଡ଼ି ନଥିବାରୁ କେ. ଖେଳ ଦିବସ ଘୁଂଚାଇ ଦେବାକୁ ଫୋନ୍‌ରେ ଜଣାଇଲେ । କିନ୍ତୁ ଗୋଟାଏ ବେଳକୁ ବର୍ଷା ହେଉଥିଲେ ବି ଗୋଟିଏ ବଡ଼ ବସ୍ ଫାଟକ ପାଖରେ ପହଞ୍ଚିବାର ଦେଖି ଆମେ ସବୁ ସ୍ତବ୍ଧ ହୋଇଗଲୁ ।

**ଆମେ
ପାକି - ପାକିକୁ
ହରେଇ ଦେଲୁ ।**



ମୁଁ ତ ଆଗରୁ କହିଛି, ପାକି-ପାକିର ଏ ଦଳଟି କେବେ କେଉଠ ହାରଥିବା କଥା ଇତିହାସରେ ନାହିଁ । ଏଇ ହେଷ୍ଟିଂସ ଅଞ୍ଚଳର ସେ ଦଳଟି ସବୁବେଳେ ବାସ୍କେଟ୍‌ବଲ୍ ଚାମ୍ପିଅନ୍ ରହିଆସିଛି ।

କିନ୍ତୁ, ଏବେ ମୋ ହଳଦିଆ ପୋଷାକ ପିନ୍ଧା ଦଳ ହେଷ୍ଟିଂସ୍ ଅଞ୍ଚଳର ଚାମ୍ପିଅନ୍। ସ୍ୱପ୍ନ ବେଳେ ବେଳେ ସତ୍ୟ ହୁଏ। କିନ୍ତୁ ସାଧନା (କାର୍ଯ୍ୟ) ପରି କିଛି ନଥିଲେ ହୁଏନା।

ପାକି - ପାକି ଦଳଟି ଚାଲିଯିବା ପରେ, ହଳଦିଆ ପୋଷାକର ଦଳଟି ମୋତେ ଘେରିଗଲେ। ମୋ ସହିତ ନଅଟି ମାଟିଆ ହାତ କର-ମର୍ଦ୍ଦନ କଲେ। ନଅଟି ମାଟିଆ ମୁହଁ ଝଲସି ଉଠୁଥିଲା। ଆଉ ନଅଟି ମାଟିଆ ଗଳା ମୁଁ ଖେଳ ଶିଖେଇଥିବା ପାଇଁ ମୋତେ ଅଭିନନ୍ଦନ ଜଣାଇଲେ। ସେମାନେ ସବୁ କହିଲେ, "ଏବେ ଆମେ ଜାଣିଲୁ କେବଳ ଆପଣ ଜଣେ ଭଲ ଖେଳ ଶିଖାଳୀ। ଶ୍ରୀମତୀ ହେଣ୍ଡରସନ୍, ଆମେ ଏଣିକି ଆପଣଙ୍କ କଥା ଶୁଣିବୁ।"

ମୁଁ ଅତିଶୟ ଆନନ୍ଦିତ ହୋଇ ଉଠିଥିଲି।

ସେ ଦିନ ରାତିରେ ସହରରେ ସଉଦା କଲାବେଳେ ମୁଁ ଯୁଆଡ଼କୁ ଚାହିଁଲି, ସବୁଆଡ଼େ ହଳଦିଆ ପୋଷାକ ଦେଖିଲି। ଯେଉଁ ଗୋଟାକ ପାଇଁ ଛାତିରେ ମୋର ଗୋଟେ ବଥା ରହିଥିଲା, ସେଇଟା ଯେମିତି ଅପସରି ଯାଉଥିଲା ସବୁ ଦିନ ପାଇଁ।

ରଙ୍ଗ ବିଚାରରେ, ମୁଁ ଭଲ ପାଏ, ହଳଦିଆ।

ପଠନ ଶିକ୍ଷା ବିଷୟଟି ମୋ ମନରେ ବିଶେଷ ଭାବରେ ଥାଏ। ଲିଖନ ଶିକ୍ଷା ନେଇ ଯେତେ ସବୁ ମୋର ପରୀକ୍ଷା ନିରୀକ୍ଷା ଓ ଆଗ୍ରହ ଥିଲା ସେ ସବୁକୁ ପଛରେ ପକେଇ, ଏଇ ପଠନ ବିଷୟ ନେଇ ମୁଁ କାମରେ ଲାଗିଥିଲି, ଯାହାର ଏକ ସନ୍ତୋଷଜନକ ବାଟ ଖୋଜୁଥିଲି। ପିଲାଙ୍କ ପାଖରେ ଯେଉଁ ପଦଗୁଡ଼ିକ ପ୍ରିୟ ଥିଲା, ସେଗୁଡ଼ିକ ପ୍ରଭାବ ଅଧିକ ଥିଲା। ସେଇ ଅସଲି ପଦ-ତାଲିକା ପହିଲେ ପଢ଼େଇବାକୁ ଆଗରୁ ଠିକ୍ କରି ସାରିଛି- ଏବେ ବି ତା'ଉପରେ ପରୀକ୍ଷା ଚଳେଇଛି। ସେଇ ପଦଗୁଡ଼ିକୁ ଏବେ ପୁଣି ପରୀକ୍ଷା ନିରୀକ୍ଷା କରି ଦେଖୁଛି, ଆଶ୍ଚର୍ଯ୍ୟଜନକ ଭାବେ ସେଥିରୁ କେତୋଟି ପଦ ସ୍ପଷ୍ଟ ଭାବେ ଦୁଇଟି ମୁଖ୍ୟ ପ୍ରବୃତ୍ତି ସହିତ ଯୋଡ଼ିହୋଇ ରହିଛି - ଭୟ ଓ ଯୌନ।

ଯେତେବେଳେ ଏଇ ଚୁମା (ଚୁମ୍ବନ) ପଦଟିକୁ ନେଇ ମୁଁ ପରଖ କଲି, ସେତେବେଳେ ପହିଲେ ମୋର ସନ୍ଦେହ ହେଲା। ପାଞ୍ଚ ବରଷିଆ ମାଓରି ପିଲାମାନେ ବେଶ୍ ଉତ୍ତେଜିତ ହୋଇ ସେଇଟି ଆଲୋଚନା କଲେ। ବହିରେ ସେଇ ପଦଟିକୁ ପୁଣି ଦେଖିବାରେ ଲାଗିଲେ। ଆଉ, ତା'ପରେ ଦିନ ଆସି, ସେମାନେ 'ଚୁମା' (Kiss) ବନାନ କରି ପାରୁଛନ୍ତି ବୋଲି ଆମକୁ କହିଲେ।



ଏଇଟିକୁ ଗୋଟିଏ ସୂଚନା ରୂପେ ମୁଁ ଗ୍ରହଣ କରିନେଲି । ତେବେ ସବୁଠୁଁ ଆଗ ଆଉ ଟାଣୁଆ ପ୍ରବୃତ୍ତି 'ଭୟ' (fear) ପାଇଁ ସଠିକ୍ ପଦଟିଏ, ଖୋଜିବାରେ ଲାଗିଥିଲି । ଏଥିପାଇଁ ଆଗରୁ ତାଲିକାରେ ମୋର 'ଡର ଲାଗିଲା' (frightened) ପଦଥିଲା । କିନ୍ତୁ ଅଧିକ ଅକ୍ଷରର ଲମ୍ବା ପଦଟିଏ ହୋଇଥିବାରୁ ପହିଲେ ମୁଁ ଏହାକୁ ପଢ଼େଇବାକୁ ଠିକ୍ ମନେ କଲି ନାହିଁ । କିନ୍ତୁ ପଢ଼େଇବାକୁ ପଦଟି ସହଜ ଥିଲା ଏବଂ ମୁଁ ଅନେକଥର ଏ ପଦଟି ବ୍ୟବହାର କରିଛି । ଯାହାହେଉ, ମୁଁ ପୁଣି ଥରେ ପ୍ରୟୋଗ କରି ପରୀକ୍ଷା କଲି । ସେଇ ପଦ ଜିତିଲା । ଏପରି କି ''ଚୁମା'' ଠାରୁ ଅଧିକ ଭଲ ଫଳ ଦେଲା । କାରଣ: ପ୍ରବୃତ୍ତି ଦୁଇଟି ଭିତରୁ ଏଇଟି ମୁଖ୍ୟ ଓ ଆଗୁଆ ଥିଲା । ନୂଆ ଆସିଥିବା ପିଲାମାନେ ଏ ପଦଟି ସଙ୍ଗେ ସଙ୍ଗେ ଶିଖିଗଲେ । ଏଥି ସହିତ ଆଉ ଗୋଟିଏ ଘଟଣା ଘଟିଲା, ମୁଁ ଆଗରୁ ଏଇଟା ଲକ୍ଷ୍ୟ କରି ନଥିଲି । ନୂଆ ଆସିଥିବା ମାଓରି ପିଲାମାନଙ୍କ ଭିତରୁ ଜଣେ ବୁଢ଼ିଆ ପିଲା ଏଇ 'ଭୟ' ପଦଟିକୁ ଥରକୁ ଥର ଉଚ୍ଚାରଣ କରୁଥିଲା, ତା' ନିଜକୁ ନିଜେ କହୁଥିଲା ।

''କାନ୍ଦିଲା'' - ଏଇଟା ହେଲା ତୃତୀୟ ପଦ । ମୋର ଏଇ 'ଡରିଲା' (frightened : ଭୟ କଲା) ଓ 'କାନ୍ଦିଲା' (Cried) ପଦ ଦୁଇଟି ଭୟ ପ୍ରକୃତିର ଦୁଇପାଖ । କାରଣ ଓ ପରିଣାମ (Cause and effect)କୁ ଦେଖାଏ ବୋଲି ମୁଁ ଅନୁଭବ କରେ । ଚୁମା ପଦଟିକୁ ତ ତାଲିକାରେ ରଖିଛି । ତେବେ, ମୁଁ ଆଉ ଗୋଟିଏ ପଦ ବିଷୟ

ଭାବୁଛି, ଯାହା 'ଚୁମା' ଠାରୁ ଅଧିକ ଟାଣୁଆ ହୋଇଥିବ ଏବଂ ଏହାର କାରଣ (cause) ଦିଗଟିକୁ ବୁଝେଇ ପାରୁଥିବ । ସେଇ ପଦଟି 'ପ୍ରେମ' ହୋଇପାରେ ।

କିନ୍ତୁ ସେମାନେ ଏ 'ପ୍ରେମ' ପଦଟିକୁ ବ୍ୟବହାର କରୁଥିବା, ମୁଁ ଖୁବ୍ କମ୍ ଶୁଣିଛି । ଆଉ ସେଇ କାରଣରୁ ଏଇଟିକୁ ପରୀକ୍ଷା କରିନାହିଁ । ଏଇଟା ଆସନ୍ତା ସୋମବାର ଦିନ ପରୀକ୍ଷା କରିବି ବୋଲି ଭାବିଛି ।

ଫେବୃୟାରୀ ମାସରେ ଆସିଥିବା ପିଲାଙ୍କ ଭିତରୁ ପଠନରେ ପଛୁଆ ପିଲେ ଏବେ ପଢ଼ିବା ଆରମ୍ଭ କଲେଣି । ଏଇ ସବୁ ପଦ ପଢ଼ିବା ପାଇଁ ମଲାଟ (କାର୍ଡ଼)ରେ ଲେଖାଯାଇଛି ।

ଏବେ ମଧ୍ୟ ବ୍ୟବହାର କରାଯାଉଥିବା ପଦ: (ଦିଆ ଯାଇଥିବା ସଂଖ୍ୟା ପଢ଼ି ପାରୁଥିବା ପିଲାଙ୍କ ସଂଖ୍ୟା, ମୋଟ ନଅ ଜଣ ପିଲାଙ୍କୁ ନେଇ ମୋ ପଦ ତାଲିକାର ପଦ ପଢ଼ା ହୋଇଥିଲା ।)

### ପ୍ରଥମ ପରୀକ୍ଷା

| | |
|---|---|
| ଫୁଟ୍‌ବଲ୍ (Football) | ୩ ଜଣ |
| ମାର (Hit) | ୧ ଜଣ |
| ଲଢ଼ (Fight) | ୧ ଜଣ |
| ଚୁମା (Kiss) | ୭ ଜଣ |
| କାନ୍ଦିଲା (Cried) | ୫ ଜଣ |
| ମାଓରି ଯୁଦ୍ଧ ନାଚ (Hake) | ୬ ଜଣ |

ଡରିଲା (Frightened) ପଦ ବ୍ୟବହାର ପରେ

### ଦ୍ୱିତୀୟ ପରୀକ୍ଷା

| | |
|---|---|
| ଚୁମା (Kiss) | ୭ଜଣ |
| ମାଓରି ଯୁଦ୍ଧ ନାଚ (Hake) | ୪ ଜଣ |
| କାନ୍ଦିଲା (Cried) | ୫ ଜଣ |
| ଡରିଲା (Frightened) | ୯ ଜଣ |

# ପ୍ରୟୋଗରୁ ସିଦ୍ଧାନ୍ତ

୧. କ୍ରିୟା ପଦଗୁଡ଼ିକର ଅତୀତ କାଳର ରୂପ ବ୍ୟବହାର କଲେ ସରଳ ବାକ୍ୟ ଗଠନ ସହଜ ହେବ। କାନ୍ଦିବା (Cry) ପଦଟିକୁ ଅତୀତ କାଳରେ କାନ୍ଦିଲା (Cried) ବ୍ୟବହାର କରିବା ସହଜ ହେବ। ନଚେତ୍ କାନ୍ଦିବ (Will Cry) ଇତ୍ୟାଦି କହିଲେ ପିଲାଙ୍କୁ (Will) ଶବ୍ଦର ପ୍ରୟୋଗ ଶିଖାଇବାକୁ ହେବ। ତାହା ସହଜ ନୁହେଁ। ତେଣୁ ଅତୀତ କାଳର କ୍ରିୟା ପଦ ବ୍ୟବହାର କରି ରାଙ୍ଗୀ କାନ୍ଦିଲା (Rangi cried), ମା ଚୁମା ଦେଲେ (Mummy kissed)..... ଇତ୍ୟାଦି ଶିଖେଇବା ସହଜ।

୨. ଅସଲି ପଦଗୁଡ଼ିକ ବେଶ୍ ଶକ୍ତିଶାଳୀ। ତା'ପାଇଁ ଛବି ଯୋଗାଇବା ଅପରାଧ। ସେ ସବୁ 'ପଦ'ର ଛବି ଆଗରୁ ପିଲାର ମନରେ ରହିଛି। ପିଲା ବ୍ୟକ୍ତିଗତ ଭାବେ ନିଜ ଆବେଗରେ ସେ ସବୁକୁ ଧରି ରଖିଛି। ତେଣୁ ମୁଁ ପିଲାଙ୍କୁ ଛବି ନ ଦେଇ ଏଇ ସବୁ ପଦ ପଢ଼ିବାକୁ ଦିଏ।

୩. ଆସ (Come) ଆଉ (and) ଦେଖ (look): ଏଇ ତିନୋଟି ପଦ ବ୍ୟବହାର କରି ଦୁଇ ତିନୋଟି ଯାଏଁ ପହିଲି ଇଂରାଜୀ ପାଠ୍ୟ ପୁସ୍ତକ ଲେଖା ଯାଇଥାଏ। କିନ୍ତୁ ଇଂରାଜୀ ଭାଷାର ଏଗୁଡ଼ିକ ଦୁର୍ବଳ ପଦ କହିଲେ ଚଳେ। ତେଣୁ ଜେନେଟ୍ ଓ ଜନ୍ (Janet and John)ରୁ ପହିଲି ପଠନ ପ୍ରଭାବହୀନ।

୪. ପ୍ରଥମେ ମୁଁ ଜେନେଟ୍ ଓ ଜନ୍ (Janet and John)ରୁ ଆରମ୍ଭ ହୋଇଥିବା ଇଂରାଜୀ ପହିଲିପାଠ୍ୟ ପୁସ୍ତକଗୁଡ଼ିକୁ ବିଜ୍ଞାନ ସମ୍ମତ ଭାବି ଅନ୍ଧଭାବେ ଅନୁକରଣ କରିଥିଲି। ମୋର ପ୍ରଥମ ମାଓରୀ ପାଠ୍ୟପୁସ୍ତକ ଇହା'କା ବହି, ପ୍ରଥମଭାଗ(Ihaka Book One)ରେ ସେହି ଆସ (Come), ଦେଖ (Look) ଓ ଆଉ (and) ପଦ ବ୍ୟବହାର କରିଥିଲି। ସେଇଟା ଥିଲା ମୋର ଅତି ସାଂଘାତିକ ଭୁଲ। ବିନା ଚିନ୍ତାରେ କରିଥିବାରୁ ସେପରି ଭୁଲ ହୋଇଥିଲା। ପରୀକ୍ଷା ନିରୀକ୍ଷା ପରେ ଭାବିଚିନ୍ତି ମୁଁ ଠିକ୍ ବାଟରେ ପାଠ୍ୟ ପୁସ୍ତକ ଲେଖିଲି।

୫. ଅନ୍ୟ ଲୋକର ଭୁଲ ପାଇଁ ମାଓରି ପିଲାକୁ ଦଣ୍ଡ ଭୋଗିବାକୁ ପଡ଼େ। ଶିଶୁ ଶ୍ରେଣୀରେ ମାଓରି ପିଲା ବର୍ଷେ ଦି' ବର୍ଷ ଅଯଥା କଟେଇ ଦେଲେ ଉଚ୍ଚ ଶ୍ରେଣୀରେ ପହଂଚିଲାବେଳକୁ ସେ ତାର ଖରାପ ଫଳ ଭୋଗିଥାଏ। ଷଷ୍ଠ ଶ୍ରେଣୀ (Standand VI) ବା ଦ୍ୱିତୀୟ ଫର୍ମ (Form-II) ଶ୍ରେଣୀରେ ଏହି ପ୍ରଭାବର ପ୍ରତିଧ୍ୱନୀ ଶୁଣାଯାଏ।

ଏଠାରେ ପହଞ୍ଚିଲାବେଳକୁ ଯଦି ଚଉଦ ପନ୍ଦର ବର୍ଷ ବୟସ ହୋଇଯାଇଥାଏ, ତେବେ ତାହା ମାଧ୍ୟମିକ ଶିକ୍ଷା ପାଇଁ ବହୁତ ବିଳମ୍ବ ହୋଇଯାଇଥାଏ । ଆଉ ସେପରି ଅବସ୍ଥାରେ ସେମାନେ ମଧ୍ୟ ସବୁ ଉତ୍ସାହ ହରେଇ ବସିଥାନ୍ତି ଏବଂ ସାମାଜିକ ଅସୁବିଧା ଭିତରେ ଛନ୍ଦି ହୋଇ ପଡ଼ିଥାନ୍ତି ।

ଏଠାରେ ମୋର ସେଇ ଅସଲି ପଦ ତାଲିକାର ପଦ ଅନୁସାରେ ତିଆରି ମଲାଟ (କାର୍ଡ) ବ୍ୟବହାର ହୁଏ (ତଳେ ଦିଆଗଲା) । ଜଣେ ପଛୁଆ ମାଓରି ପିଲା ଏଗୁଡ଼ିକ ଦ୍ୱାରା ଅତି କମ୍‌ରେ ପଢ଼ି ପାରେ । ଏଗୁଡ଼ିକୁ ଦେଖୁ ଦେଖୁ ସେ ପଢ଼ିଚାଲିଥାଏ । ଆଉ ତା' ସଙ୍ଗେ ତା ମୁହଁ ଝଲସି ଉଠେ । ସେ ବୁଝିଯାଏ ।

Daddy (ବାପା)

Mummy (ମାଆ)

Ihaka (ଇହାକା)

Hit (ମାରିଲା )

Cried (କାନ୍ଦିଲା)

Daddy hit Ihaka (ବାପା ଇହାକାକୁ ପିଟିଲେ)

Ihaka cried (ଇହାକା କାନ୍ଦିଲା)

Kiss Ihaka Mummy (ମାଆ ଇହାକାକୁ ଚୁମା ଦେଲେ)

ଏହାକୁ ନେଇ ପଚାରିଲେ (ପ୍ରଶ୍ନ କଲେ) ସେ ତାହା ବୁଝିପାରେ । ଅଥଚ ସେ ପ୍ରାୟ ଛଅ ସପ୍ତାହ ଧରି ଆସ, ଆଉ, ଦେଖ (Come, and, look) ଭିତରେ ଅଣ୍ଟାଳି ହେଉଥିଲା ।

ମାଆ (Mummy) ଅସଲି ତାଲିକାର ଗୋଟିଏ ପଦ ହୋଇପାରେ । ଆହୁରି ମଧ୍ୟ ମୁଁ ଓ ମୋତେ (I ଓ Me)

ଏଇ ବଛା ପଦଗୁଡ଼ିକୁ ନେଇ କାର୍ଡ଼ ତିଆରି ହୁଏ (ମଲାଟରେ ପଦ ଲେଖା ହୁଏ) ।

କ୍ରିୟା ପଦଗୁଡ଼ିକ ପ୍ରତ୍ୟେକ ନିଜେ ନିଜେ ଗୋଟିଏ ଗୋଟିଏ ବାକ୍ୟ ହୋଇଯାଏ ।

କାର୍ଡ଼ (ପଦ ଲେଖା) ସହିତ ଛବି ଦେଖାଯିବା ଦରକାର ନାହିଁ ।

(ଏଠାରେ ଲେଖିକା ପିଲାଙ୍କ ହାତ ଲେଖାର କିଛି ନମୂନା ଅବିକଳ ଦେଇଛନ୍ତି)

ରଚନା

**1. (Riti) ରିତୀ**

| | |
|---|---|
| Hine said to | ହାଇନ୍ କହିଲା |
| Me look here | ମୋତେ ଇଆଡ଼େ ଦେଖ |
| She saw a cake then Rosie | ସେ ଗୋଟେ ପିଠା ଦେଖିଲା । ତା'ପରେ ରୋଜୀ |
| Hit us. Mary | ଆମକୁ ମାରିଲା । ମେରୀ |
| said the Kai is Cooked | କହିଲା ରୋଷେଇ ହୋଇଗଲା |
| then she said | ତା'ପରେ ସେ କହିଲା |
| hurry up or you | ଚଂଚଳ ଚାଲ ନଚେତ୍ ତୁମର |
| will get late | ଡେରି ହୋଇଯିବ । |

**2. Makere (ମାକେରେ)**

| | |
|---|---|
| Mummy and Daddy | ମାଆ ଆଉ ବାପା |
| took me to Wellington | ମୋତେ ୱେଲିଂଟନ୍ ନେଇଥିଲେ |
| I saw two policemen | ମୁଁ ରାସ୍ତାରେ ଦୁଇଜଣ |
| on the road. They | ପୋଲିସ୍‌ଙ୍କୁ ଦେଖିଲି |
| had a accident on | ସେମାନଙ୍କର ଗୋଟେ ଦୁର୍ଘଟଣା ହୋଇଥିଲା |
| The road | ରାସ୍ତାରେ |

**3. Matawhero(ମାଟାୱେରୋ)**

| | |
|---|---|
| Yesterday I came home | ଗତ କାଲି ମୁଁ ଘରକୁ ଡେରିରେ ଆସିଲି |
| late. My big brother | ମୋ ବଡ଼ ଭାଇ |
| gave me a hiding | ମୋତେ ମାଡ଼ ଦେଲେ |
| Then I start to cry | ତେଣୁ ମୁଁ କାନ୍ଦିଲି । |
| Then I have to go to sleep | ତା'ପରେ ମୁଁ ଶୋଇବାକୁ ଗଲି । |
| I am sick of writing | ଲେଖିବାକୁ ମୋତେ ଭଲ ଲାଗୁ ନାହିଁ |
| Thats' all | ଏତିକି |



4. Irini (ଇରିନୀ)

My father got drunk ମୋ ବାପା ମାତାଲ ଥିଲେ

and he drank all the beer by He self. ସେ ସବୁ ବିଅର ଏକା ପିଇଦେଲେ ।

and we had a party ଆଉ ଆମେ ଭୋଜି କରିଥିଲୁ ।

(ଇଂରାଜୀରେ ଭାବ ପ୍ରକାଶ ଦ୍ୱାରା ହିଁ ପିଲାଙ୍କ ପାଠୋନ୍ନତି ଅନୁଭବ କରିହେବ । ଓଡ଼ିଆ ଅନୁବାଦ ବିଶେଷ ସହାୟକ ନୁହେଁ - ଅନୁବାଦକ)

ଏମାନେ ହେଲେ ମୋର ପରୀକ୍ଷିତ ପିଲା । ଏମାନଙ୍କୁ ନେଇ ମୁଁ କରିଥିବା ପରୀକ୍ଷାର ଫଳରୁ ମୋର ଆଶା ପ୍ରମାଣିତ ହୋଇଛି । ମୋର ବିଶ୍ୱାସ, ମାଓରି ପିଲେ ଶିଶୁ ଶ୍ରେଣୀର ପାଠ ଦୁଇ ବର୍ଷରେ ପଢ଼ି ପାରିବେ- ତିନି ବର୍ଷ ନୁହେଁ । ଆଜି ଉପରବେଳା କେ. ଏଠାରେ ଥିଲେ । ଏଥିରୁ ସେମାନଙ୍କୁ ବିଶେଷ ସଫଳତା ମିଳିବ ବୋଲି ସେ ଭାବୁନାହାନ୍ତି । ତେବେ ରେରେମୌନା ତ ଏବେ ପ୍ରସ୍ତୁତ ହୋଇ ସାରିଲାଣି । ଆଉ ଓ୍ୱାଇଓ୍ୱିନୀ ପ୍ରାୟ ପ୍ରସ୍ତୁତ । ଆଉ ଏବେ ତ ହାତରେ ଆହୁରି ଛଅ ମାସ ସମୟ ଅଛି । ସେମାନେ ଏବେ ବାକ୍ୟ ଗଠନ ଶିଖୁଛନ୍ତି । ସେମାନଙ୍କର ଧାରଣା ଯେ, ଗୋଟିଏ ଧାଡ଼ିର ଶେଷରେ ପୂର୍ଣ ବିରାମ ଚିହ୍ନ (full stop) ଦିଆଯାଏ ।

ରୋଙ୍ଗୋ (Rongo) ଭଲ ନାଚେ । ତା'ର ପାଦର ଆଙ୍ଗୁଠି ଅତି ହାଲୁକା । ସେ କଳାପଟାରେ ବଡ ବଡ ଗାଢ଼ ଅକ୍ଷରରେ ଲେଖିଛି, ଯେମିତି ସଭିଏ ଦେଖି ପାରିବେ।

Mummy is crying — ମାଆ କାନ୍ଦୁଛନ୍ତି
Because Daddy — କାରଣ ବାପା
hit her in the face. Mummy is — ତାଙ୍କ ମୁହଁରେ ମାଡ ଦେଲେ ମାଆ
going to Nanny's today. — ଆଜି ନାନୀ ଘରକୁ ଯାଉଛନ୍ତି
Daddy is angry — ବାପା ରାଗିଛନ୍ତି

ରୋଙ୍ଗୋ ସୁନ୍ଦର ପୋଷାକ ପିନ୍ଧିଛି । ତା' ମୁଣ୍ଡର କଳା ରେଶମି ବାଳ ଯତ୍ନରେ ସଜା ହୋଇଛି । ସେ କାଗଜରେ ଲେଖିବା ଭଲ ବୋଲି ଭାବି ମୁଁ ତା'କୁ କାଗଜ ଦେଇଛି । ସେ କାଗଜରେ ଲେଖୁଛି ।

Just because — କାରଣ କେବଳ
Daddy got wild — ବାପା ଖୁବ୍ ରାଗିଗଲେ
and so I got — ତେଣୁ ମୁଁ ମଧ୍ୟ
wild because — ରାଗି ଉଠିଲି କାରଣ
Daddy was drunk — ବାପା ମାତାଲ ଥିଲେ
Then he hit — ତା ପରେ ସେ ମାରିଲେ
Rongo — ରୋଙ୍ଗୋକୁ

ରୋଙ୍ଗୋକୁ ସାରା ମାଓରି ଅଞ୍ଚଳର ଆଦରର ପିଲାଟିଏ ବୋଲି ମୁଁ ଭାବି ଆସିଛି । ସେ ସୁନ୍ଦର ନାଚେ । ଗୋଟିଏ ବହି, ପେନ୍‌ସିଲ୍ ଓ ରବର କିଣିବା ପରେ ସେ ଲେଖିଛି:

When I got.... up I got.... ready for school.... and I hurried... because Daddy.... was wild.... and the looked.... cross.

ଯେତେବେଳେ ମୁଁ ଉଠି.... ପଡ଼ିଲି, ସେତେବେଳେ ମୁଁ..... ସ୍କୁଲକୁ ଯିବାକୁ ପ୍ରସ୍ତୁତି ହେଲି ।..... ଆଉ ମୁଁ ତରତର ହେଲି;..... କାରଣ ବାପା.... ରାଗରେ ପାଚି ଯାଇଥିଲେ ।..... ଆଉ ତାଙ୍କ ଚେହେରା..... ବିଗିଡ଼ି ଯାଇଥିଲା ।

ଗୋରା ପିଲା ଡେନିସ୍ ତା' ଟିକି ପୁସ୍ତକରେ ନିଜକୁ ଲେଖିଛି ।

I hate.... going.... up in the sky...... When we die..... I hate the... sky because it.... is too high...... I got a growling.... last night.... because my..... sandals were.... wet.

ମୁଁ ଘୃଣା କରେ.... ଯିବାକୁ.... ଉପର ଆକାଶକୁ.... ଆମେ ମରିଯିବା ପରେ.... ମୁଁ ଘୃଣା କରେ..... ଆକାଶକୁ କାରଣ..... ସେଇଟା ଏତେ ଉଚ୍ଚ ।..... ଗତ

ରାତିରେ..... ମୁଁ ଚିଡ଼ି ଚିଡ଼ି ହେଲି ।...... କାରଣ ମୋ ଜୋତାଗୁଡ଼ିକ...... ଓଦା ଥିଲା ।

ଟେମ୍ ତ ମୋର ପୂରାପୂରି ମାଓରି ଅକ୍ଷରଗୁଡ଼ିକୁ ସଂଯତ ଭାବେ ସଜେଇ ସେ ଆଶ୍ଚର୍ଯ୍ୟଜନକ ଲେଖାଟିଏ ଲେଖିଛି ।

Last night... I fell out of..... bed so Daddy told.... Mummy to..... shift over.

ଗଲା ରାତିରେ.... ମୁଁ ଖଟ ଉପରୁ ପଡ଼ିଗଲି,..... ତେଣୁ ବାପା ମାଆଙ୍କୁ.... ସତର୍କ ହେବାକୁ କହିଲେ ।

*ଇରିନୀ* ସୁଙ୍ଗ୍ ଲେଖିଛି, ସେ ବୟସ୍କମାନଙ୍କ ସହିତ ସାଙ୍ଗ ହେବାକୁ ଅନାଇ ବସିଥାଏ ।

My Mummy..... is going to..... the funeral with my..... uncle. They went..... on the 8 o'clock...... bus. It is down at...... Utapepi. I don't know..... who died. She is...... coming back..... tomorrow. When..... she comes back..... she is going..... to town to get some.... meat.

ମୋ ମାଆ ମାମୁଁଙ୍କ ସାଥିରେ ଗୋଟିଏ ମଲା ଲୋକର ଶୁଦ୍ଧିକୁ ଯାଇଛନ୍ତି । ଆଠ ଘଣ୍ଟା ବେଳର ଗାଡ଼ିରେ ସେମାନେ ଯାଇଥିଲେ । ଏହା ଉଟାପେପିଠାରେ ଓଲଟି ପଡ଼ିଲା । କିଏ ମରିଛନ୍ତି ମୁଁ ଜାଣେନା । ଆସନ୍ତା କାଲି ଫେରି ଆସିବେ । ସେ ଯେତେବେଳେ ଫେରି ଆସିବେ, ସହରକୁ ମାଂସ ଆଣିବାକୁ ଯିବେ ।

Mummy said to Daddy give me that money else I will give you a hiding. Daddy swear to Mummy. Daddy gave the money to Mummy. We had a party. My father drank all the beer by hisself. He was drunk.

ମାଆ ବାପାଙ୍କୁ କହିଲେ ମୋତେ ପଇସା ଦିଅ, ନଚେତ୍ ମୁଁ ତୁମକୁ ପିଟିବି । ବାପା ମାଆଙ୍କୁ କଥା ଦେଲେ । ବାପା ମାଆଙ୍କୁ ପଇସା ଦେଲେ । ଆମର ଗୋଟିଏ ଭୋଜି ହୋଇଥିଲା । ମୋ ବାପା ସବୁ ବିଅର୍ ଏକା ପିଇ ଦେଲେ । ସେ ମାତାଲ୍ ହୋଇ ଯାଇଥିଲେ ।

ଇରିନୀ ସୁଂଗ ତା' ଖାତାରେ ଲେଖିଛି, ଏ ଖାତା ମୁଁ କିଣି ଦେଇଛି । କାରଣ ତା ଘରେ ଶିଶୁ-ଭରା ଆଉ ରୋଜଗାର ସବୁ ମଦ ପିଆରେ ଯାଏ ।

Mummy gave me a hiding and told me to go and get the paper. So I got the paper and took it to Mummy. Then I told Daddy that Mummy had the paper so Daddy told me to go and get the paper.

ମାଆ ମୋତେ ମାଡ ଦେଲେ, ଆଉ ଖବର କାଗଜ ଆଣିବାକୁ କହିଲେ, ତେଣୁ ମୁଁ କାଗଜ ଆଣିଲି ଆଉ ମାଆଙ୍କୁ ନେଇ ଦେଲି । ତା'ପରେ ମୁଁ ବାପାଙ୍କୁ କହିଲି, ମାଆ ଖବର କାଗଜ ରଖିଛନ୍ତି । ତେଣୁ ତାଙ୍କ ପାଖକୁ ଯାଇ ଖବରକାଗଜ ଆଣିବାକୁ ବାପା ମୋତେ କହିଲେ ।

''ଶ୍ରୀମତୀ ହେଣ୍ଡରସନ୍, ସେରେନ୍ ପାଖରେ ଛୁରୀ ଅଛି । ସେ ମୋ ପେଟ କାଟି ଦେଉଛି ।''

''କୋଲୀନ୍, ଟିକିଏ ଯାଅ ତ । ସେରେନ୍ ପାଖରୁ ଛୁରୀଟା ନେଇ ଆସ ।''

''ଶ୍ରୀମତୀ ହେଣ୍ଡରସନ୍, ମୁଁ ସ୍ୱାସ୍ଥ୍ୟ ଶିବିରକୁ ଗଲେ କୁମାରୀ ବର୍ଣସ୍‌ଙ୍କ ନିକଟକୁ ଚିଠିଟିଏ ଲେଖିବି ।''

''ଓ୍ୱାଇଓ୍ୱିନୀ, ମୁଁ ଭାବିଥିଲି, ତୁ ମୋତେ ଚିଠି ଲେଖିବାକୁ ଯାଉଥିଲୁ ।''

''ମୁଁ ପାରିବିନି । ଆପଣଙ୍କ ନାଆଁଟା ବେଶି ଲମ୍ବା ।''



"ଶ୍ରୀମତୀ ହେଣ୍ଡରସନ୍, ଆପଣ 'Boko' କୁ କିପରି ବନାନ କରନ୍ତି ?

"କାହିଁକି ? ତୁମେ କ'ଣ ଲେଖୁଛ ?"

"ସେ ମୋତେ 'ବୋକୋ'ରେ ମାରିଲା ।"

"କୋଲୀନ୍, ଏ 'ବୋକୋ' କ'ଣ ?"

"ଇରିନୀ, ତୁମେ ତୁମର ପେନ୍‌ସିଲ୍ ପାଇଁ ଚାରି ପେନ୍ (Pence, ପେନ୍‌ସ୍) ଆଣିଲେ ?"

"ମୋ ମାଆ..... ତାଙ୍କ ପାଖରେ ଚାରି ପେନ୍ (ପେନ୍ସ) ନଥିଲା ।"

"କୋଲୀନ୍, ଏଇଟା ସେଇ ଘର, ଯେଉଁଠି ଗଲା ସପ୍ତାହରେ ଚଉରାଅଶି ପାଉଣ୍ଡ କେବଳ ପଇସା ଖେଳ ଓ ମଦପିଆରେ ଖର୍ଚ୍ଚ ହୋଇଥିଲା । ସେ ପଇସା ଗୋଟିଏ ବଡ଼ ପରିବାର ପିଲାଙ୍କ ଭତ୍ତା ଓ ପଶମ (wool) ବିକ୍ରିର ଲାଭାଂଶ (bonus) ମିଶାଇ ପାଇଥିଲେ । ସବୁତକ ପିଲାଙ୍କ ପଇସା ।

"ଶ୍ରୀମତୀ ହେଣ୍ଡରସନ୍, ମୁଁ ଲେଖି ଲେଖି ବିରକ୍ତ ହୋଇ ଗଲିଣି ।"

"ଆଚ୍ଛା, ତେବେ ଯାଅ । ଆଉ ଲେଖ, "ମୁଁ ଲେଖି ଲେଖି ବିରକ୍ତ ।"

"ଶ୍ରୀମତୀ ହେଣ୍ଡରସନ୍, ଆପଣ କହିଥିଲେ, ଭିତରକୁ ଆସିଲେ ମୁଁ ପିଆନୋ ବଜେଇ ପାରିବି ।"

"ସେଇଟା ଠିକ୍ ।"

" ମୁଁ ଏବେ ବଜେଇପାରିବି ?"

"ତୁମେ ତୁମର ଲେଖା ଶେଷ କଲଣି ?"

"ନା ।"

"ଆଚ୍ଛା, ତେବେ ଲେଖା ଶେଷ କର । ତା'ପରେ ତୁମେ ପିଆନୋ ପାଖକୁ ଯିବ ।"

"କୋଲୀନ୍, ପ୍ରକୃତରେ ଏ ପିଲେ ଯେତେ ଯାହା କହୁଛନ୍ତି, ସେଥିରେ ମୁଁ କହିଥିଲି ବୋଲି ମିଶେଇ ଦେଉଛନ୍ତି ।"

"ଆପଣ ମଧ୍ୟ ସେମାନଙ୍କୁ ସେପରି ଅନେକ କହିଥା'ନ୍ତି ।"

"ସବୁ ନୁହେଁ ।

''ନା, ସବୁ ନୁହେଁ ।''

''ତୁମେ କ'ଣ ଶୁଣିଛ, ମୁଁ କହିଥିବା କଥାକୁ ପରେ ମନା କରେ ?''

''ହଁ ଆଜ୍ଞା ।''

''ଏବେ ମୋର ଅଭ୍ୟାସ କରିବା ସମୟ, ଶ୍ରୀମତୀ ହେଣ୍ଡର୍‌ସନ୍ । ''

''ହଁ, ଯାଅ । ବଜାଅ । ସବୁ ସ୍ୱର ଆଉ ତାଳ-ଲୟ ପ୍ରଥମେ ।''

''ଏ ପେନ୍‌ସିଲ୍‌ଟି ଭାଙ୍ଗିଗଲା, ଶ୍ରୀମତୀ ହେଣ୍ଡର୍‌ସନ୍ । ''

'' ଶ୍ରୀମତୀ ହେଣ୍ଡ୍ରର୍‌ସନ୍, ଆପଣ କହିଥିଲେ, ମୁଁ କାମ ସାରି ଦେଲେ ପିଆନୋ ବଜେଇ ପାରିବି ।''

''ନାହିଁ, ମୁଁ ସେପରି କହି ନାହିଁ''

'' ନାହିଁ, ଆପଣ କହିଥିଲେ, ଶ୍ରୀମତୀ ହେଣ୍ଡର୍‌ସନ ।''

''ମୁଁ ସେମିତି କହିଥିଲି କି, କୋଲୀନ୍ ?''

''ଆପଣ କହିଥିବା ମୁଁ ଶୁଣିଛି ।''

''ସବୁ ଛୋଟ ପିଲେ, ମୋ ପାଖକୁ ଆସିଯାଅ ।''

''କଳାପଟାରେ ଏ ବିଲଇ ଛବିଟି  ଥିବ ନା ଲିଭେଇ ଦେବି ?''

''ଶ୍ରୀମତୀ ହେଣ୍ଡ୍ରର୍‌ସନ୍, ଆସନ୍ତୁ, ପିଆନୋ ପଛରେ କଳାପଟାରେ ମୋ ଚିତ୍ର ଟିକୁ ଦେଖନ୍ତୁ ।''

''ସେଇ ସ୍ୱରଗୁଡ଼ିକୁ ଦୁଇ ହାତରେ ବଜାଅ, ମେରିଆନ୍ ।''

''ଆପଣ କହିଥିଲେ, ଆଜି ଉପରଓଳେ ମୁଁ ରଙ୍ଗ ଦେବି' ।

ସେଇଟା ଠିକ୍ । ରଙ୍ଗ ମିଶେଇ ତିଆରି କର ।''

''ମୋ ପାଖରେ କିଛି କାଗଜ ନାହିଁ ।''

''ମୁଁ ଭାବୁଛି, ମୁଁ ତୁମକୁ କିଛି କାଗଜ  ଆଣିବାକୁ କହିଥିଲି ?''

''କିଏ ଚୋରେଇ ନେଇଛି ।''

''ଆଙ୍ଗୁଠି ଚଲେଇବା ଭୁଲ ହେଉଚି, ମେରିଆନ୍ । ଏକ, ଦୁଇ, ତିନି, ତା'ପରେ ବୁଢ଼ା ଆଙ୍ଗୁଠି ।''

''ବେଚ୍ଚି କାନ୍ଦୁଚି ।''

''କୋଉଥି ପାଇଁ ? ଜିଆନ୍, ସେଇଟାକୁ ସିଲେଇ ମେସିନ୍‌ରେ ଠିକ୍ ଧାରରେ' ସିଲେଇ କରିବାକୁ ହେବ ।''

''ସେଭନ୍ ତା' ବେକରେ ବାଲି ପକାଇ ଦେଲା ।''

''କୋଲୀନ୍, ସେଭନ୍‌କୁ ନେଇ ଆସ ତ ।''

''ଏ ପଦଟି କଅଣ ?''

"Between" ବିଟ୍‌ୱିନ୍ (ମଧ୍ୟରେ)

ଏଟ୍‌ୱିନ୍("Atween")?

''ନା, ' ବିଟ୍‌ୱିନ୍ । ମୁଁ ତ ତୁମକୁ କହିଥିଲି । ଛୋଟ ପିଲେ, ଏଠାକୁ ଆସ । ୱିକୀ ବ୍ଲୋଜମ୍ ସେଇ ଛୋଟ ପିଲାଙ୍କୁ ମୋ ପାଖକୁ ନେଇ ଆସ ।''

'' ମୁଁ ମୋ ପେନ୍‌ସିଲ୍‌ଟି ପାଉନି..... ।

''କୋଲୀନ୍, ମୁଁ କହି ନଥିବା କଥାକୁ ଏମାନେ ମନରୁ କାଢ଼ି ମୁଁ କହିଛି ବୋଲି କହିବା, ତୁମେ କେବେ ଶୁଣିଚ ?''

''ହଁ, କେତେକ ସମୟରେ ।''

''କିଏ ମୋ ପେନ୍‌ସିଲ୍ ନେଇ ଯାଇଛି ।''

''କେବେ କୁହ ନାହିଁ -କିଏ ମୋ ପେନ୍‌ସିଲ୍ ନେଇଯାଇଛି । ମୁଁ ମୋ ପେନ୍‌ସିଲ୍ ହଜାଇ ଦେଇଛି ।''

''ଖେଳ ପ୍ରତିଯୋଗିତାରେ 'ଖ' ଦଳର କିଏ କପ୍ତାନ ହୋଇଛି, ଶ୍ରୀମତୀ ହେଣ୍ଡର୍‌ସନ୍ ?''

''ମୁଁ ମୋ ପେନ୍‌ସିଲ୍ ହଜେଇ ଦେଲି ।''

''କିନ୍ତୁ ତୁମକୁ ମୁଁ ଆଜି ସକାଳେ ଗୋଟେ ଦେଇଚି ।''

''ଖେଳ ପ୍ରତିଯୋଗିତାରେ 'ଖ' ଦଳର କିଏ କପ୍ତାନ ହେବ, ଶ୍ରୀମତୀ ହେଣ୍ଡର୍‌ସନ୍ ?''

''ମୁଁ ଏ ପର୍ଯ୍ୟନ୍ତ କାହାକୁ ଠିକ୍ କରିନି ।''

''ଆପଣ ହିରାନୀକୁ ବାଛିଥିଲେ ।''

‘‘ନିଶ୍ଚିତ ଭାବରେ ମୁଁ ବାଛି ନାହିଁ ।’’

‘‘ତେବେ, କିଏ ହେବ ?’’

‘‘ପରେ ମୁଁ ବାଛିବି । କୋଲୀନ୍, ଜିଆନ୍‌ର ସିଲେଇ ଉପରେ ଟିକିଏ ଆଖି ରଖ ।’’

‘‘ମୁଁ ମୋ ପେନ୍‌ସିଲ୍ ହଜେଇ ଦେଲି ।’’

‘‘ଭଲ କଲ । ମେରିଆନ୍ ଏଇ ଧୀର ସ୍ୱର ଠିକ୍ ।’’

‘‘ଆମେ କପ୍ତାନ୍ ବାଛି ଦେବୁ କି ?’’

‘‘ନାଇଁ । କପ୍ତାନ ବାଛିବା କାମ ମୁଁ ନିଜେ କରିବି । ମୁଁ ଏପରି ଜଣକୁ ବାଛିବି, ଯିଏ ନିୟମିତ ଭାବେ ଅଭ୍ୟାସ କରିଥିବ, ଆଉ କେବେ ମୁହଁ ଫୁଲେଇ ନଥିବ ।’’

‘‘ଆପଣ ହିରାନୀକୁ ବାଛିଥିଲେ ।’’

‘‘ହେଇଟି ସେଭନ୍, ଶ୍ରୀମତୀ ହେଣ୍ଡରସନ୍ ।’’

‘‘ପ୍ରକୃତରେ ନୁହେଁ ।’’

‘‘ଆପଣ ହିରାନୀକୁ ବାଛିବା ମୁଁ ଶୁଣିଥିଲି ।’’

‘‘ସେଭନ୍ କାହିଁକି ଏଠାରେ ?’’

‘‘ମୋ ପାଖରେ ପେନ୍‌ସିଲ୍ ନାହିଁ, ଶ୍ରୀମତୀ ହେଣ୍ଡରସନ୍ ।’’

‘‘ଇରିନୀକୁ କିଏ ପେନ୍‌ସିଲ୍‌ଟିଏ ଧାର ଦେଇ ପାରିବ ?’’

‘‘ହେଇଟି ନିଅ, ଇରିନୀ ।’’

‘‘ପ୍ରତିଯୋଗିତାରେ ‘କ’ ଦଳର କପ୍ତାନ କିଏ ?’’

‘‘ମୁଁ ବାଛିବା ଯାଏଁ, ଆପଣ ଅପେକ୍ଷା କରି ପାରୁ ନାହାନ୍ତି କାହିଁକି ?’’

‘‘ଶ୍ରୀଯୁକ୍ତ ହେଣ୍ଡରସନ୍ ଏବେ ସେ କଥା ଜାଣିବାକୁ ଚାହୁଁଛନ୍ତି । ହେଲେ, ସେ ପ୍ରତିଯୋଗିତାରେ ଭାଗ ନେବାକୁ ପଠାଇବେ ।’’

‘‘ସେଇଟା ହେଉଛି ଏମିତି ଗୋଟେ ପରିବାର କୋଲୀନ୍, ଯିଏ ପେନ୍‌ସିଲ୍‌ଟିଏ ପାଇଁ ଚାରି ପେନ୍ସ ଦେଇପାରେ ନାହିଁ, କିନ୍ତୁ ସପ୍ତାହ ଶେଷରେ ଚଉରାଅଶି ପାଉଣ୍ଡ ପାଣିକି ଫିଙ୍ଗି ଦେଇପାରେ ।’’

‘‘ମୁଁ ଏବେ ପିଆନୋ ବଜେଇ ପାରେ କି, ଶ୍ରୀମତୀ ହେଣ୍ଡରସନ୍ ?’’

''କ' ଦଳର କପ୍ତାନ କିଏ, ଶ୍ରୀମତୀ ହେଣ୍ଡରସନ୍ ?''

''ହେଇଟି, ସେଭନ୍‌କୁ ଆଣିଲି, ଶ୍ରୀମତୀ ହେଣ୍ଡରସନ୍।''

''ମୋ ପାଇଁ କିଛି ନୂଆ ସଂଗୀତ ଲେଖିଦେବେ କି, ଶ୍ରୀମତୀ ହେଣ୍ଡରସନ୍ ?''

''ବେଚି କାନ୍ଦୁଛି, ଶ୍ରୀମତୀ ହେଣ୍ଡରସନ୍।''

''ମୁଁ ସବୁ ରଙ୍ଗ ମିଶେଇ ତିଆରି କରି ଦେଲିଣି । ଶ୍ରୀମତୀ ହେଣ୍ଡରସନ୍ କିନ୍ତୁ ମୋ ପାଖରେ କିଛି କାଗଜ ନାହିଁ।''

''ଆରେ ଏ ପିଲେ ! ସବୁ ଛୋଟ ପିଲାମାନେ କଳାପଟା, ଚକ୍ ଓ ଡଷ୍ଟର୍ ନେଇ ଆସ । ମୋ ପାଖକୁ ଆସିଯାଅ । ଆସ, ଏ ମସିଣାରେ ସମସ୍ତେ ବସ ।''

''କଳାପଟା ପଛରେ ମୁଁ ଆଙ୍କିଚି । ମୋ କାମ ଦେଖିବାକୁ ଆସିବେନି ?''

''ଏଇ ବିଲେଇ ଆଉ ଫୁଲ ଛବିଟିକୁ ମୁଁ କଣ କରିବି, ଶ୍ରୀମତୀ ହେଣ୍ଡରସନ୍ ?''

''ଶ୍ରୀମତୀ ହେଣ୍ଡରସନ୍ ?''

''ଶ୍ରୀମତୀ ହେଣ୍ଡରସନ୍ ?''

କିଛିଦିନ ତଳେ ଶ୍ରୀ ଲପ୍ ଡେଲ୍ ଓ ଶ୍ରୀ ଟ୍ରେମେଇନ୍ ଆସିଥିଲେ । ସେମାନଙ୍କୁ ମୁଁ କହିଥିଲି, ''ଶିଶୁ ଶ୍ରେଣୀକୁ କୋଲୀନ୍ ସାଧାରଣ ଜ୍ଞାନ ଯୋଗାଉଛନ୍ତି । ସେଇଟା ଆମର ଏଠାରେ ବହୁତ ଅଭାବ ଥିଲା । ଏବେ ଆମେ ଠିକ୍ ଭାଗ ମାପରେ (ଭାରସାମ୍ୟ) ଆଗେଇଚାଲିଛୁ ।



''ଆଉ, ଆପଣ କ'ଣ ଯୋଗାଉଛନ୍ତି ?'' ସେମାନଙ୍କ ଭିତରୁ ଜଣେ ପଚାରିଲେ ।

ହେ ଭଗବାନ ! ଏଇଠି ମୋର ସମ୍ମାନ ଜଣେ ଷୋଳ ବର୍ଷର ଝିଅ ହାତରେ । ହାତ ଯୋଡ଼ିଲା ପରି ପଖାକୁ ବୁଲି କଥା ଆଦାୟ କରିବାକୁ ପଚାରିଲି, ''କୋଲୀନ୍ ମୁଁ କ'ଣ ଯୋଗାଉଛି ?''

କୋଲୀନ୍ ସହଜେ ଉଚା । ଏବେ ସେ ନିଜର ଉଚ୍ଚତା ଆଉ ଉପସ୍ଥିତ ଥିବା ଲୋକଙ୍କ ବିଷୟ ଅଳ୍ପ ସମୟ ଚିନ୍ତା କଲେ । ମୁଁ ଅପେକ୍ଷା କରିଥିଲି ।

''ଓଃ'' ଯୁବ ସୁଲଭ ପ୍ରଫୁଲ୍ଲତା ଓ ଆତ୍ମବିଶ୍ୱାସ ସହିତ କହିଲେ, '' ସେ ଧୈର୍ଯ୍ୟ ଯୋଗାନ୍ତି ।''

ମାଟାଓ୍ୱେରୋର ଜେଜେ ପିଟର୍ ଆମର ସଭାପତି, ଆଉ ଜଣେ ବୁଦ୍ଧିଜୀବୀ । ଗତକାଲି ସ୍କୁଲ କାମପରେ ସେ ଆମ ଘରକୁ ଆସି ଚା ପିଇଥିଲେ । ସେ ବଡ କ୍ଲାନ୍ତ ଦିଶୁଥିଲେ । ବେଶ ଓଜନିଆ ମଣିଷ, ଶହେ କି.ଗ୍ରା. ରୁ ଅଧିକ ହେବ । ମୁଣ୍ଡ ଚନ୍ଦା, ଆଉ ବୟସ ପଞ୍ଚଷଠୀ । ଭଲ ମାଓରି ଲୋକଙ୍କ ଭିତରୁ ସବୁଠୁ ଭଲ ଲୋକ-ଜଣେ ନୀତିବାଦୀ ଲୋକ, ଧର୍ମ ବିଶ୍ୱାସୀ ମଧ୍ୟ ।

''କିପରି ଅଛନ୍ତି ଆପଣ ?'' ମୁଁ ପଚାରିଲି । ତାଙ୍କ ଅବସ୍ଥା ଦେଖି ମୁଁ ଚିନ୍ତା କରୁଥିଲି ।''

କୋଣ ପାଇଁ ମୁଁ ପୂରା ପ୍ରସ୍ତୁତ ।'' ପ୍ରକୃତରେ ଗାଁର ସମାଧି ସ୍ଥାନ (Church Yard) ଟା ଗାଁର ଗୋଟେ କୋଣରେ ।

''କାହିଁକି ଏପରି କହୁଛନ୍ତି ?''

''ମୋ ଦେହରେ ଆଉ ଦମ୍ ନାହିଁ ।''

''ଗତଥର ଡାକ୍ତର କଣ କହିଥିଲେ କି ?''

''ମୁଁ ତିନି ସପ୍ତାହ ହେଲା ଡାକ୍ତରଙ୍କ ପାଖକୁ ଯାଇନି ।''

''ଆପଣ କଣ ସୁସ୍ଥ ଅନୁଭବ କରୁନାହାନ୍ତି, ଶ୍ରୀ ମାଟାରିନା ?''

''ମୋର ଏଇ ସର୍ଦ୍ଦିଟା ବହୁତ ବାଧୁଛି । ସେଇଟାକୁ ମୁଁ ଦୂର କରିପାରୁନି ।''

''ବଡ଼ ବିଚିତ୍ର କଥା ।'' ମୁଁ କେ. ଙ୍କୁ କହିଲି, 'ସେ ତ କଡା ନିୟମ ମାନି ଖାଦ୍ୟ

ଖାଆନ୍ତି । କିନ୍ତୁ ଏଇ ସାଧାରଣ ସର୍ଦ୍ଦିକୁ ପ୍ରତିରୋଧ କରିବା ଶକ୍ତି କାହିଁକି ଅଭାବ ହେଉଛି ?''

''ଆପଣ ଆଳୁ ଖାଉ ନାହାନ୍ତି, କାହିଁକି, ପିଟର୍ ?'' କେ. ପଚାରିଲେ ।

''ଆପଣଙ୍କର ଉତ୍ସାହ କମି ଯାଇଛି '' ମୁଁ କହିଲି, ''ଆମକୁ ଦେଖିବାକୁ ମଧ୍ୟ ଆପଣ ବେଶି ଆସୁନାହାନ୍ତି ।''

''ମୁଁ ଗତ ରବିବାର ଦିନ ଆସିଥିଲି । ମାତ୍ର ଆପଣମାନେ ସମସ୍ତେ କାମରେ ଯାଇଥିଲେ ।''

''କିନ୍ତୁ ଆମ ପାଇଁ ତ ପ୍ରତ୍ୟେକ ଦିନ ରବିବାର ।''

''ସତରେ ମୁଁ ସେହି କୋଣ ପାଇଁ ପ୍ରସ୍ତୁତ । ହେଲେ, ସମାଧି ଗାତ ଖୋଳିବାକୁ ସେତିକି ବଳ ମଧ୍ୟ ମୋ ଦେହରେ ନାହିଁ । କିନ୍ତୁ ମୁଁ ସାହସର ସହିତ କହିପାରିବି ଯେ, ଘରେ ମଧ୍ୟ ବିଡାଏ କାଠରେ ଅଳ୍ପ କିରୋସିନୀ ପକେଇଦେଲେ କାମ ଚଳିଯିବ । ମୁଁ ସେ ଉପରେ ଥିବି ।''

ମୁଁ ସେମାନଙ୍କୁ ଅତି ବଢ଼ିଆ ଚା' ପିଆଇଲି ।

ମୁଁ ମାର୍କ୍ କଟର୍ କଥା ଭାବୁଥିଲି । ସେ ଆଜି ଘରେ ରହିଯାଇଛି । ତା' ମାଆ ଆମ ସମସ୍ତଙ୍କୁ ଘୃଣା କରନ୍ତି, ତା' ପାଇଁ ନୂଆ ବହି ବି କିଣି ଦିଅନ୍ତି ନାହିଁ । ତାଙ୍କର ଅଭିଯୋଗ ହେଲା, ମାର୍କ୍ ଅତି ଚଂଚଳ ପାଠପଢ଼ାରେ ଆଗେଇ ଯାଉଛି । ମୋ ପାଠ ପଢ଼େଇବା ପ୍ରଣାଳୀରେ କେଉଁଠି କ'ଣ ସାଂଘାତିକ ଭୁଲ ରହିଯାଇଛି ବୋଧହୁଏ । ଏ ସମାଲୋଚନାରେ ମୁଁ ସ୍ତବ୍ଧ ହୋଇଗଲି । ଆଉ ଯେତେବେଳେ ଲିଖନ ଶିଖେଇବା ସମୟ ଆସିଲା, ମୁଁ ମାର୍କ୍‌କୁ କାଗଜ ଓ ପେନ୍‌ସିଲ୍ ଦେଲି ନାହିଁ । ତା' ମାଆ କାଳେ ସିଏ ଅତି ବେଗରେ ପଢ଼ିଚାଲିଛି କହିବେ ବୋଲି କହିଲି । ''ତୁମେ କଳାପଟା ଓ ଚକ୍ ଧରି ଲେଖ, ମାର୍କ୍ ।'' ତା' ପାଖରେ ବସିଥିବା ଟେମ୍ ପାଖରେ ପେନ୍‌ସିଲ୍ ଓ କାଗଜ ଥିଲା ।

''ମୁଁ ମାଆଙ୍କୁ ପଚାରିବି,'' ସେ ଅନୁନୟ କରି କହିଲା, ''ସେ ମୋ ପାଇଁ କିଣି ଦେଇ ପାରନ୍ତି ।''

''ନ ପାରନ୍ତି ମଧ୍ୟ ।''

ସେ ଗଭୀର ଭାବେ ଦୁଃଖିତ ଥିଲା । ମୁଁ ତାକୁ ସାନ୍ତ୍ୱନା ଦେଲି । ସେ ଖୁସି ହୋଇଉଠିଲା । କିନ୍ତୁ ଆଜି ସେ ଏଠାରେ ନାହିଁ । ମୁଁ ଅତିଶୟ ଅସ୍ଥିର ଆଉ ବିଶେଷ

ଲଜ୍ଜିତ । ମୁଁ ଜଣେ ଭୟଙ୍କର ଶିକ୍ଷୟିତ୍ରୀ !! ସେଦିନ ଭୋଜନ ପରେ, ମାର୍କ୍‌କୁ ଭେଟିଲେ ତା'କୁ କହିବି ବୋଲି ଭାବୁଥିଲି, "ମାର୍କ୍ ତୁମ ମାଆ ଠିକ୍ କହିଛନ୍ତି ।" ଗୋଟେ ନୂଆ ବହି ନେଇ ଆସିବା କେବେ ହେଲେ ଉତ୍ତମ କଥା ନୁହେଁ । ତା ମାଆ ଓ ଶିକ୍ଷକଙ୍କ ଭିତରେ ଥିବା ମତଭେଦ ଯୋଗୁଁ ସେ ପାଉଥିବା ପୀଡାରୁ ତା'କୁ ଖାଲି ରକ୍ଷା କରିବାକୁ, ମୁଁ ଏପରି ଭାବୁଥିଲି । କିନ୍ତୁ ଏ କଥା ମୁଁ ଭୁଲିଗଲି । ଆହା, ମୋ ପ୍ରିୟ ଟିକି ମାର୍କ !

"ହେଲେନ୍, ଆସନ୍ତା ସପ୍ତାହରେ ଆମେ ସବୁ ବାସ୍କେଟ୍ ବଲ୍ ପ୍ରତିଯୋଗିତା ପାଇଁ ସହରକୁ ଯିବା । ସେତେବେଳେ ମୁଁ ତୁମକୁ ମାଟିଆ ରଙ୍ଗର ସ୍କର୍ଟ୍(skirt) ପିନ୍ଧିଥିବା ଦେଖିବାକୁ ଚାହେଁ । ତୁମେ ତାହା କିଣି ଆଣ କି ସିଲେଇ କର କିମ୍ବା ଧାର କରି ଆଣ । ମୁଁ ଚାହେଁ, ମୋର ସବୁ ପିଲେ ଆସନ୍ତା ସପ୍ତାହରେ ମାଟିଆ ରଙ୍ଗର ପୋଷାକ ପିନ୍ଧିଥିବେ ।"

ଗଲା ଦୁଇ ବର୍ଷରେ ହେଲେନ୍ ପାଇଁ ପୋଷାକ କିଣା ଯାଇ ନାହିଁ।ତା' ପରିବାରରେ ୟୁନିଫର୍ମ୍ ପ୍ରତି ବି ଆଖି ଦିଆଯାଇ ନଥିଲା ।

"କୋଲୀନ୍, ଶ୍ରୀଯୁକ୍ତ ହେଣ୍ଡର୍‌ସନ୍‌କୁ ଦୟା କରି କହିଦେବ, ମୁଁ ତୁମକୁ ଗୋଟାଏରୁ ଦୁଇଟା ବାଜିଲା ଯାଏଁ ଆଉ ଛାଡ଼ିବି ନାହିଁ । ଶିଶୁ ଶ୍ରେଣୀରେ ନିଜେ ମୁଁ ପଢ଼ାଇବି । ଏଇ ନୂଆ ପିଲାଙ୍କୁ ବାଟକୁ ଆଣିବା ଯାଏଁ ଏପରି ଚାଲିବ ।"

ମଧ୍ୟାହ୍ନ ଭୋଜନ ସମୟରେ ମୁଁ ପ୍ରଧାନ ଶିକ୍ଷକଙ୍କୁ କହିଲି, "ଆଜ୍ଞା, ଆପଣ କ'ଣ ଭାବୁଛନ୍ତି?ଆପଣ ଏ ଟାଙ୍ଗିଆକୁ ବନ୍ଦ କରି ରଖି ପାରିବେ ?"

"ଟାଙ୍ଗିଆ ?"

"ସେଭେନ୍ ତ ସବୁବେଳେ ଅନ୍ୟମାନଙ୍କୁ ହାଣି ଦେବାକୁ ଚାହୁଁଛି ।"

"ଶ୍ରୀମତୀ ହେଣ୍ଡର୍‌ସନ୍, ସେଭେନ୍ ଆମ ସମସ୍ତଙ୍କୁ ସେ ଟାଙ୍ଗିଆରେ ମାରି ଦେବାକୁ ଚେଷ୍ଟା କରୁଛି ।"

"କୋଲୀନ୍ ! ଟାଙ୍ଗିଆ ! ସେଭେନ୍ !"

ଗତ ସପ୍ତାହରେ ମୁଁ ବସନ୍ତ ଋତୁର ଆନନ୍ଦ କିଛିଟା ଉପଭୋଗ କରିଥିଲି । ମୁଁ ମୋର ଲାର୍କ୍ ସଙ୍ଗୀତ (Lark theme) ଆରମ୍ଭ କରିଦେଲି । ପିଲାଏ କୋଳାହଳ କରୁଥିଲେ । କାହାଣୀ ଲେଖିବାରେ ଲଗେଇ ଦେଇ ମୁଁ ସେମାନଙ୍କୁ କିଛିଟା ଶାନ୍ତ କରିଦେଲି । ପବନ ଓ ପରିବେଶରେ ମୁଁ ବସନ୍ତର ଆନନ୍ଦମୟ ପ୍ରଭାବ ଗଭୀର ଭାବେ



ଅନୁଭବ କରୁଥିଲି । ଖୋଲା ଝରକା ଦେଇ ନିର୍ମଳ ସୂର୍ଯ୍ୟ କିରଣ ଅଜାଡ଼ି ହୋଇ ପଡୁଥିଲା । ମୁଁ ପିଆନୋ ପାଖକୁ ଧାଇଁ ଗଲି, ଆଉ ବଜେଇଲି 'ହାର୍କ୍, ହାର୍କ୍ ଦ' ଲାର୍କ୍.... । ଏତିକି ବେଳେ କିମିତି କ'ଣ ଗୋଟେ ଘଟିଗଲା । ମୁଁ ଯେପରି ମୋର ସଫଳତାର ଉଚ୍ଚତମ ସ୍ତରରେ ପହଞ୍ଚି ଗଲି - ଭାଷାରେ ମୁଁ ତାହା ବର୍ଣ୍ଣନା କରି ପାରୁନି - ଏଥିପାଇଁ ଉଚିତ ପଦ ଯେପରି ପାଇ ପାରୁନି ଏହାକୁ ମୁଁ ମୋ ଶିକ୍ଷା ପଦ୍ଧତିର ସୁଫଳ ବୋଲି ମନେ କରୁଛି କେବଳ ସେଇଥି ପାଇଁ ।

ଏଇଟା ସ୍କୁବେର୍ଟ୍ (Schubert)ଙ୍କର ଯାଦୁକାରୀ ସଙ୍ଗୀତର ମହାନ୍ ପ୍ରଭାବ- ଯାହା ଶହ ଶହ ବର୍ଷ ଧରି ସଙ୍ଗୀତର ଉଦ୍ଦୀପନାକୁ ପ୍ରବାହିତ କରି ଆସିଛି ; କିମ୍ବା





ମୋ ନିଜର ସଙ୍ଗୀତ ନା'ରେ ତାଙ୍କର ମହାନ୍ ସଙ୍ଗୀତକୁ ଅନୁଭବ କରଥିଲି; କମ୍ବା ଅଭୂତପୂର୍ବ ହେମାଳ ଶୀତ ପରେ ପବନରେ ବସନ୍ତର ପ୍ରଭାବ କିମ୍ବା ସେଇ ସଙ୍ଗୀତର ପରିପକ୍ୱ ମୁହୂର୍ତ୍ତ, ଯେତେବେଳେ ତାହା ଆସିଯିବା କଥା, ଆସିଯାଇଥିଲା-ମୁଁ ବୁଝି ପାରିନି ।

ମୋ ଡାହାଣ ପାଖରେ ହଳଦିଆ ରଙ୍ଗ ଝଲସି ଉଠିଲା ପରି ମନେ ହେଲା । ମୁଁ ଚାରିଆଡକୁ ଚାହିଁଲି । ଦେଖିଲି ବ୍ରିନୀ ନାଚୁଛି । ମୁଁ ଏକାବେଳକେ ସ୍ତବ୍ଧ ହୋଇଗଲି । ସେଇଟା ଗୋଟିଏ ସୁନ୍ଦର ଉଚ୍ଚ କଳାତ୍ମକ ପ୍ରକାଶ ନୃତ୍ୟ - ଗତ କେତେ ଦିନରେ



ନୂତନ ଭାବେ ସାଧନା କରି ସଫଳତା ଲାଭ କରିଛି । ସେ ନୃତ୍ୟ ଯେପରି ଉପସ୍ଥିତ ସମୟର ବହୁତ ଆଗରେ । ସଙ୍ଗୀତର ତାଳେ ତାଳେ ନାଚି ତା'ର ଭାବଧାରାକୁ ଅତି ସ୍ପଷ୍ଟ ଭାବରେ ପ୍ରକାଶ କରି ପାରିଛି । ଅନ୍ୟ ତିନୀଟି ମଧ୍ୟ ତା ସହିତ ଯୋଗଦେଲା । ପରସ୍ପରକୁ ଆଉ ପରସ୍ପରଠାରୁ ହସ୍ତ ପ୍ରସାରଣରେ ସେମାନଙ୍କର ବାହୁ ଆଉ ଦେହର ସୁଢ଼ଳ ଗଠନରେ ସଙ୍ଗୀତର ଭାବଧାରା ସ୍ପଷ୍ଟ ହୋଇ ଚାଲିଲା । ଦୁଇଟି ମାଟିଆ ଶିଶୁ ପ୍ରାଣ ଗାଢ଼ ହଳଦିଆ ପୋଷାକ ପିନ୍ଧି ପରୀ ପରି ନାଚି ଉଠୁଥିଲେ ।

ବେଳେବେଳେ ଜୀବନ ଆମ ପକ୍ଷେ ସହାୟକ (ଅନୁକୂଳ) ହୋଇଥାଏ । ବିଶ୍ୱାସ କରନ୍ତୁ, କି ନ କରନ୍ତୁ ଟେବୁଲ୍ ଉପରେ କ୍ୟାମେରା ଥିଲା, ସେଥିରେ ଫିଲ୍ମ ବି ଥିଲା ।

''କୋଲୀନ୍, କ୍ୟାମେରାରେ ଫଟୋ ଉଠାଅ ।''

କିନ୍ତୁ ସେଇଠି ବ୍ୟସ୍ତତା ନ ଥିଲା । ରୋନାଲ୍ଡ୍ ଉଠି ଆସିଲା, ତା' ପଛକୁ ମାଟାଓ୍ୱେରୋ, ଟିକି ଟିକି ଦୁଇ ଟ-ମାଟି ଭଉଣୀ, ପଛକୁ ପଛ ରିଟି, ହିନେ.... ଆଉ ସେଇଠି ମୁଁ ସୁନ୍ଦରତମ ଦୃଶ୍ୟଟିକୁ ଦେଖିଲି, ଯାହା କେବେ କେଉଁଠି ଦେଖି ନଥିଲି । ପବନରେ ପହଁରିଲା ପରି ଘୂରି ବୁଲି ସେମାନେ ସ୍କୁବେର୍ଟ୍‌ଙ୍କ ବସନ୍ତ ସଙ୍ଗୀତ ସୁରର ତାଳେ ତାଳେ ନାଚିବାରେ ଲାଗିଲେ ।

ସେମାନେ ଏ ସଙ୍ଗୀତ କେବେ ଶୁଣି ନଥିଲେ । ଏମିତି ଆଶ୍ଚର୍ଯ୍ୟଜନକ ଭାବେ କେବେ ସେମାନେ ନାଚି ନଥିଲେ । ପୂରାପୂରି ସ୍ୱତଃସ୍ଫୁର୍ତ୍ତ । ମନକୁ ମନ ନାଚି ଉଠିଥିଲେ । ଏକାବେଳକେ ରଚନାତ୍ମକ-ନିଜର ଭାବଧାରାର ପରିପ୍ରକାଶ ।

ସ୍କୁବେର୍ଟ୍‌ଙ୍କ ଉଦ୍ଦେଶ୍ୟରେ ମୋର ଶ୍ରଦ୍ଧା ଓ ଭକ୍ତିର ଫୁଲ ସବୁ ଅର୍ପଣ କରି ଦେଲି । କେବଳ ଗୋଟିଏ ରଖିଦେଲି ନିଜ ପାଇଁ । ଏହା ମୋ ପାଇଁ ଏକ ମଧୁର ସ୍ମୃତି ।

ଏବେ ମନେ ପଡ଼ିଲା, କ୍ୟାମେରାଟି ଯଦିଓ ଠିକ୍ ଭାବେ ରଖାଯାଇଥିଲା, ଯେ କେହି ହେଲେ ବି ଫଟୋ ଉଠେଇ ପାରିଥାନ୍ତା । ଛବିଗୁଡ଼ିକ ବୋଧହୁଏ ଅସ୍ପଷ୍ଟ ହୋଇଥିବ । କିନ୍ତୁ କିଛି ବି ବିଗିଡ଼ି ନାହିଁ । ଆଜି ରାତିରେ କୋଲୀନ୍ କ୍ୟାମେରାଟିକୁ ନେଇ ଟାରାଡେଲ୍ ସହରକୁ ଯାଇଛନ୍ତି - ଫିଲ୍ମ ଧୋଇବାକୁ ।

"ଗତକାଲି," ଦି' ପହର ଭୋଜନ ସମୟରେ ମୁଁ ପ୍ରଧାନ ଶିକ୍ଷକଙ୍କୁ କହିଲି, ''ଟମ୍ ମୋ ଟମାଟି ଛୁଆକୁ ମାଡ଼ ମାରିଚି ।''

''କ'ଣ ପାଇଁ?''

''ତା' କଥା ନ ମାନିବାରୁ । ଏ କଥାଟା ଟିକେ ଚିନ୍ତା କରନ୍ତୁ ତ । ଟମାଟି ପିଲା କେବେ କାହା କଥା ମାନନ୍ତି ? ଜନ୍ମରୁ ତ ଏଇ ଟ-ମାଟି ଛୁଆମାନେ କେବଳ ନ ମାନିବାଟା ଅଭ୍ୟାସ କରି ନେଇଥାନ୍ତି । ତାଙ୍କର ଚେହେରା ଆଉ ଚଳଣି ଦେଖି ଆପଣ ସେଇଟା କହି ପାରିବେ । ଅତି ଯତ୍ନରେ ଏ ଛୁଆଙ୍କୁ କିଛିଟା ମାନି ଚଳିବା ପରି ଅନୁଶାସନ ଭିତରକୁ ମୁଁ ଆଣି ପାରିଛି । ମୋ ଉପରେ ତା'ର ବିଶ୍ୱାସ ଅଛି । ଓପାସମ୍ (ମୂଷା ଜାତିର ଏକ ଜୀବ) ପରି ବଣୁଆ ଆଉ ଲାଜକୁରା; କିନ୍ତୁ ଏମାନେ କେତେ ସୁନ୍ଦର ଓ କୋମଳ !''

''ଟମ୍ ନିଜେ ଗତ କାଲି ଭୋଜନ ପରେ ମୋତେ ଏ କଥା କହିଥିଲା ।''

''ଏ ଟ ମାଟି ପିଲା,'' ମୁଁ ମୋ ନିଜ ଭାବନାକୁ ଘୋଡ଼େଇବାକୁ ଉତ୍ତର ଦେଲି, ''ଭଗବାନ, କି ମଣିଷ, କାହାରିକୁ ମାନେ ନାହିଁ; କେବଳ ଶିକ୍ଷକଙ୍କୁ ଯାହା ଟିକିଏ ମାନେ ।'' ସେତେବେଳେ ମୁଁ ଏତେ ଅଧିକ ରାଗି ଯାଇଥିଲି ଯେ, ଅଗତ୍ୟା କଥା ବଦଳେଇ ଦେଲି ।

ସେ ମାଟାଓ୍ୱେରୋଙ୍କୁ ମଧ୍ୟ ମାଡ଼ ମାରିଛି - ତା'କୁ ସେ 'ଠକ' କହିବାରୁ । ସ୍କୁଲରେ ଏହି ପଦଟି କହିବା ମନା (ବେ-ଆଇନ) । ହେଲେ, ଏଇ ପଦଟିକୁ ମନା କରି ମୁଁ ମୋର ଛୋଟ ଛୋଟ ପିଲାମାନଙ୍କୁ ସେପରି କିଛି ସତର୍କ କରି ନାହିଁ। ମାଟାଓ୍ୱେରୋ କିନ୍ତୁ ସେ ଦିନଠୁଁ ଆହୁରି ଭଲକାମ କରୁଛି । ତା' ପକ୍ଷେ ଯାହା ବିଶେଷ କଠିନ, ସେପରି ବିଷୟ ଉପରେ ମନଦେଇ ଅଧିକ ପରିଶ୍ରମ କରୁଛି । ଆପଣ ତ ଜାଣନ୍ତି, ଏଇ ବାଳକଟିକୁ ନେଇ ମୁଁ ମୋର ଭୁଲ ପାଇଁ କ'ଣ ଚିନ୍ତା କରୁଥିଲି । ଯଦିଓ ତାର ରଚନାଲେଖାରୁ ଜଣାଯାଉଛି ଯେ, ତାଙ୍କ ଘରେ ମାରପିଟ ରହିଛି ।



ଶ୍ରୀମତୀ କଟରଙ୍କ ଅପ୍ରିୟ କାହାଣୀଟିକୁ ବନ୍ଦ କରିବା ଆଗରୁ ମୁଁ ଆପଣଙ୍କୁ ଦୁଇଜଣ ଗୋରା ପିଲା ଡେନିସ୍ ଆଉ ମାର୍କଙ୍କ କଥା କହୁଛି । ସ୍କୁଲଠାରୁ ମାଇଲିଏ ଦୂରରେ ଏଇ ରାସ୍ତା କଡ଼ରେ ପାଖ ପାଖ ଘରେ ଏ ଦୁହେଁ ରହନ୍ତି । ମାର୍କ୍‌କୁ ସ୍କୁଲକୁ ଆଣିବା ଓ ଘରକୁ ନେବାକୁ କଟର୍‌ଙ୍କ ଗାଡ଼ି ଚାରିଥର ସ୍କୁଲ ଫାଟକ ଯାଏଁ ପ୍ରତିଦିନ ଆସିଥାଏ । ଉଡ୍‌ସ୍‌ଙ୍କ ଗାଡ଼ି ବି' ଥର ଆସେ । କିନ୍ତୁ ଏଇ ଦୁଇ ଗୋରା ପରିବାର କେବେହେଲେ ଗୋଟିଏ ଗାଡ଼ିରେ ଆସନ୍ତି ନାହିଁ । ଏସବୁ ଭିତରେ ଡେନିସ୍ ପରିବାରଟି ଏ ସବୁ ବିଷୟରୁ ଦୂରରେ ଥାଏ । ଆଜି ସକାଳେ ମୁଁ ଲାର୍କ୍ ଗୀତର ପଦଗୁଡ଼ିକ ପିଲାଙ୍କୁ ଶିଖାଇବାକୁ ଆରମ୍ଭ କରିଥିଲି ।

ମୁଁ ଆରମ୍ଭ କଲି, ''ହାର୍କ୍, ହାର୍କ୍ ଦି ଲାର୍କ୍......'' କିନ୍ତୁ ଏ ସମୟରେ ମାର୍କ୍ ଚଟାଣରେ ପାଦ ବାଡ଼େଇ ଚାଲୁଥିଲା । ତା ଚମଡା ଜୋତାରେ ଧାତବ ଗୋବ ସବୁ ଲାଗିଥିଲା ।

ମୁଁ ଗାଇଲା ପରେ ପିଲାମାନେ ପାଳି ଧରି ଗାଇଲେ ।

''କ୍ଲକ୍, କ୍ଲକ୍ ଦ' ଲାର୍କ''

''ହାର୍କ୍ ହାର୍କ୍ ଦ' କ୍ଲର୍କ୍ ।''

***କୋଲୀନ୍‌ଙ୍କୁ ପରାମର୍ଶ :***

କୋଲୀନ୍, ମୁଁ ଆଜି ସ୍କୁଲକୁ ଯାଉନି । ତୁମେ ଦୟା କରି 'ପୁରୁଣା ନୀଳ' ମାଓରି ବହିଟିକୁ ମାର୍କ୍‌କୁ ଦେଇ ଦେବ । ଭଣ୍ଡାର ଘର ବହି ଥାକରେ ଗୋଟିଏ ନୀଳ ପେଡ଼ି ଅଛି । ଏ ବହିଟି ସେ ଭିତରେ ଅଛି । ନିଶ୍ଚୟ ଦେବ । ନହେଲେ ସେ ହତାଶ ହୋଇ ପଡ଼ିବ । ଆଉ ଦୟା କରି ଆଜି ଇହାକା (ଯୁଦ୍ଧ ନୃତ୍ୟ) ବନ୍ଦ କରିବ । ଏଇଟା ପିଲାଙ୍କୁ ଅତି ଅଧିକ ଉତ୍ତେଜିତ କରୁଛି । ଅଧିକନ୍ତୁ, ଏହାକୁ ମୁଁ ବିଶେଷ କାର୍ଯ୍ୟକ୍ରମ ପାଇଁ କେବଳ ରଖିଛି । ଶୁକ୍ରବାର ଦିନ ଆରମ୍ଭ କରାଯାଇଥିବା ପିଲାଙ୍କ ରଚନାଗୁଡ଼ିକ ମୁଁ ଏଥିସହ ପଠାଉଛି । ସେମାନେ ଲେଖା ପୂରା କରନ୍ତୁ, ଦେଖାଯାଉ, ସେମାନେ ସେ ଦିନ ଯାହା ଭାବିଥିଲେ, ତାହାକୁ ଏବେ କେତେ ଦୂର ମନେ ରଖିପାରିଛନ୍ତି । ଆମର କାଗଜ ଅଭାବ ଅଛି । ଆଉ ଯଦି ପାରିବ, ଖେଳ ଘଣ୍ଟାରେ 'ଗ' ଦଳର ଗୋଟିଏ ସଭା ବସେଇ ବୁଧବାର ଦିନ ପାଇଁ ହଜଦିଆ ଢର୍ସି ବିଷୟ କହିଦେବ । ଭୋଜନ ପରେ କାହାଣୀ ଆଉ ଚିତ୍ରାଙ୍କନ ରଖିବା ତୁମ ପାଇଁ ଭଲ । ଗୀତ ତ ଏବେ ସୁଦ୍ଧା, ''କ୍ଲକ୍, କ୍ଲକ୍, ଦ'ଲାର୍କ୍ ।''.....ସେ ସବୁ ପାଇଁ ତୁମକୁ ଧନ୍ୟବାଦ ।

ଆସନ୍ତାକାଲି ହେଷ୍ଟିଂସ୍‌ଠାରେ ରାଜ୍ୟର ସବୁ ପ୍ରାଥମିକ ବିଦ୍ୟାଳୟରେ ବାସ୍କେଟ୍ ବଲ୍ ଦଳ ଭିତରେ ଚାମ୍ପିଅନ୍ ପ୍ରତିଯୋଗିତା ହେବ । ଡଜନ୍ ଡଜନ୍ ଦଳ ଭାଗ ନେବେ । ଗତବର୍ଷର ବିଜୟୀ ଦଳ ପାକି-ପାକିକୁ ହରେଇବାର ପନ୍ଦର ଦିନ ହେଲାଣି । ଏ ଭିତରେ ମୁଁ ମାନ୍ଦା ହୋଇ ପଡ଼ିଛି, କୌଣସି ଅଭ୍ୟାସ କରେଇନି । ତଥାପି ମୁଁ ଚିନ୍ତିତ ନୁହେଁ । ସେମାନେ ଠିକ୍ ସତେଜ ଓ ସଚେତନ ରହିଛନ୍ତି । ମୁଁ ଭାବିଥିଲି, ଆଉ ସତରେ ମଧ, ତାଙ୍କ ଭିତରେ ମେଳ ରହିଛି, ସେମାନେ ସେଇଟା ଜାଣନ୍ତି । ଯାହାହେଉ, ଆଜି ମୁଁ ସ୍କୁଲକୁ ଯାଇଥିଲି, କେବଳ ଆସନ୍ତାକାଲିର କାମ ପାଇଁ । ଅଭ୍ୟାସରେ ମୁଁ ସେମାନଙ୍କୁ ବେଶ୍ ସଜାଗ କରି ଦେଇଛି । କିନ୍ତୁ ଦୁଃଖର କଥା; ଆଃ, କଣ ନ ହେଇଚି ! ଏ ଭିତରେ ସେମାନେ ଗାଁ (ପା')ରେ ଖେଳୁଥିଲେ- ହେଲେ, ମୁଁ ନୀତିନିୟମ ଅନୁସାରେ ଯେତେ ସବୁ କୌଶଳ, ଯନ୍ ଆଉ ବେଗ ବିଷୟ ଶିଖାଇଥିଲି, ସେସବୁ ବିଗାଡ଼ି ଦେଇଛନ୍ତି ! ମୁଁ ତ ଆଜି ସେସବୁ ଦେଖି ଚେତା ହରେଇଲା ପରି ହୋଇଗଲି ! ଫଳ କ'ଣ ହେଲା !! ସବୁ ନଷ୍ଟ ହୋଇଯାଇଛି !!! ସ୍କୁଲ ସମୟ ପରେ ଅନ୍ୟମାନଙ୍କୁ ମୁଁ ଅତି ଦୁଃଖରେ ଏ କଥା କହିଲି । ''ମୁଁ ଭାବିଥିଲି'', ମୁଁ ସେମାନଙ୍କୁ କହିଲି, ''ଆମେ ଆସନ୍ତା କାଲି ବହୁତ କିଛି ପାଇବା । କିନ୍ତୁ ମୁଁ କହି ରଖୁଛି, ଆମେ କିଛି ପାଇବା ନାହିଁ । ସବୁ ହରେଇ ବସିନୁ !''

**ପ୍ରତିଯୋଗିତାରେ**

**ଆମେ**

**ବିଜୟୀ ହେଲୁ ।**

ପ୍ରତିଯୋଗିତା ପାଇଁ ଅନେକଗୁଡ଼ିକ ବାସ୍କେଟ୍ ବଲ୍ କୋର୍ଟ କରାଯାଇଥିଲା- ଗୋଟେ ମାଇଲ୍‌ର ଚଉଠେ ଲମ୍ବା ଏହି ଜାଗାରେ ହଜାରେରୁ ଅଧିକ ଝିଅ ନୀଳ ରଙ୍ଗର ୟୁନିଫର୍ମ୍ ପିନ୍ଧି ସ୍ଥାନଟିକୁ ନୀଳ ରଙ୍ଗରେ ରଙ୍ଗୀନ କରି ଦେଇଥିଲେ । ତା' ମଝିରେ ଆମର ସତେଇଶି ଜଣ ମାଓରି ଝିଅ ତାଙ୍କ ଗାଢ଼ ମାଟିଆ ରଙ୍ଗର ପେଣ୍ଟ୍ ଉପରେ ଗାଢ଼ ହଳଦିଆ ରଙ୍ଗର ସ୍ବଇଟର ପିନ୍ଧି କୋର୍ଟ ଆଡ଼କୁ ଆଗେଇ ଚାଲିଲେ । ଲାଗୁଥିଲା, ସତେ ଯେପରି ତରଳି ଯାଇଥିବା ସୁନାର ସ୍ରୋତଟିଏ ଦୁଇ ନୀଳ କୂଳ ମଝିରେ ବହି ଯାଉଛି ! ଜନଗହଳି ଭିତରେ ସେମାନେ ସେଇ ପଡ଼ିଆର ଶେଷ ଭାଗରେ ଥିବା ତୃତୀୟ ଆଉ ଚତୁର୍ଥ କୋର୍ଟ୍‌ରେ ଯାଇ ପହଞ୍ଚିଲେ । ସେଥିରୁ ନଅଜଣ ଉପରବେଳାର ଖେଳକୁ ଅପେକ୍ଷା କରିଥା'ନ୍ତେ । କିନ୍ତୁ ଆମ ଦଳ ଗୋଟିଏ ପରେ



ଗୋଟିଏ ଖେଳ ଜିଣି ଅନ୍ୟ ଦଳଗୁଡ଼ିକୁ ହରେଇ ଆଗକୁ ମାଡ଼ିଚାଲିଲେ । ହାରିବା ଦଳଗୁଡ଼ିକ ପ୍ରତିଯୋଗିତାରୁ ବାଦ୍ ପଡୁଥାନ୍ତି । ଶେଷରେ ଅନ୍ତିମ ପ୍ରତିଯୋଗିତାରେ ଆମ ଦଳ ହିଁ ବିଜୟୀ ହେଲେ ।

ଏଇ ହଳଦିଆଗୁଡ଼ାକ କିଏ ? ସବୁ ଦିଗରୁ ଶୁଭୁଥାଏ । ସେଇଟା ହେଉଛି, ମୋର ଧୀରସୁସ୍ଥ 'କ' ଦଳ ।

ମୋ ସ୍ୱର ଦବି ଯାଉଥିଲା । ''ରୋଣ୍ଡା ।'' ମୁଁ ଧୀର ସ୍ୱରରେ ଡାକିଲି, ''ଜୋର୍‌ରେ ପାଟିକରି କୁହ- 'ମାଡ଼ିଚାଲ ଫର୍ଣ୍ଣହିଲ୍, ମାଡ଼ିଚାଲ ।''

''ମାଡ଼ିଚାଲ ଫର୍ଣ୍ଣହିଲ୍ !'' ସେ ଚିତ୍କାର କରି ଉଠିଲା । ''ନେଟା ! ପୋଲି ! ଲୋଟାସ୍ ! ଡାକ ପକାଅ :'ମାଡ଼ିଚାଲ, ଫର୍ଣ୍ଣହିଲ୍'- ମୋ ପାଇଁ କୁହ ।''

ଚିତ୍କାର ! ଚିତ୍କାର ! ''ମାଡ଼ିଚାଲ ଫର୍ଣ୍ଣହିଲ୍ ! ଆଗକୁ....ଫର୍ଣ୍ଣହିଲ୍ !''

ମୋର 'କ' ଦଳ ଶେଷରେ ତା'ର ଏଇ ପଞ୍ଚମ ଖେଳ ଖେଳ ଖେଳୁଛି- ମଝିରେ ହାଲିଆ ମାରିବାକୁ ସମୟ ପାଇନି । ସବୁ ପିଲେ ହାଲିଆ ହୋଇ ପଡ଼ିଛନ୍ତି । ଆଉ, ଖେଳୁଛନ୍ତି ତ ପୂରାପୂରି ପା' (ଗାଆଁ) ଢାଞ୍ଚାରେ । ହେଲେ ଆବେଗରେ ଏପରି ଖେଳିଲେ ସେମାନେ ହାରି ଯାଇପାରନ୍ତି ! ଆବେଗରେ ସେମାନେ ପ୍ରାଣମୂର୍ଚ୍ଛା ଖେଳ ଖେଳୁଛନ୍ତି । ଭୟଙ୍କର ଭାବରେ । ମୁଁ ସମ୍ଭାଳି ପାରିଲିନି । କୋର୍ଟ ଭିତର ଯାଏଁ ମାଡ଼ିଗଲି । ''ଡେଲା !'' ମୁଁ ଧୀରେ ଡାକିଲି । ''ଏମିତି ଦୂରକୁ ବଲ୍ ଫିଙ୍ଗ ନାହିଁ ।''

ମୁଁ ବଲ୍‌ର ପିଛା କରି ଗୋଲ୍‌ପୋଷ୍ଟ ଯାଏଁ ମାଡ଼ିଗଲି । ''ଦମ୍ ନିଅ, ଟାଟୁ ! ''— ସେ ବଲ୍‌ଟିକୁ ଲକ୍ଷ୍ୟ କରି ଫିଙ୍ଗୁଥିଲା ।

ପିଲାଏ ତେଜି ଉଠୁଥିଲେ । ସେ ଭିତରେ ମୋର ମନେ ପଡ଼ିଗଲା :ଖେଳ ସମୟରେ ସୀମାରେ ରହି ପିଲାଙ୍କୁ ଶିଖେଇବା ଆଇନ ସଙ୍ଗତ ନୁହେଁ । ହେଲେ, ମୁଁ ତ ଜନ୍ମ ହେଇଚି ଖାଲି ସେଇଥିପାଇଁ । ଲକ୍ଷ୍ୟ ହାସଲ କରିବା ବାଟରେ ଯାହା କିଛି ବାଧା ଆସେ, ତା'କୁ ହଟେଇବା ମୋର ନୀତି । ଆଉ ଖେଳ ସ୍ଥାନର (କୋର୍ଟ) ସୀମାରୁ ଶିଖେଇବା କି ଗୋଟେ ବଡ଼ କଥା ! ମୁଁ ସେ କୋର୍ଟ ଭିତରୁ ହିଁ ପିଲାଙ୍କୁ ବତେଇ ଦେଉଥିଲି । ''ଜିଆନ୍ ! ଟାଟୁ ! ରୋଣ୍ଡାକୁ ବାଟ ଛାଡ଼ିଦିଅ । ତୁମ ନିଜ ବାଟରେ ଗୋଲ୍ କର ।'' ମୋର ଗୁଣୁ ଗୁଣୁ ହୋଇ କହିବାଟା ସେମାନେ ସମସ୍ତେ ନିଶ୍ଚୟ ଶୁଣିଥିବେ ।

ସମୟ ପ୍ରାୟ ଶେଷ ହୋଇ ଆସିଥିଲା । ରେଫରୀ ଆମ ବିପକ୍ଷ ଦଳର ସପକ୍ଷରେ ଥିଲେ । ସେଇଟା ଥିଲା ଆମ ପାଇଁ ଭୟର କାରଣ । ଆଉ ଆମେ ପଛରେ ପଡ଼ି ଯାଇଥିଲୁ । ଠିକ୍ ସେତିକିବେଳେ କାହ୍ନୁ ଧାଇଁ ଧାଇଁ ଆସିଲା । ସେମାନେ ତା'କୁ ଦେଖିଲେ । ସେମାନେ ଶୁଣିଲେ, ସେ କହୁଛି, ''କେଉଁଠିକି ମାରୁଛୁ ଭଲ କରି ଦେଖ, ପାଉଲେଟ୍ ।'' ସେ କହିବାଟା ସେମାନେ ଶୁଣୁଥିଲେ ।

ଆମ ପିଲେ ନିଜ ଭିତରେ ବଲ୍ ଦିଆ ନିଆ କରି, ଆଉ ଅଟକେଇ, ଗୋଟିକ ପରେ ଗୋଟିଏ କରି, ଅତି ଅଳପ ସମୟରେ, ତିନୋଟି ଗୋଲ କରି ଦେଲେ । ଏତିକି ବେଳେ ହୁଇସିଲ୍ ବାଜିଲା....... ।

ଏହି ପ୍ରତିଯୋଗିତାରେ ଆମେ ଆହୁରି ସହଜରେ ଜିଣି ପାରିଥାନ୍ତୁ; କିନ୍ତୁ,

୧. ଆମର ବଢ଼ିଆ ମାଓରି ଖେଳାଳୀ- ମାରିଆନ୍‌ର ଗୋଡ଼ରେ ଆଘାତ ଲାଗିଥିଲା; ସେଥିପାଇଁ ସେ ଖେଳୁ ନ ଥିଲା ।

୨. ଜଣକୁ ଛାଡ଼ି ସବୁ ରେଫରୀ ଏଇ ଦୁର୍ଦ୍ଧର୍ଷ ମାଓରିମାନଙ୍କ ବିରୁଦ୍ଧରେ ଥିଲେ ।

କାହ୍ନୁ ପହଞ୍ଚିବାରୁ ଶେଷରେ ଥିବା ବାଧାଗୁଡ଼ିକୁ ହଟେଇବାରେ ପିଲାଙ୍କୁ ବାଟ ମିଳିଗଲା ବୋଲି ମୋର ବିଶ୍ୱାସ ।

ମୁଁ ଏଇ ସବୁ ଭାବି ଘରକୁ ଫେରିଲି । ପୂରା ସୁସ୍ଥ ହେବା ଯାଏଁ ଘରେ ରହିବି; ଶୋଇ ରହିବି ବୋଲି ସ୍ଥିର କରି ନେଇଥିଲି । କିନ୍ତୁ ଘରେ ପହଞ୍ଚିଲା କ୍ଷଣି କେ. ମତେ ସ୍କୁଲ ନିରୀକ୍ଷକଙ୍କ ଚିଠିଟିଏ ଦେଖେଇଲେ । ସେଥିରେ ଲେଖା ଥିଲା,

''ଯେତେ ଦୂର ସମ୍ଭବ ୧୩ ଅଗଷ୍ଟରୁ ସପ୍ତାହେ ଭିତରେ ଆମେ ଆପଣଙ୍କ ସ୍କୁଲ ପରିଦର୍ଶନ ପାଇଁ ପହଞ୍ଚିବୁ ।''



ଏ ଦୃଷ୍ଟିରୁ ମୋତେ ମୋର ପଠନ ଯୋଜନାକୁ ଏବେ ପୂରା ଲେଖି ନେବାକୁ ପଡ଼ିବ । ବିଭିନ୍ନ ପରୀକ୍ଷା ନିରୀକ୍ଷାରୁ (ପ୍ରୟୋଗ) ମିଳିଥିବା ସୁଫଳ ସହିତ ଏବେ ନୂଆ ନୂଆ ପାଇଥିବା ଅଭିଜ୍ଞତାକୁ ମିଶେଇ ପଠନ ପ୍ରଣାଳୀ ଲେଖିବାକୁ ହେବ । ଏହାକୁ ଭଲ କାଗଜରେ ଲେଖା ହେବ । ଏହାର ଭଲ ବନ୍ଧେଇ ମଧ୍ୟ ଦରକାର । ଏଥିରେ ପ୍ରୟୋଗ ଧାରାର ବିବରଣୀ ରହିବ । ପରଖ ହୋଇଥିବା ନୀତିନିୟମ ସହିତ ସହଜ ଲିଖନ ଶିକ୍ଷା ପାଇଁ ମାଓରି ଇହାକା ପାଠ୍ୟପୁସ୍ତକ-୩ୟ ଭାଗ ପୂରା କରି ମୋତେ ଚତୁର୍ଥ ଭାଗ ପାଇଁ କାର୍ଯ୍ୟ ଆରମ୍ଭ କରିବାକୁ ପଡ଼ିବ ।

ସହଜ ବ୍ୟବହାର ।

ମନକୁ ମନ ନାଚିବା । ଏ ପିଲାମାନଙ୍କ ଦେହରେରକତ ମାଉଁସ ଅପେକ୍ଷା ସଙ୍ଗୀତ ବେଶୀ ଅଛି । ଏଇଟାକୁଇ ମୁଁ ''ଆପଣା ଛାଏଁ ପ୍ରକାଶ ପାଉଥିବା ଚଳଣି ଓ ସହଜ ବ୍ୟବହାର'' (Abstract Organic Pattern of Behaviour) ବୋଲି କହିଥାଏ ।

'ସହଜ' (Organic) କହିଲେ ମୁଁ ବୁଝେ, ମନ ଭିତରୁ ଆପେ ଉଠି ଆସୁଥିବା ଭାବନାଗୁଡ଼ିକ ଭିତରୁ ବଳୁଆ ଭାବନାଟି ବ୍ୟବହାରରେ ପ୍ରକାଶ ପାଏ । ଅନେକଗୁଡ଼ିକ ଚାରା ଗଛ ଭିତରୁ ବଳୁଆ ଚାରାଟି ବଢ଼ି ଉଠି ଆଲୋକ ଦିଗକୁ ମୁହାଁଏ । ପିଲାର ଜୀବନଧାରା ବି ଠିକ୍ ସେଇପରି । ତା' ମନର ବଳୁଆ ଭାବନା ବି ଆବେଗରେ ଉପରେ ଫୁଟିଉଠେ ବୋଲି ମୁଁ ବୁଝେ । କୌଣସି ଭାବନା ପ୍ରକାଶ

ପାଇବା, ସମୟ ଅନୁସାରେ ଉଚିତ୍ କି ଅନୁଚିତ, ସେଇଟା ଭିନ୍ନ କଥା । ଶୃଙ୍ଖଳା କହିଲେ ଆମେ ସଚେତନ ଭାବେ ଯାହା ବୁଝୁଁ, ପିଲାର ମନରୁ ତା' ନିଜ ଭାବନା ବ୍ୟବହାରରେ ପ୍ରକାଶ ପାଇଲାବେଳେ, ସେଇ ଶୃଙ୍ଖଳା ସେଠାରେ ଦେଖାଯାଏ । ମୁଁ ଏହାକୁ ତାହାର ମୌଳିକ (abstract) ବା, ପ୍ରକୃତ ଶୃଙ୍ଖଳା ବୋଲି କହିଥାଏ । କାରଣ; ଯେଉଁ ଢାଞ୍ଚାରେ ଏହା ଗଢ଼ି ଉଠେ, ତାହା ଆଗରୁ ଠଉରେଇ ହୁଏ ନାହିଁ ଏବଂ ଏଥିରେ ପିଲାର ସବୁ କିଛି ମିଶି ରହିଥାଏ । ଏସବୁ କାରଣରୁ ମୌଳିକ (abstract) ଓ ସହଜ (organic) ରଚନାତ୍ମକ (ଗଠନ-ମୂଳକ) ପଦ ଦୁଇଟିକୁ ମୁଁ ଏଇ ପ୍ରଣାଳୀ (method) ସହିତ ଯୋଡ଼ି ରଖିଛି । ସେମାନେ ପରସ୍ପର ସହ ସମ୍ପୃକ୍ତ । ପ୍ରାକୃତିକ ପ୍ରକ୍ରିୟାରେ ଏ ଦୁଇଟିଯାକ ମିଶି ରହିଛନ୍ତି ।

ମୁଁ ତାହା ହିଁ ଆଶା କରେ । ତଥାପି ବେଳେବେଳେ କେଜାଣି କାହିଁକି ମନରେ ସନ୍ଦେହ ଜାତ ହୁଏ । ଇଂଲଣ୍ଡରେ ନି'ଲ୍ (Neil) ଏଇପରି ଗୋଟେ ସ୍କୁଲ ଚଳାଉଥିଲେ । କିନ୍ତୁ ସେ ବିଫଳ ହେଲେ । ମୋର କିନ୍ତୁ ସେ ଆଶଙ୍କା ନାହିଁ । ମୋ ପିଲେ ଯେତେବେଳେ ହଠାତ୍ ଆପଣାଛାଏଁ ନାଚି ଉଠନ୍ତି- ଯେପରି ସେ ଦିନ ନାଚି ଉଠିଥିଲେ- ଆଉ ସେ ଦିନ ସେଭେନ୍ ଯେମିତି ଟାଙ୍ଗିଆ ଉଠେଇ ଡେଇଁଲା (!) .... ମୁଁ ଏଇମିତି ସ୍ୱତଃ ଆତ୍ମପ୍ରକାଶ ଦେଖିବାକୁ ଚାହେଁ । ଆଉ ମୋର ସେ ଛୁଆ ଟମାଟି, ଯେତେବେଳେ ଯାହା କରିବା ଦରକାର, ସେ ତାହା କରିବାକୁ ଚାହେଁନି ! ଏ ସବୁ ସହିତ ପିଲାଙ୍କର କଥାଭାଷା,ହୋ ହଲ୍ଲା, ହଠାତ୍ ଚୁପ୍‌ଚାପ୍- ନୀରବ ନିସ୍ତବ୍ଧ (!).... ଆଉ, ଦୁଆରରେ କିଏ ଜଣେ ଡାକିଦେଲେ ସମସ୍ତଙ୍କର ଦୁଆର-ମୁହାଁ ଧାଁ ଦଉଡ଼....



ଗଲା ଫଟେଇ କାନ୍ଦି ଉଠିବା.... ହଠାତ୍ ଏବଂ ଆପଣାଛାଏଁ ଏଇପରି ନିଜକୁ ନିଜର କାର୍ଯ୍ୟକଳାପରେ ପ୍ରକାଶ କରିବା... ସେଇପରି ଗୀତ ଗାଇବା, ରଚନା ଲେଖିବା... ସବୁ ସ୍ୱତଃସ୍ଫୂର୍ତ୍ତ, ଅକସ୍ମାତ । ଏହା ହିଁ ରଚନାତ୍ମକ, ସ୍ୱଭାବ ସୁଲଭ ସରଳ ସହଜ ଆତ୍ମ-ପ୍ରକାଶ... ଆତ୍ମ-ବିକାଶ ପାଇଁ । (Abstract Pattern.... behaviour is Organic)

ଏ ସପ୍ତାହରେ ନିରୀକ୍ଷକମାନଙ୍କର ଆସିବାର ଥିଲା । ଆଜି ବୁଧବାର ସକାଳ ଏବେ ନଅ ଘଣ୍ଟା ବାଜିବାକୁ ଆଉ କୋଡ଼ିଏ ମିନିଟ୍ ବାକି ଅଛି । ମୁଁ ବିଶେଷ ଭାବେ ଅସ୍ଥିର ହୋଇପଡ଼ିଛି । ସୋମବାର ଦିନ ମୋତେ ଏମିତି ଲାଗୁ ନ ଥିଲା । କିନ୍ତୁ ଆଜି ମୁଁ ଭାଙ୍ଗି ପଡ଼ିଛି । ଆଜି ବି ମୋର ସେଇ ଧଳା ଜାମା ପିନ୍ଧିଛି.... ମୁଁ କହିବାକୁ ଚାହେଁ ଯେ, ଏଇ ପୋଷାକରେ ମୁଁ ମୋର ଯେତେ ସବୁ ଖରାପ ପରିସ୍ଥିତିକୁ ସମ୍ଭାଳି ପାରିଛି । ଏଇ ତିନି ଦିନ ହେଲା ଏ ସବୁକୁ ସଫା ରଖିବାକୁ ମୋତେ କଠୋର ପରିଶ୍ରମ କରିବାକୁ ପଡ଼ିଛି । ତିନି ଦିନ ହେଲା, ନିତି ସକାଳ ମୋ କଳା ଜୋତାର ତଳ ଧଳା ଭାଗକୁ ସଫା କରୁଛି । ଇମିତି କେବେ ମୁଁ କରୁ ନଥିଲି । ତା' ସହିତ ମାଓରି ବେଲ୍ଟ ବି ପିନ୍ଧିଛି । ତଥାପି.... । ବ୍ୟସ୍ତ ନ ହେବାକୁ ଅନ୍ୟମାନଙ୍କର କହିବାରେ ଭଲା କ'ଣ ଅଛି ? ଏଇଟା ତ ମୋ ଅତୀତ ମୋତେ ଭୂତ ହେଇ ଡରଉଚି । ହେଲେ, ମୁଁ ଭାବୁଛି, ମୋ ସମୟର ସବୁ ଶିକ୍ଷକ ନିରୀକ୍ଷକ ଙ୍କ ବିଷୟ ନେଇ ଏଇମିତି ଭାବୁଥିବେ- ପାଞ୍ଚ ବର୍ଷର ପିଲା ହେଇ ପାଠ ପଢୁଥିଲା ବେଳେ ନିରୀକ୍ଷକଙ୍କ ପରିଦର୍ଶନରେ ଶିକ୍ଷକଙ୍କ ବ୍ୟସ୍ତ-ବିବ୍ରତ ଭାବ ଦେଖିବାଠାରୁ ଏବେ ଜଣେ ଶିକ୍ଷକ (ଶିକ୍ଷୟିତ୍ରୀ) ଭୂମିକାରେ ମୁଁ ସେଇ ଅସ୍ଥିରତା ଅନୁଭବ କରୁଛି । ଆଉ ଏଇ ବିବ୍ରତ ସମୟରେ ଶ୍ରୀଯୁକ୍ତ ଟ୍ରେମେଇନ୍‌ଙ୍କ ସ୍ନେହ, ଶ୍ରଦ୍ଧା ମନେ ପଡୁଛି । ଗଲା ଅଠର ମାସ ଧରି ମୋ ପାଇଁ କେତେ କ'ଣ ସେ ନ କରିଛନ୍ତି ! ମୋତେ ପ୍ରେରଣା ଦେବାରେ ତାଙ୍କର ନିପୁଣତା ରହିଛି । ମୋର ବିଶ୍ୱାସଭାଜନ ହେବାକୁ ସତେ ଯେମିତି ସେ ଦୃଢ଼-ପ୍ରତିଜ୍ଞ । ହେଲେ ଅତୀତର ଏମିତି କେତୋଟି ବିଫଳତାର ପଶ୍ଚାତ୍ତାପରେ ସବୁ ଯେମିତି ହଜି ଯାଉଚି । ଆଃ, ଜଣେ ଉତ୍ତମ ଶିକ୍ଷୟିତ୍ରୀ ଭାବେ ମୋ ଆତ୍ମ-ବିଶ୍ୱାସ ଯଦି ଦୃଢ଼ ହୋଇପାରନ୍ତା !! କିନ୍ତୁ ମୋର ମନେ ହେଉଚି, ସତେ ଯେମିତି ମୁଁ ଜଣେ ସାଧାରଣ ଶିକ୍ଷୟିତ୍ରୀ ବି ହୋଇ ପାରିନି । କେବଳ ପିଲାଙ୍କ ପାଖରେ ଯେନ ତେନ ପ୍ରକାରେ ନିଜକୁ ଚଳେଇ ନେଉଥିବା ମଣିଷଟିଏ ମୁଁ !! ଅନ୍ୟାନ୍ୟ ସବୁ ଶିକ୍ଷକ-ଶିକ୍ଷୟିତ୍ରୀଙ୍କ ପରି ମୁଁ ଯଦି ସାଥୀ (ସହାୟକ) ପୁସ୍ତକ (Work

book) ଧରି ଶିକ୍ଷାଦାନ ପ୍ରଣାଳୀରେ ଯୋଜନା ଗଢ଼ି ଶିକ୍ଷା ଦେଉଥାନ୍ତି, ତେବେ ନିଶ୍ଚିତ ଭାବେ ଜଣେ ଭଲ ଶିକ୍ଷୟିତ୍ରୀ ବୋଲି ଗଣା ହୁଅନ୍ତି !!

ଏକୁଟିଆ ଚାଲିବାର ଏଇ ହେଇଛି ପ୍ରାପ୍ୟ- ଏକୁଟିଆ ଲାଗିପଡ଼ି ପରଖ କରି ଭଲ ନୂଆ ବାଟଟିଏ ଖୋଜି ଲୋଡ଼ିବାର ପାଉଣା । ଗଲା କେତୋଟି ଦିନ ଲାଗି ପଡ଼ି ମୁଁ ଯେଉଁ ନୂଆ ପଠନ ଯୋଜନା (Reading scheme) ଗଢ଼ି ତୋଳିଛି- ଆପଣ ଯଦି ପଢ଼ିବେ, ତେବେ ବୁଝି ପାରିବେ, ମୁଁ କାହିଁକି ଏକୁଟିଆ ଚାଲିବା କଥା କହୁଛି । ତଥାପି, ମୁଁ ଏହାକୁ ନିଶ୍ଚୟ ଉପସ୍ଥାପିତ କରିବି । ମୁଁ ଯାହା ବିଶ୍ୱାସ କରେ, ତା' କରିବା ମୋର କର୍ତ୍ତବ୍ୟ । ଆଉ ମୁଁ ଯାହା କିଛି କରେ, ସେଥିରେ ମୋର ବିଶ୍ୱାସ ଥାଏ । ଗତାନୁଗତିକତାର ପୋଲ ଛାଡ଼ି ଚାଲିଲେ ଏଇ ପୁରସ୍କାର ମିଳେ । ହେଲେ; ଏଥିପାଇଁ ଆହୁରି ଖଟିବାକୁ ମୁଁଯେମିତି ଅସମର୍ଥ ହେଇ ପଡୁଛି- ବୁଢ଼ୀ ହେଇ ଯାଉଚି । କିନ୍ତୁ ମୋର ବିଶ୍ୱାସ ଅନୁସାରେ ମୁଁ ନିଶ୍ଚୟ କାମ କରିଯିବି । ନଚେତ୍ କିଛି ହେଲେ କରିବିନି । ଜୀବନଟା କେଡ଼େ ଛୋଟ ! ଅନ୍ୟ ଲୋକମାନେ ଯାହାକୁ ତାଙ୍କ ସମୟ-ନିର୍ଘଣ୍ଟ କହନ୍ତି- ମୋ ପାଖରେ ସେଇଟା ଆଉ ପ୍ରକାରେ....ମୋ ସ୍କୁଲରେ ପିଲାଏ ଅଙ୍କ କଷିବା ସମୟରେ ବି ହଠାତ୍ ଠିଆ ହୋଇ ପଚାରିପାରନ୍ତି, ନାଚି ପାରନ୍ତି । ମାଟାୱେରୋ ତା'ଛାଏଁ ଉଠି ପଡ଼ି ହାକା (ମାଓରି ଯୁଦ୍ଧ ନାଚ) ଆରମ୍ଭ କରି ଦେଇପାରେ.... ଅବଶ୍ୟ ମୁଁ ସତର୍କ ନ ଥିଲେ ! ହେ ମୋର ପ୍ରିୟ କବି ଏଡ଼ମଣ୍ଡ୍ ବର୍କ୍ (Edmund Burke) ଆଜି ଦିନକ ପାଇଁ ତମେ ସାହା ହୁଅ, ମୋ ପାଖରେ ଠିଆ ହୁଅ ।

ଉପରବେଳା ୧ ଘଣ୍ଟା । ଏପରି କେତେକ ସମୟ ଅଛି, ଯେତେବେଳେ ମୁଁ ପଢ଼େଇ ପାରେ ନାହିଁ । ଏଇଟା ସେମିତିକା ଗୋଟେ ସମୟ । ନୂଆ କାମଟିଏ କରିବାକୁ ହେଲେ, ବାଧା ବିପଦ ଆସେ... ବାଟରେ ଉଚ୍ଚା ପାହାଡ଼ ଯେମିତି ପଡ଼େ, ଗହୀର ଗାତ ବି ସେମିତି ପଡ଼େ । ଏଇଟା ସେମିତି ଗୋଟେ । ପରିବେଶରେ ହୋ ହଲ୍ଲା ଭରି ରହିଥିଲା; ବହୁତ ରଙ୍ଗୀନ୍ ଚକ୍, ବହୁତ ବହୁତ ସଙ୍ଗୀତ, ପଢୁଥିଲେ ମଧ୍ୟ ଅନେକ, ଆଉ ଅନେକ ହସୁଥିଲେ, ଗୀତ ଗାଉଥିଲେ । ହେଲେ ଏ ସବୁ ଭିତରେ ମୁଁ ଯେମିତି ମୋ ଆଗରେ ଦେଖୁଥିଲି ଏକ ଗହୀରିଆ ଗାତ । ଆଉ ଖାଲି ମୋ'ରି ପାଇଁ !!

ଅନେକ ଲୋକ ଜୀବନରେ ପ୍ରକୃତ ତତ୍ତ୍ୱ ପରିବର୍ତ୍ତେ ତା'ର କିଛି ଅଂଶର ମହକକୁ ନେଇ ଉଲ୍ଲସିତ ହୋଇ ତା'କୁଇ ସମ୍ବଳ କରିଥାନ୍ତି ଏବଂ ପରବର୍ତ୍ତୀ ସବୁ ସମୟରେ

ସେଇ ଅତୀତର ସ୍ମୃତି ଚାରଣ କରି ହଜି ଯାଇଥିବା ସେଇ ସଫଳତାକୁ ବାହୁନି ବାହୁନି କାନ୍ଦନ୍ତି । ସେମାନଙ୍କ ମତରେ ଜୀବନଟା ବୃଥା । କିନ୍ତୁ ମୁଁ ସେପରି ଲୋକ ନୁହେଁ । ସେମାନଙ୍କ ସହିତ ଆଦୌ ଏକମତ ନୁହେଁ । ମୁଁ ସେଇ ସଫଳ ମୁହୂର୍ତ୍ତଟିର ବିନିଯୋଗ କରେ । ଆଉ ସେଇ ପ୍ରୟୋଗର ପ୍ରତିଟି ମୁହୂର୍ତ୍ତ ରେ ମୁଁ ଜୀବନର ଅର୍ଥ ଦେଖିପାରେ, ବୁଝିପାରେ ବୋଲି ଜାଣିପାରେ । ଏକଥା ସତ ଯେ, ଏ ରାସ୍ତାରେ ବହୁତ ଖସଡ଼ିଆ ପଥ ଓ ଗହୀରିଆ ଗାତ ରହିଛି । କିନ୍ତୁ ଯେତେବେଳେ ମୁଁ ସଫଳତାର ଶିଖରରେ ପହଞ୍ଚେ, ସେତେବେଳେ ମୁଁ କହିଥାଏ, ''ଏଇ ମୁହୂର୍ତ୍ତରେ ବିଚିତ୍ରତା ମୋର ଅତୀତ ଓ ଭବିଷ୍ୟତର ସମସ୍ତ ଜୀବନକୁ ସାର୍ଥକ କରି ଦେଇଛି''- ପ୍ରତିଟି ସଫଳତାର ସମୟଟି ସେଇ ଉଲ୍ଲାସ ଭରି ଦେଇଛି । ସେପରି ଅନେକ ସଫଳ ମୁହୂର୍ତ୍ତ ଏବେ ମୁଁ ପାଶୋରି ଯାଇଛି । କିନ୍ତୁ ମୋର ସେ ସମୟର ଅନୁଭୂତି ଓ ଅଭିବ୍ୟକ୍ତି ମୁଁ ଭୁଲି ପାରିନି । ମୁଁ ନିଜକୁ ବିଶ୍ୱାସ କରେ । ସେଇ ଆତ୍ମ-ବିଶ୍ୱାସ ଯୋଗୁଁ ଯେତେ ଯାହା ବାଧାବିଘ୍ନ ମୋ ବାଟରେ ଦେଖା ଦେଲେ ମଧ୍ୟ, ମୁଁ ଜାଣି ସାରିଛି ଯେ: ବଂଚିବାରେ ସ୍ୱାଦ ଅଛି, ସାର୍ଥକତା ଅଛି- ଯଦିଓ ଏବେ ଦେଖା ଦେଲା ପରି ଗଭୀର ଗାତ ମଧ୍ୟ ରହିଛି ।

ମୋର ଜଣେ ପ୍ରିୟ ବନ୍ଧୁ ଏ ସପ୍ତାହରେ ଚିଠିଟିଏ ଦେଇଛନ୍ତି । ଲେଖିଛନ୍ତି, ''ଜୀବନର ଏଇ ଚାଳିଶି (ବର୍ଷ) ପୂରିଲା ବେଳକୁ, ମୁଁ ଭାବୁଛି, ମୁଁ ଏ ସମୟରେ କିଛି କରିବା ପାଇଁ ଲାଗିଯିବି । ଜୀବନର ଶେଷ ଭାଗର ଏଇ ଆରମ୍ଭ ସମୟଟିକୁ ମୁଁ ସାରା ଜୀବନ ଅପେକ୍ଷା କରି ବସିଛି- ଜୀବନକୁ କେବଳ ଅପେକ୍ଷା କରିଛି । ଏବେ ଭଲା ସେମିତି କ'ଣ କରାଯାଇପାରେ ବୋଲି ଭାବିଲାବେଳେ ମୁଁ ଜାଣି ପାରୁଛିଯେ, ଏଇଟା ହେଉଚି ଆଉ ଚାମୁଚେ ଓଷ ଖାଇବାର ଠିକ୍ ସମୟ ।''

କିନ୍ତୁ ମୁଁ ଜାଣେ, ସେ ତାଙ୍କ ଜୀବନରେ ସଫଳତାର ଶିଖରକୁ ଉଠିଥିଲେ ।

ଆଉ ଜଣେ ପ୍ରିୟ ବନ୍ଧୁ କହୁଛନ୍ତି, ଜୀବନର ଦୀପ୍ତି ଯେତେବେଳେ ଚାଲି ଯାଇଛି, ସେତେବେଳେ ସେ ନିଜକୁ ପ୍ରକୃତରେ ମୃତ ବୋଲି ଭାବୁଛନ୍ତି । ''ସେଇଟା ଯଦି ମୁଁ ଆଉ ପାଇବି ନାହିଁ,'' ସେ କହନ୍ତି, ''ତେବେ ବଞ୍ଚି ରହିବି କାହିଁକି ?''

ତେବେ ଫ୍ରୟେଡ୍ ମଧ୍ୟ କହନ୍ତି, ''ଜୀବନଟା ପ୍ରାଚୁର୍ଯ୍ୟରେ ଭରା ନୁହେଁ । କିନ୍ତୁ ଆମେ ଯାହା ସବୁ ପାଇଛେ, ସେ ସବୁ ବି ତ କମ୍ ନୁହେଁ ।''

ମୁଁ ଜାଣେ, ମୋର ଗଲା ଦିନଗୁଡ଼ିକରେ ବହୁତ କିଛି ହଜି ଯାଉଛି । କିନ୍ତୁ ସେ ସବୁ ତ ଘଟିଥିଲା । ସେ ସବୁଥିରେ ଅନେକ କିଛି ରହିଥିଲା । ମୁଁ ନିଶ୍ଚିତ, ଫ୍ରୟେଡ୍

ହେଉଛନ୍ତି ଅଷ୍ଟ୍ରିଆର ବିଶିଷ୍ଟ ସ୍ନାୟୁ ବିଶେଷଜ୍ଞ ଓ ମନୋବିଜ୍ଞାନୀ । ମନୋବିଜ୍ଞାନ, ସାହିତ୍ୟ ଓ ଶିକ୍ଷା ବିଷୟରେ ତାଙ୍କ ବିଚାର ବହୁଳ ଭାବେ ଆଦୃତ । ତାଙ୍କର ବିଖ୍ୟାତ ପୁସ୍ତକର ନାମ ''ମନ ବିଶ୍ଳେଷଣ'' ଯେଉଁ କ୍ଷେତ୍ରେ, ଜୀବନରେ ସବୁ କିଛି ଘଟଣାରେ ସଫଳତା ରହିଛି । ବେଳେବେଳେ ମୋର ମନେହୁଏ, ଜୀବନଟା ଗୋଟିଏ ଉଡ଼ନ୍ତା ପକ୍ଷୀ । ଝଡ଼ ଭିତରେ ଆମ୍ଭ ଯେପରି ଡେଣା ମେଲି ଲକ୍ଷ୍ୟହୀନ ଭାବରେ ଉଡ଼ି ବୁଲୁଛି । ହେଲେ, ମଝିରେ ମଝିରେ ଝଡ଼ ଥମିଯାଏ, ଆଉ ପକ୍ଷୀ ମାଟି ଉପରେ ବିଶ୍ରାମ ନିଏ । ପୁଣି ଥରେ ଝଡ଼ ଭିତରକୁ ଯିବାଆଗରୁ, ମାଟି ଉପରେ ବିଶ୍ରାମ ନେବା ସମୟଟିରେ, ମୁଁ ଜୀବନକୁ ଦେଖି ପାରିଛି ଓ ଜୀବନର ଅର୍ଥ ବୁଝି ପାରିଛି ବୋଲି ଜାଣି ପାରିଛି । ସମସ୍ତଙ୍କ ପରି ମୋ ପାଇଁ ମଧ ସେଇ ଝଡ଼ ରହିଛି । ଆଉ ରହିଛି ଦୁଇଟି ଝଡ଼ ଭିତରେ ବିଶ୍ରାମ ପାଇଁ ସ୍ଥିରତା । ଏଇ ଜ୍ଞାନ ମୋତେ ସବୁବେଳେ ସାନ୍ତ୍ୱନା ଦେଇଛି ଯେ ତଳେ ଭୂମି ଅଛି । ଆଉ ମୁଁ ସେ ଭୂମି ଦେଖି ସାରିଛି । ତେଣୁ ଝଡ଼ ଭିତରେ ଉଡ଼ିଯିବା ପାଇଁ ମୁଁ ବେଶ୍ ଉତ୍ସାହିତ । କାରଣ: ମୁଁ ନିଜେ ଜୀବନର ଅର୍ଥ ବୁଝି ପାରିଛି, ଦେଖି ପାରିଛି ।

ମୋର ବୟସ ବଢ଼ି ଚାଲିବା ସଂଗେ ସଂଗେ ସେଇ ମୁହୂର୍ତ୍ତଗୁଡ଼ିକ ଊଣା ହୋଇଯାଉଛି ବୋଲି ମୋର ମନେ ହେଉନି; ତେବେ ସେଗୁଡ଼ିକର ଚରିତ୍ର କିଛିଟା ଅଧିକ ଭାବରେ ବଦଳି ଚାଲିଛି । ପରିପକ୍ୱ ହୋଇ ଆସିଲେ, ଜଣଙ୍କର ଆତ୍ମା ଅନ୍ୟମାନଙ୍କର ଆତ୍ମା ସହିତ ମିଶିଯାଏ- ଜୀବନରେ ଲୀନ ହୋଇ ଜୀବନକୁ ବିକଶିତ କରେ । ସକାଳେ ଉଠି ଝରକା ବାଟେ ଚାହିଁଲେ, ମୁଁ ଦେଖେ, ଭୋର ସକାଳର କଳା ମେଘରେ ଘୋଡ଼େଇ ହୋଇ ପଡ଼ିଥିବା ଆକାଶ, ଆଉ ବୁଝିପାରେ, ମୁଁ ଏବେ ମଧ ବଞ୍ଚିଛି । ଇଏ ଏକ ଉଲ୍ଲାସ । କୌଣସି ପ୍ରୀତିପୂର୍ଣ୍ଣ ଆନନ୍ଦଠାରୁ କମ୍ ନୁହେଁ, କିନ୍ତୁ ଏକ ଭିନ୍ନ ସ୍ୱାଦର ଆନନ୍ଦ । ଏଥିରେ ଥାଏ ସେଇ ଅନୁଭୂତିର ଚମକ, ସେଇ ତୀବ୍ର ବେଦନା, ଆଉ ସେଇ ପ୍ରେରଣା । ମୁଁ ଯେତେବେଳେ ପିଲା ଥିଲି, ସେତେବେଳେ ମୋ ମନରେ ଅଧିକ ଭକ୍ତି ଭାବ ଥିଲା ଏବଂ ମୁଁ ପ୍ରତୀକାତ୍ମକ ଭାବେ ଚିନ୍ତା କରୁଥିଲି । ମୁଁ କହୁଥିଲି, ''ମୁଁ ଈଶ୍ୱରଙ୍କ ମୁହଁ ଦେଖିଲି ।'' ସେଇଟା ପ୍ରକୃତରେ ଈଶ୍ୱରଙ୍କ ମୁହଁ ହୋଇପାରେ, ନ ହୋଇପାରେ ମଧ- କିନ୍ତୁ କିଛି ଗୋଟାଏ ଦେଖୁଥିଲି । ସେଇଟା ଯାହା କିଛି ହେଲେ ବି ମୋର ପ୍ରାଣବାୟୁରେ ଉଲ୍ଲାସ ଭରି ଦେଉଥିଲା ।

ଭୋର ସକାଳୁ କୀଥ୍ ଯେତେବେଳେ ଚା' ଆଣି ଦିଏ, ମୁଁ ସେତିକିବେଳେ ତକିଆ ଦେଇ ନିଜକୁ ଟିକିଏ ଉପରକୁ ଉଠେଇ ନିଏ । ପାଖରେ ଥିବା ଝରକା ପରଦାଟିକୁ

ଆଡ଼େଇ ଦେଇ ବାହାରକୁ ଅନାଏ । ଅନ୍ଧାରୁଆ ପାହାନ୍ତିଆରେ କଳା କଳା ଗଛ ପଛ ପଟରେ ନୂଆ ନରମ ଆକାଶଟିକୁ ଦେଖିବାକୁ । ତା' ପରେ ଉଲ୍ଲସି ଉଠି ପଛକୁ ବୁଲିଯାଏ, ଆଉ ପଛପଟ ଝରକାରୁ ପରଦା ହଟେଇ ଦେଇ ଦେଖେ : ବଗିଚା, ତା' ପଛକୁ ସଡ଼କ, ତା' ପଛକୁ କାହିଁ କେତେ ଦୂର ଯାଏଁ ଲମ୍ବି ଯାଇଥିବା କ୍ଷେତ ଉପରକୁ ଦୂରିଆ ପାହାଡ଼, ଆଉ ତା' ପଛରେ ଝାପ୍‌ସା ପର୍ବତମାଳା ! ନିଶ୍ଚିତ ହେବାକୁ, ନିଜକୁ ନିଶ୍ଚିତ କରି ଦେବାକୁ ବୁଝିଯାଏ: ଏସବୁ ସତ, ପ୍ରକୃତ. ପ୍ରକୃତି- ଆଉ ମୁଁ ବି ଏଇ ଆନନ୍ଦଭରା ଜୀବନ- ସମ୍ଭାରର ଗୋଟିଏ ଅଂଶ ଆହୁରି ଗୋଟିଏ ଦିନ ବଞ୍ଚିବା ପାଇଁ ।

ଗୁରୁବାର ସକାଳ । ଏବେ ମୁଁ ବୁଝିପାରୁଛି, ସେମାନେ ଏ ଯାଏଁ ନ ଆସିବାର କାରଣ । ମୋର ଯୋଜନାଟି ପୂରା ହୋଇନାହିଁ । ସାବୁନ୍ ମିଶା ଉଷୁମ ପାଣିରେ ପାଦ ବୁଡ଼େଇ ରଖି କିଛି ମିନିଟ୍ ତଳେ ମୁଁ ନିଜକୁ ଟିକିଏ ସରସ, ସତେଜ କରି ନେଇଥିଲି, ଆଉ ଭାବୁଥିଲି ମୋ'ପାସାଁ (de Maupassant)ଙ୍କ ଆନନ୍ଦଭରା ବିଚାରଧାରା ବିଷୟରେ:

''ଶବ୍ଦର ଆତ୍ମା ଅଛି । କିନ୍ତୁ ସୁନ୍ଦର ଭାବେ ଶବ୍ଦଟିଏ ଯୋଡ଼ା ନ ହେଲାଯାଏଁ ତା'ର ପ୍ରାଣ ଶକ୍ତି ପ୍ରକାଶ ପାଏ ନାହିଁ ।''

ହଁ, ତେବେ ଏଇ ହେଉଚି ମୋ ପଠନ ଶିକ୍ଷା ଯୋଜନାର ମୂଳ ! ମୁଁ ଉଲ୍ଲସିତ ହୋଇ ଉଠିଲି । ପ୍ରତ୍ୟେକ କାର୍ଯ୍ୟର କିଛି ଗୋଟାଏ କାରଣ ରହିଥାଏ । ସେମାନେ ନିଶ୍ଚୟ ଆଜି ସକାଳବେଳା ଏଠାକୁ ଆସିଯିବେ ।

ଗଲା ରାତିରେ ମୁଁ ମୋର ଧଳା ସୁଇଟରଟି ସଫା କରିଥିଲି । ଆଜି ଧଳାଜୋତାଟିକୁ ସକାଳେ ସଫା କରି ଦେଇଚି । ଲଗାତାର ଚାରିଥର ଏ ସଫେଇ କାମ ହେଇଗଲା । ଶ୍ରୀଯୁକ୍ତ କେ. ସ୍କୁଲକୁ ବାହାରିଲେ । ମୁଁ ପୁଣି ଥରେ ତାଙ୍କୁ ଶୁଭେଚ୍ଛା ଜଣେଇଲି ।

''ସ୍ୱାସ୍ଥ୍ୟ ଶିବିରରୁ ମୁଁ ଏଯାଏଁ ୱାଇଓ୍ୱିନୀଠାରୁ ଚିଠି ପାଇଲିନି ।'' କୋଲୀନ୍ କହିଲେ । ''ସେ ଚିଠି ଦେବ ବୋଲି କଥା ଦେଇଥିଲା, ଶେଷରେ ତ ସେ ଏଇକଥା ହିଁ ମୋତେ କହିଥିଲା ।''

''ମୋତେ ତାର ଶେଷ କଥା କ'ଣ ଥିଲା, ଜାଣିବାକୁ ଚାହୁଁଛ ?''

''କ'ଣ ?''

‘‘ସିଏ କହିଥିଲା, ଆପଣ ଅତି ଲମ୍ବା ଥୋଡ଼ିଟିଏ ପାଇଚନ୍ତି ।’’

ୱିକୀ : ମୁଁ କଙ୍କାଳକୁ ଭୟ କରେ । ସେଥିରେ କେତେ ଯେ ହାଡ଼ ଥାଏ ।

ସେଭେନ୍ : ମୁଁ ପୋକ ଜୋକକୁ ଭୟ କରେ ।

ଲାରୀ : ମୁଁ ଭୂତକୁ ଭୟ କରେ ।

ବେଚ୍ଚି : ମୁଁ ଭୂତକୁ ଭୟ କରେ । ମୁଁ ଭୂତକୁ ଗୁଳି କଲି । ସେ ମୋ ପିଠି ଉପରକୁ ଡେଇଁ ପଡ଼ିଲା ।

ରାଙ୍ଗୀ : ମୁଁ ପୁଲିସ୍‌କୁ ଭୟ କରେ । ସେମାନେ ତାଙ୍କ କଂସେଇ ଛୁରୀରେ ମୋତେ ମାରିଦେବେ । ମୋତେ ପୋଡ଼ି କରି ମାରିଦେବେ ।

ମାଇରେ : ମୁଁ ଦମକଳକୁ ଭୟ କରେ । ସେଇଟା ମୋତେ ପୋଡ଼ି କରି ମାରିଦେବ ।

ବେଚ୍ଚି : ମୁଁ ଭୂତକୁ ଭୟ କରେ । ସେ ଆମ ସମସ୍ତଙ୍କୁ ଖାଇଯିବ ।

ଶୁକ୍ରବାର, ସକାଳବେଳା ଶିକ୍ଷା ବର୍ଷର ଗୋଟିଏ ଭାଗ (Term)ରଶେଷ ଦିନ ।

ନିତି ସକାଳ ଆଠ ଘଣ୍ଟାବେଳକୁ ପ୍ରଧାନ ଶିକ୍ଷକ ବେଶ ନିୟମିତ ଭାବେ ଘରୁ ବାହାରନ୍ତି । ଆଜି ସେ ସ୍କୁଲକୁ ବାହାରିବା ବେଳେ ମୁଁ ପଚାରିଲି, ‘‘ଆପଣ କ’ଣ ସତରେ ଭାବୁଛନ୍ତି ଯେ, ସେମାନେ ଆଜି ଏଠାକୁ ଆସିବେ ? ଏ ଭାଗର ଶେଷ ଦିନର ସକାଳ, ଏଣେ ପୁଣି ବର୍ଷା !’’

‘‘ମୁଁ ଭାବିବାକୁ ବାଧ ହେଉଛି, ସେମାନେ ତାଙ୍କ ନିଜ ପ୍ରସ୍ତାବ ଅନୁସାରେ ନିଜ କଥା ରଖିପାରନ୍ତି ।’’

ଆଜି ସକାଳେ ମୁଁ ମୋର କଳା ଜୋତାର ଧଳା ଗୋଇଠି ସଫା କରିନି, ଆଉ ମୋ ଧଳା ସୁଇଟର୍‌ର ହାତ ଆଜି ଧଳା ଦିଶୁନି । ଆବେଗରେ ମୋର ପଠନ ଯୋଜନାକୁ ଶେଷଥର ପାଇଁ ଥରେ ପଢ଼ି ନେବା ପାଇଁ ମୁଁ ଆଉ ସେ ଖାତା ଖୋଲି ନାହିଁ । ଏ ସପ୍ତାହର ଲୁଗା ଇସ୍ତ୍ରୀ ତ ଅଧା ହେଇଚି । ଆଜି ଶ୍ରୀ କେ. ଘରୁ ବାହାରିଲାବେଳେ ତାଙ୍କୁ ମୁଁ ଶୁଭେଚ୍ଛା ମଧ ଜଣେଇନି । ମୁଁ ଚଳଣି ପ୍ରତି ବିମୁଖ ନୁହେଁ ।

ହେଲେ ବି ମୁଁ ଶ୍ରୀଯୁକ୍ତ ଟ୍ରେମେଇନ୍‌ଙ୍କୁ କ୍ଷମା ଦେବି । ଯଦିଓ ସ୍କୁଲରେ ଗୋଟେ ସପ୍ତାହ ଧରି ସେ ଅଯଥା ଚାପ ଜମେଇ ରଖିଲେ, ଆଉ ଲଗାତାର ଚାରିଥର ମୁଁ



ଢୋତାର ଗୋଇଠି ସଫା କରିଛି ଏବଂ ସପ୍ତାହ ମଝିରେ ସୁଇଟର୍ ଧୋଇଛି । ପଠନ ଯୋଜନାଟିକୁ ପୂରା ଲେଖିଲାବେଳେ ଯେଉଁ ଚାପର ମୁଁ ସମ୍ମୁଖୀନ ହୋଇଥିଲି, ତା' ସତ୍ତ୍ୱେ ବି ତାଙ୍କୁ ମୁଁ ଦୋଷ ଦେବି ନାହିଁ । ମୁଁ କିଏ ସେ ନିରୀକ୍ଷକଙ୍କୁ ରଚନାତ୍ମକ ବ୍ୟବହାର ବିଷୟରେ ପ୍ରଶ୍ନ କରିବାକୁ ? ମୁଁ ବା କିପରି ନିରୀକ୍ଷକମାନଙ୍କ ସ୍ୱାଭାବିକ, ସହଜ ଆଚରଣ ବିଷୟରେ ଆପତ୍ତି କରିବି ? ମୁଁ ତ କେବଳ ସେହି ସହଜ ଆଚରଣର ପ୍ରଚାର ଓ ପ୍ରସାର କରିବାରେ ଲାଗିଛି ।

କିନ୍ତୁ ତାଙ୍କ ଯୋଗୁଁ ଏ ସପ୍ତାହର ଲୁଗା ଇସ୍ତ୍ରୀ ପୂରା ହୋଇ ପାରିଲାନି- ସେଥିପାଇଁ ମୁଁ ତାଙ୍କୁ କ୍ଷମା ଦେଇପାରିବି ନାହିଁ । ଆଉ ମୁଁ ଏ ଧଳା ସୁଇଟର୍ କେବେ ହେଲେ ବି ପିନ୍ଧିବି ନାହିଁ ।

ବାସ୍କେଟବଲ୍ ପ୍ରତିଯୋଗିତାରେ ଜିଣିବା ଦିନ ଆବେଗରେ ପିଲାଙ୍କୁ ସିନେମା ଦେଖେଇ ନେବାକୁ ମୁଁ କଥା ଦେଇଥିଲି । ସେଇ କଥା ରଖିବାକୁ ଆଜି ରାତିରେ ମୁଁ 'କ' ଦଳକୁ ନେଉଛି । ହେ ଭଗବାନ୍ ! ମୋତେ କ୍ଷମା କର, ରକ୍ଷାକର । ଏଇଟା ଜଣାଶୁଣା ଯେ, ଆମେ ଆଜି ଦୁଇ ୱାର୍ଣର୍ ଭାଇ (Warner Brothers)ଙ୍କ ରଙ୍ଗୀନ ସଫଳ ଅବଦାନ 'ଅଗ୍ନିଶିଖା ଓ ତୀର' (The Flame and the Arrow) ସିନେମା ଦେଖିବାକୁ ଯାଉଛୁ । ଭଗବାନ କ୍ଷମା କରନ୍ତୁ- ମୁଁ ପୁଣି ପ୍ରାର୍ଥନା କଲି- ରକ୍ଷା କରନ୍ତୁ, ଆଉ ନିରାପଦରେ କାମଟି ସାରି ଫେରିବାକୁ ସାହାଯ୍ୟ କରନ୍ତୁ ।

# ଛୁଟି

ମୋତେ ମୋ ମୁଣ୍ଡଭିତରୁ ଏ ସବୁ ଦୂରେଇ ଦେବାକୁ ହେବ, ତା' ପରେ ଯାଇ ଯେଉଁଥିରେ ହେଲେ ମୁଁ ହାତ ଦେବି । ନିକଟରେ ଶ୍ରୀମତୀ କଟରଙ୍କୁ ସହରରେ ଭେଟିଥିଲି । ସେ ମୋ ପାଖ ଦେଇ ଗଲାବେଳେ ଦୋକାନର ଦୁଆର ଆଡ଼କୁ ଚାହୁଁଥିଲେ । ଆଉ ମାର୍କ୍ ମୋତେ ଯେପରି ଦେଖି ନ ପାରେ, ସେଥିପାଇଁ ସେ ତା'ର ମୁହଁକୁ ଅନ୍ୟ ଦିଗକୁ ବୁଲେଇ ଦେଇଥିଲେ । ତାଙ୍କୁ ଅଧିକ ଖରାପ ଲାଗିବାର କାରଣ ହେଉଛି, ମୋ ସହିତ ମୋର ଜଣେ ମାଓରି ବନ୍ଧୁ ଥିଲେ । ଶ୍ରୀମତୀ କଟରଙ୍କର ଏଥିପ୍ରତି ଭାରି ବିରାଗ ।

ମାର୍କ୍ ସ୍କୁଲକୁ ଫେରିଆସିଲା ପରେ ତା'ର ପହିଲି କାମ ହେଲା- ପାହାଚ ଉପରେ ମୋତେ ଅପେକ୍ଷା କରି ବସିବା । ସେଦିନ ମୋ ଆସିବାରେ ବିଳମ୍ବ ହୋଇଗଲା । ମୁଁ ଯେତେବେଳେ ଭିତରକୁ ଯାଇ ବସିଲି, ସେ ମୋ ପାଖରେ ଠିଆ ହୋଇ କିଛି ସମୟ ପାଇଁ ମୋର ଦୁଇ ହାତକୁ ଧରି ରହିଲା ।



ମୋର ବାଦାମି ରଙ୍ଗର କୋଟ୍ ସହିତ ପିନ୍ଧିବା ପାଇଁ ମୁଁ ଗୋଟିଏ ମାଓରି ବେଲ୍ଟ ତିଆରି କରିଥିଲି । ଗତ ସପ୍ତାହର ୱେଲିଂଟନ୍ ଗସ୍ତରେ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ ପାଇଁ ଏଇଟା ଗଢ଼ିଥିଲି । ଏଥିରେ ନାଲି, ବାଦାମି ଓ କଳା ରଙ୍ଗର ପଟା ପଟା ଦାଗ ଥିଲା- ଠିକ୍ ପୋରୌରାଙ୍ଗିର ସଭାଘର କୋଠା ପରି । ଏଇ କୋଠାଟି ୱାଇଓମାତାଡିନିଙ୍କ ମିଳନ ସ୍ଥାନ ଏବଂ ସାର୍ ଅପିରାନା ନ'ଗାତାଙ୍କ ଅତି ପ୍ରିୟ ଭବନ । ଏଇ କୋଠାଟି ନିଉଜିଲାଣ୍ଡର ସବୁଠାରୁ ଅଧିକ ସୁନ୍ଦର ଏବଂ ସବୁ ଲୋକଙ୍କ ମିଳିତ ସଭା ସମିତିର ଆଦରର ସ୍ଥାନ ।

ମୋ ବେଲ୍ଟଟିକୁ ନ ଅନେଇ କେହି ରହିପାରୁ ନଥିଲେ । ଅବଶ୍ୟ ସେଇଟା ପିନ୍ଧିବା କଷ୍ଟକର ଥିଲା । ଏଇ ବେଲ୍ଟଟିର ଅସଲି ଗୁଣ ଖୁବ୍ ଅଳ୍ପ ଲୋକ ବୁଝି ପାରିଥିବେ । ଏଇଟା ଥିଲା ୟୁରୋପୀୟ ସଭ୍ୟତା ଭିତରେ ହଜି ଯାଉଥିବା ନିଉଜିଲାଣ୍ଡର ସ୍ୱକୀୟ

ସଂସ୍କୃତିର ଏକ ଅଭୁଲା ଝଲକ । ମୁଁ ବେଶ୍ ଭଲ ଭାବେ ଜାଣିଥିଲି ଯେ ମୋର ଏଇ ପ୍ରଚେଷ୍ଟା କେବଳ ଉଚ୍ଚ ସ୍ତରର ବିଚାରବନ୍ତ ଲୋକେ ବୁଝି ପାରିବେ ଓ ଉଚିତ ଗୁରୁତ୍ୱ ଦେବେ । ସେଥିରେ ମୁଁ ଆତ୍ମ-ସନ୍ତୋଷ ଲାଭ କରିଥିଲି । ଆଉ, ପ୍ରକୃତରେ ଲୋକେ ବେଲ୍ଟଟିକୁ କେବଳ ଲକ୍ଷ୍ୟ କରି ନ ଥିଲେ- ସେମାନଙ୍କ ଚାହାଣୀରେ ଦେଖିବା ଅପେକ୍ଷା ବହୁତ କିଛି ଅଧିକ ଥିଲା । ବେଲ୍ଟ ପ୍ରତି ଏକ ଆବେଗପୂର୍ଣ ଆକର୍ଷଣ ପ୍ରକାଶ ପାଉଥିଲା । ଏଇଟା ଅବଶ୍ୟ ସାହି ଭିତରେ ନୁହେଁ- ସେଇଠି ତ ଏଇଟା ଗୋଟେ ଅସାଧାରଣ ଆଉ ଝଲମଲ କରୁଥିବା ଜିନିଷଟିଏ- ଦୋକାନ ମୁହଁରେ ପ୍ରଦର୍ଶନ କରିବା ଭଳି ଉପଯୁକ୍ତ ନୁହେଁ । କିନ୍ତୁ ବିଚାରବନ୍ତ ସମାଜ ମୋ ଉଦ୍ଦେଶ୍ୟକୁ ବେଶ୍ ସ୍ୱୀକୃତି ଦେଇଥିଲା- ଯଦିଓ ଖୋଲାଖୋଲି ଭାବରେ ନୁହେଁ, ବିଚାର ବିମର୍ଷରେ । ଆନନ୍ଦର ସହିତ ସ୍ୱାଗତ ଲାଭ କରିଥିଲା- ସେଇ ନିଷ୍ପେସିତ ସଂସ୍କୃତି ଯେଉଁ ଦୁର୍ଦ୍ଧର୍ଷ ଜାତୀୟତାର ଭିଏ ଥିଲା ଏକ ପ୍ରତୀକ ।

ସେ ମହାନ୍ ଗୁଣ ଗୋଟିଏ ଦିଗ; ଅନ୍ୟ ଦିଗରୁ ବେଲ୍ଟଟି ବେଶ୍ ଆକର୍ଷଣୀୟ ଥିଲା । ତେଣୁ ସମସ୍ତେ ଏହାକୁ ଭଲ ପାଉଥିଲେ । ହେଲେ, ସେଥିପାଇଁ ଦାୟିତ୍ୱବୋଧ ନ ଥିଲା । ଆଉ, ମୁଁ ତ ଅଧିକରୁ ଅଧିକ ସମର୍ଥନ ହିଁ ଦରକାର କରୁଥିଲି । ସେଥିପାଇଁ ମୁଁ ସେପରି କରିଥିଲି । ମୁଁ କରିଥିଲି । ଏଇ ବେଲ୍ଟ ପିନ୍ଧିବାକୁ ହେଲେ ସେମିତି ସାହସ ଦରକାର- ଆଉ ଯାହା କିଛି ପିନ୍ଧିବା ଅପେକ୍ଷା ଅଧିକ ନିଶ୍ଚୟ । ଆଉ ସେମିତି ଗୋଟେ ସାହସ ମୋ ଭିତରୁ କୁରୁଳି ଉଠୁଥିଲା- କ'ଣ ସେଇଟା ପ୍ରକୃତରେ ମୁଁ ଜାଣେନା- କିନ୍ତୁ ତା'କୁ ଦମନ କରି ହୁଏନା- ଏମିତି ଏକ ଆବେଗ ମୋ ଭିତରୁ ମୋତେ ଯେପରି ବାଧ କରିଥିଲା.... ସେଇ ବେଲ୍ଟଟି ପିନ୍ଧିବାକୁ- ୱେଲିଂଟନ୍ ଗସ୍ତରେ । ହେଲେ, ଏଇ ପରଖରେ ବେଶ୍ ଭାରସାମ୍ୟ ଥିଲା । କାହା ଦ୍ୱାରା ? ସେଇ ଘୂରି ବୁଲୁଥିବା ମାଓରି ଆଖିଗୁଡ଼ିକ ଦ୍ୱାରା- ଯାହା ଖୋଜି ବୁଲୁଥିଲା ସେଇ ବେଲ୍ଟରେ ! ଆଉ, ସେଇଟା ଥିଲା ପୁରସ୍କାର । ଯେଉଁ ଢାଞ୍ଚାରେ ସେ ଛୋଟ ମାଓରି ବାଳିକାଟି ଉଲ୍‌ସ୍‌ୱାର୍ଥରେମୋତେ ପରଖୁ ଥିଲା ! ଆପଣ ତ ତାକୁ ଦେଖିଥିବେ । ମୁଁ ଥିଲି ନିଶ୍ଚୟ ତା'ର କଳ୍ପନାର ପ୍ରିୟତମ ଯୋଦ୍ଧା !! ଆଉ, ସେ ଯେଉଁ ବନ୍ଧୁଜଣକ ମୋ ପାଖରେ ଥିଲେ, ସିଏ ତ ମନ୍ତ୍ରମୁଗ୍ଧ ହୋଇ ପଡ଼ିଥିଲେ । ଆଉ, ମଧ୍ୟ ବୟସର ଜଣେ ମାଓରି ସେବିକା- ସିଏ ଥାଳି ତାଟିଆ ସବୁ ଉଠେଇ ନେଇ ଚାଲି ଯାଉଥିବା ବେଳେ-ବାଟରେ ଅଟକି ଗଲା । ଥାଳି ଗିନା ସବୁ ଥୋଇ ଦେଲା ସେଇଠି ! କେବଳ ସେତିକି ନୁହେଁ,

ଦି' ଜଣ ମାଓରି ଯୁବକ ବେଶ୍ କିଛି ଦୂରରେ ଆରପଟେ ଥିଲେ, କିନ୍ତୁ ଭାବିଚିନ୍ତି ହଠାତ୍ ସ୍ଥିର କରିନେଇ ମୋର ଅତି ପାଖଦେଇ ସାହି ପାରି ହେଲେ ! ବେଲ୍ଟ ଦେଖିବାକୁ ତ ! ଲେମ୍ବଟନ୍ କ୍ୱେ'ର ସେଇ ବାସନ୍ତୀ ସକାଳଗୁଡ଼ିକ ଆଗକୁ ମାଡ଼ି ଚାଲିବା ପାଇଁ ବେଶ୍ ଅନୁକୂଳ ଥିଲା ।

ଏବେ, ମୁଁ ଫେରି ଆସିଛି ମୋ ଜାଗାକୁ । ମୋ ବଖରାରେ ଟମ୍ ଆଜି ଲିଖିତ ଭାବେ ଗୋଟିଏ 'ଆଦର୍ଶ ଶିକ୍ଷାଦାନ' ଦେଉଛନ୍ତି । ପାଠଗୁଡ଼ିକ ଚମତ୍କାର ହେଇଚି । କୋଲୀନ୍ ଆଉ ମୁଁ ସେଥିରୁ ବହୁତ କିଛି ଶିଖିଲୁ ।

ମୋର ଟିକିଗୋରା ଛୁଆ ଡେନିସ୍ ଏବେ ଗୋଟେ ନର୍ସିଂ ହୋମ୍ (ଚିକିତ୍ସାଳୟ)ରେ ଅଛି, ତା'ର ମାନସିକ ଅସ୍ଥିରତା ପାଇଁ । ଏହାର କାରଣ ହେଲା : ପ୍ଲଙ୍କେଟ୍ * ପଦ୍ଧତି, ଆଉ ଜଣେ ଉଚ୍ଚ ଅଭିଳାଷ ପୋଷଣ କରୁଥିବା ଯୁବତୀ ମାଆ-ଯିଏ ଅଧିକରୁ ଅଧିକ ପଇସା ରୋଜଗାର ପାଇଁ କେବଳ ଲାଗି ପଡ଼ିଛନ୍ତି । ପିଲାକୁ ବାଡ଼ିରେ ପିଟନ୍ତି । ମୋର ପଦ ଶିକ୍ଷା ପରୀକ୍ଷାରେ ସେ ଆକାଶ ଛଡ଼ା ଆଉ କାହାକୁ ଭୟ କରେ ନାହିଁ ବୋଲି କହିଥିଲା । କିନ୍ତୁ ସେ କୁକୁଡ଼ା ଛୁଆକୁ ମଧ୍ୟ ଭୟ କରେ ବୋଲି ତା' ମାଆ କହିଥିଲେ । ମୋର ଗୋଟିଏ ପ୍ରବଳ ଆକାଂକ୍ଷା ରହିଛି: ଏପରି କେତେକ ଗୋରା ଅଭିଭାବକ, ଯେଉଁମାନେ ପ୍ରକୃତରେ ମାନସିକ ରୋଗୀ, ସେମାନଙ୍କୁ ଆଣି କିଛି ଦିନ ପାଖରେ ରଖନ୍ତି । ମୋର ଗୋରା ଛୁଆ ଜୁନେ ଏବେ ମଧ୍ୟ ଛୁଟିରେ ଅଛି, ଅବଶ୍ୟ ଏଥିପାଇଁ ମୁଁ ଉପଦେଶ ଦେଇଥିଲି ।

ସେଦିନ ଟ୍ରାଫିକ ନିରୀକ୍ଷକ ଆମର ଏଠାକୁ ଆସିଥିଲେ । ସେ ପଚାରୁଥିଲେ, ଆମ ପିଲେ ନୂଆ, ବଡ଼ ପୋଲ ଉପରେ କାହିଁକି ସାଇକେଲ ଚଳାଉଛନ୍ତି ? ସେମାନେ ସଡ଼କ ଉପରେ ଚାଲି ଚାଲି ଯାଆନ୍ତି ବୋଲି ଆମକୁ ତା'ର କାରଣ ପଚାରୁଥିଲେ । ପିଲାଙ୍କ ବିଷୟରେ ସେ ଏମିତି ଅନେକ କଥା ପଚାରିଥିଲେ, ଯାହାର ଉତ୍ତର ଆମେ ଦେଇ ପାରି ନଥିଲୁ ।

ସେ ଦିନ ପ୍ରଫେସର ବୈଲୀ (Baillee) କହିଲେ, ''ପରିଷ୍କାର- ପରିଚ୍ଛନ୍ନତା ଶିକ୍ଷାକୁ ହତ୍ୟା କରେ ।''

---

* ପ୍ଲଙ୍କେଟ୍ (Plunk et) : ପିଲାଙ୍କୁ ଠିଆ କରେଇବା ଆଦି ଶାରୀରିକ ହିତ ସାଧନ କରିପାରେ; କିନ୍ତୁ ମନୋବିଜ୍ଞାନ ଦୃଷ୍ଟିରୁ ଏହା ବିଶେଷ କ୍ଷତିକାରକ । ୧୯୦୬ ବେଳକୁ ଲର୍ଡ୍ ପ୍ଲଙ୍କେଟ୍ ନିଉଜିଲାଣ୍ଡର ଜେନେରାଲ ଥିଲେ । ଏହି ପ୍ରଣାଳୀ ସହିତ ତାଙ୍କ ନାମ ଯୋଡ଼ି ହୋଇଛି ।

ମୁଁ କହିଲି, ''ସେଇଟା ପୁଣି କୁହନ୍ତୁ ତ ।''

ସେ ମୋ ପାଇଁ ପୁନରାବୃତ୍ତି କଲେ, ''ପରିଷ୍କାର- ପରିଚ୍ଛନ୍ନତା ଶିକ୍ଷାକୁ ହତ୍ୟା କରେ । ମୁଁ ନିଜେ ଜଣେ ଅପରିଷ୍କାର ଲୋକ ।''

''ପରିଚ୍ଛନ୍ନତା ପାଇଁ ଆମର ଏଠାରେ ସମୟ ନାହିଁ । ତା' ସହିତ କେତେ ଯେ ଦରକାରୀ ଜିନିଷ ରହିଛି ! ସେ ସବୁକୁ ଆଣିବା, ରଖିବା ଓ ଯତ୍ନ ନେବାରେ ସମୟ ଯାଏ । ମୋତେ କେବଳ କଳାପଟା ଆଉ ଚକ୍ ଦିଅନ୍ତୁ ।''

ଅନେକ ଶିକ୍ଷକ ଚେହେରା ଓ ଲିଖନର ସୁନ୍ଦରତା ଉପରେ ଗୁରୁତ୍ୱ ଦିଅନ୍ତି । କିନ୍ତୁ ତେଣେ ଅସଲି ଉଦ୍ଦେଶ୍ୟଟି ପଣ୍ଡ ହୋଇ ଯାଇଥାଏ- ଛାତି ଭିତରୁ ଚେତନା ମରି ଆସୁଥାଏ । ଏମିତି ସୁନ୍ଦର ହାତରୁ ସୁନ୍ଦର ଲିଖନ ତ ମୁଁ କ୍ୱଚିତ୍ ଦେଖିବାକୁ ପାଇଛି । ମୋର ସୁନ୍ଦର ହସ୍ତଲିପି ଲେଖିବା ପିଲେ ତ କେବଳ ନକଲ କରିବାରେ ପାରିବାର (ନିପୁଣ) । କିନ୍ତୁ ମୋର ରଚନାତ୍ମକ କଳାକାରମାନେ ପେନ୍‌ସିଲ୍ ଚଳେଇ ସୁନ୍ଦର ଲିଖନରେ ତ ବିଫଳ ! ମାଟାଓ୍ୱେରୋକୁ ଦେଖନ୍ତୁ ତ ! ତା'କୁ ତ ମୁଁ ମୋର ଶିକ୍ଷା ଦେବାରେ ସବୁ ପିଲାଙ୍କ ଭିତରେ ସବୁଠୁ ଅଧିକ ବୁଦ୍ଧିମନ୍ତ ଓ ଚେତନା ଥିବା ପିଲା ବୋଲି ଜାଣେ- ସେ ଉଜ୍ଜଳ, ସଚେତନ !

ମୁଁ ବିବ୍ରତ ହୋଇ ପଡ଼ିଛି । ନୂଆ ହୋଇ ନାଆଁ ଲେଖାଇଥିବା ପିଲେ ଲେଖିଥିବା ବାକ୍ୟଗୁଡ଼ିକ ଭିତରେ କିଛି ସମ୍ପର୍କ ନାହିଁ । ସେଗୁଡ଼ିକ ପଢ଼ି ମୁଁ ବିବ୍ରତ । ଏବେ ପଢ଼ାହେଉଥିବା ବାକ୍ୟଗୁଡ଼ିକରେ କେତେକ ପଦ ନେଇ ବୋଧହୁଏ ଏ ଅସୁବିଧା ଦେଖାଦେଇଛି । ଏଇଟା ଖରାପ । ସେଇ ପହିଲି ପାଠଗୁଡ଼ିକ ଭିତରେ ଏଇ ସମ୍ପର୍କହୀନତା ରହିଛି । ଲିଖନ ସାବଲୀଳ ହେବା ଦରକାର । ସେଥିରେ ସଂହତି ରହିବ, ଭାବନା ପ୍ରସାର ଲାଭ କରିବ । ସେଥିରେ ବ୍ୟବହାର କରାଯାଉଥିବା ପ୍ରତ୍ୟେକ ପଦ ସୁନ୍ଦର ଭାବେ ମୂଳ ଭାବଧାରା ସହିତ ଯୋଡ଼ି ହୋଇଯାଉଥିବ । ଏତିକି ତ ଦରକାରୀ ଅଂଶ । ପ୍ରତିଦିନ ସକାଳେ ମୋର ପାଞ୍ଚ ବରଷିଆ ପିଲେ ଘଣ୍ଟାଏ ଖୋଲା କଥାଭାଷା ପରେ କିଛି କିଛି ଲେଖନ୍ତି । ସେ ଲେଖାରେ ସେମାନଙ୍କ ନିଜ କଥା ଥାଏ । ସେମାନେ ନିଜେ ବାଛିଥିବା ପଦଗୁଡ଼ିକୁ ବ୍ୟବହାର କରନ୍ତି । ସେମାନଙ୍କ ନିଜ ମନ ଭିତରର ଭାବଟିକୁ ପ୍ରକାଶ କରନ୍ତି । ଯାହା ତାଙ୍କ ପାଇଁ ଦରକାର ଏବଂ ଯାହା ସବୁ ତାଙ୍କ ସହ ଯୋଡ଼ି ହୋଇ ରହିଛି, ତାହା ହିଁ ବାକ୍ୟରେ ପ୍ରକାଶ କରନ୍ତି । ତାଙ୍କର ବଢ଼ି ଆସୁଥିବା ମନର ଭାବ ଏମିତି ପ୍ରକାଶ ପାଇ ବଢ଼ି ଚାଲେ । ତେଣୁ ସେମାନଙ୍କ

ଲେଖାରେ ସଙ୍ଗତି ଥାଏ ଓ ଗଭୀର ଅର୍ଥ ଥାଏ । କାରଣ, ପ୍ରତ୍ୟେକ ପିଲା ତା' ନିଜ ମନ ଭିତରର ଭାବଟିକୁ ହିଁ ପ୍ରକାଶ କରିବାକୁ ଲେଖିଥାଏ । ନଚେତ୍ ସବୁ କିଛି ତ ଶିକ୍ଷକଙ୍କର ହେବ । ଶିକ୍ଷାର ମୂଳ ଉଦ୍ଦେଶ୍ୟ ହେଉଛି, ଅଚେତନ ମନର ଭାବଧାରା ସଚେତନ ଭାବେ ପ୍ରକାଶିତ ହେବା । ଯେତେ ଅଧିକ ପରିମାଣରେ ଏହା ଭଲ ଭାବେ ପ୍ରକାଶ ପାଏ- ସେତେ ଅଧିକ ସଫଳତା ମିଳେ । ଅବଚେତନ ମସ୍ତିଷ୍କର ଚିନ୍ତା ଓ ଅସଂଲଗ୍ନ ଭାବଧାରା ମନ ଓ ବୁଦ୍ଧିର ଚେତନା ଦ୍ୱାରା ଅର୍ଥବୋଧକ, ସାବଲୀଳ ଭାବେ ପ୍ରକାଶ ପାଇଲେ ଶିକ୍ଷାର ଲକ୍ଷ୍ୟ ପ୍ରାପ୍ତ ହୁଏ । ଏଇ ଭାବଧାରାର ବିକାଶ ହେଉଥିବା ଦରକାର । ଆଉ,ଏଇଟା ତ ନୂଆ ନୁହେଁ । ଆଧୁନିକ ଶିକ୍ଷା ପଦ୍ଧତିରେ ଏହା ସ୍ୱୀକୃତ, ସମସ୍ତେ ଏଇ ପ୍ରଣାଳୀ ବୁଝନ୍ତି ଓ ଗ୍ରହଣ କରନ୍ତି ।

ବସନ୍ତ ଋତୁର ମଳୟ ପବନରେ ମୁଁ ଗୀତ ଶୁଣୁଥିଲି । ରାତିରେ ଖାଇବା ସମୟ ହୋଇ ନ ଥିଲା । ଗାଆଁ (ପା') ଆଡ଼କୁ ଚାହିଁଲି । ସଭା-ଘରର ବାରଣ୍ଡା ନିକଟରେ ହେବାକୁ ଥିବା ହକି ଟୁର୍ଣ୍ଣାମେଣ୍ଟ ପାଇଁ ଯୁବକ ଦଳ ଅଭ୍ୟାସ କରୁଥିଲେ । ସେମାନେ ବେଶ୍ ଭଲ ଭାବେ ଗୀତ ଗାଉଥିଲେ । କିଛି ଦିନ ତଳେଏଇ ଛୁଟି ଭିତରେ ଆମେ ଗୋଟିଏ ହକି ଟୁର୍ଣ୍ଣାମେଣ୍ଟ୍‌ରେ ଯୋଗ ଦେଇଥିଲୁ । ସେଠାରେ ଯେଉଁ ସବୁ ଗୀତ ଶୁଣିଥିଲୁ, ତା'ଠାରୁ ଏ ଯୁବକ ଦଳର ଗୀତ ପୂରା ଅଲଗା । ଇଏ ବିଅର୍ (ମଦ) ଗାନ । (ଏସବୁ ଗୀତ ସେମାନେ ମାଇକ୍ରୋଫୋନ୍ ଲଗେଇ ଗାଉଥିଲେ । ସଭାଘରର ଛାତ ଉପରେ ତିନୋଟି ଲାଉଡ୍ ସ୍ପିକର୍ ମଧ ଖଞ୍ଜି ଥିଲେ ।) ଆନନ୍ଦ ଉଲ୍ଲାସର ସମାବେଶରେ ଏଇଟାକୁ ମଧ ଠିକ୍ କହିବା ଉଚିତ । ପ୍ରଥମ ଦିନ ଆଉ ପ୍ରଥମ ସନ୍ଧ୍ୟା ପରେ ସାରା ରାତି ଆଉ ସକାଳୁ ସଂଜ ଯାଏଁ ଏ ଗୀତ ଅନ୍ତତଃ ସହି ହେଉଥିଲା । କିନ୍ତୁ ଦ୍ୱିତୀୟ ଦିବସର ସକାଳୁ ରାତି ସାରା ଲାଗି ରହିଥିବା ସେ ସଂଗୀତର ଗୁଣ ବେଶ୍ ଊଣା ହୋଇ ଯାଇଥିଲା । ତେଣେ ପୁଣି ଛାତ ଉପରେ ଲାଉଡ୍ ସ୍ପିକର୍‌ଗୁଡ଼ିକୁ ବନ୍ଦ କରିବାକୁ ସେମାନେ ବୋଧହୁଏ ଭୁଲି ଯାଇଥିଲେ । ରାତି ସାରା ପରେ ଦ୍ୱିତୀୟ ଦିନର ସକାଳୁ ପୁଣି ସେଇ ଗୀତ ଶୁଣିବାକୁ ପଡ଼ିଲା; ହେଲେ ସେଥିରେ ସେପରି କିଛି ହେଲେ ନଥିଲା । ତଥାପି ଦ୍ୱିତୀୟ ଦିନ ମଧ ମୁଁ ସବୁ ଗ୍ରହଣ କରିନେଲି । କାରଣ: ''ନିଜେ ବଂଚିବା ସହିତ ଅନ୍ୟମାନଙ୍କୁ ବଂଚିବାକୁ ଦେବା'' ନୀତିରେ ମୁଁ ତ ବିଶ୍ୱାସ କରେ !! କିନ୍ତୁ ତୃତୀୟ ଦିନର ସକାଳବେଳକୁ ମୋର ସହିବା ସୀମାକୁ ଏହା ଡେଇଁ ଯାଇଥିଲା;- ମୁଁ ମୋ ନିକଟରେ ମୋର ଗୋରା ଲୋକଙ୍କୁ କେବଳ ଚାହୁଁଥିଲି ! ମୋର ଆଉ ସହିବାକୁ ବଳ ନ ଥିଲା !!

ହକି । କେଡ଼େ ମଉଜିଆ ସତେ । ଏହା ବନ୍ଧୁ ମିଳନର ଏକ ସୁଯୋଗ, ଏକ କ୍ଷେତ୍ର ରଚନା ମାତ୍ର । ବନ୍ଧୁମିଳନ- ମୁଁ ଠିକ୍ ସେତିକି କେବଳ ବୁଝେ । ମିଳନ, ମିଳାମିଶା, ଏକାଠି ହେବା । ସାରା ରାତି, ଆଉ ସାରା ଦିନ-ଦେହ ଆଉ ପ୍ରାଣର ସହିତ ବନ୍ଧୁ ମିଳନ । ମୋର ଜଣେ ବନ୍ଧୁ ଏପରି ଦୁଇଟି ହକି ଟୁର୍ଣାମେଣ୍ଟ୍‌ରେ ଯୋଗ ଦେଇଥିଲେ । ମାତ୍ର ମୁଁ ଏହାକୁ "ବିଅର୍ ଟୁର୍ଣାମେଣ୍ଟ୍" କହେ । ସେମାନେ ସାରା ରାତି ଗୀତ ଗାଆନ୍ତି, ଆଉ ବିଅର୍ ପିଅନ୍ତି- ସକାଳ ଯାଏଁ । ଏ କଥା ଯେ ମୁଁ ଜାଣିନି, ସେପରି ନୁହେଁ । ପ୍ରଥମେ ପ୍ରଥମେ ଆମେ ସବୁ ଶିକ୍ଷା ବୋର୍ଡ଼ଠାରୁ ଦୂରରେ ରହୁଥିଲୁ । ସେତେବେଳେ ସେ ଦୂର ଅଞ୍ଚଳରେ ଆମେ ଅନେକ ଘଟଣାରେ ଏପରି ସକାଳଯାଏଁ ଖାଇବା ଓ ପିଇବାରେ ବେଶ୍ ମ ଜି ଯାଉଥିଲୁ । ଆଉ ଏଇ ଗାଆଁର ଯୁବକ ଦଳମାନେ ଜୀବନରେ ଅନ୍ୟ କୌଣସି ସ୍ଥାନରେ କିମ୍ବା ଅନ୍ୟ ସମୟରେ ଇମିତି ଆମ ପରି ସମାନ ଭାବରେ ମିଶି ଯିବା, ମୁଁ କେବେ ଦେଖିନି । ଖାଲି ଏତିକି ଭିନ୍ନ : ଛାତ ଉପରେ ଆମର ଏପରି ତିନୋଟି ଲାଉଡ୍ ସ୍ପିକର୍ ନ ଥିଲା !

ଏକାଠି ହେବା, ମାଓରିମାନେ ମିଳିମିଶି 'ଏକ' ହୋଇଯିବା ଭଲ ଭାବେ ଜାଣନ୍ତି । ନୂଆ ସଂସ୍କୃତି ଦ୍ୱାରା ତାଙ୍କର ସାମାଜିକ ହୃଦୟ ଏବଂ ସାମାଜିକ ମନ ଏ ଯାଏଁ ପୂରା ନଷ୍ଟ ହୋଇ ଯାଇନି । ମୁଁ ଅବଶ୍ୟଏହାର ବିରୋଧ କରୁନି । ବିଅର୍ ଅଛି ତ ସବୁ ଅଛି । 'ପିପିରିକି'ରେ ମୋତେ ସେଠାର ଜଣେ ପୁରୁଣା ମଦପିଆ ବୁଢ଼ୀ କହିଥିଲା, "ଆନନ୍ଦ ପାଇବା ପାଇଁ ମୁଁ ନିଶ୍ଚୟ କିଛି କରିବି ।" ସେ କ'ଣ କରିବ, ମୁଁ ଜାଣିଥିଲି ।

ଆଉ ପୁଲିସ୍ ବିଷୟ କହିବାକୁ ଗଲେ, ସେମାନେ ତ ବିଅର୍ ଯୋଗାଇ ଦିଅନ୍ତି । ମୁଁ ଏଥିରେ ନିଶ୍ଚିତ । ସେମାନେ ଏଇଆ କରନ୍ତି ।

ପ୍ରତିଟି ଅନ୍ଧକାର ରାତ୍ରିରେ ତା' ପାଇଁ ତାରାଟିଏ ଥାଏ । ସେଇ ସଙ୍ଗୀତ ମୁଖର ରାତ୍ରିଗୁଡ଼ିକ.... ସେ ଦିନ ନିଦ ବେଶ୍ ଗଭୀର ଥିଲା । ଗାଢ଼ ମେଘ ପରି ନିଦ ମୋତେ ବୁଡ଼େଇ ରଖିଥିଲା । ହଠାତ୍ ମୁଁ ଉଠି ପଡ଼ିଲି । ଏକ ସଙ୍ଗୀତର ମୂର୍ଚ୍ଛନାରେ ନିଦ ଭାଙ୍ଗିଗଲା । ସ୍ୱରର ଝଂକାର ଓ ମୂର୍ଚ୍ଛନାରେ ମୁଁ ପୂରା ସଚେତ ହୋଇ ଉଠିଲି । ସେଇଟା କାହୁ ଗାଉଥିଲା । ମୁଁ ଆଖି ଖୋଲିଲି । ପାହାନ୍ତିଆ ହେଇ ଯାଇଥିଲା । ମୁଁ ପୁଣି ଆଖି ବୁଜି ଶୋଇଲି । କାହୁ ମାତାଲ୍ ନ ଥିଲା । ସେ ତାଙ୍କ ଗାଆଁରେ

ମାଇକ୍ରୋଫୋନ୍ ଲଗେଇ ଗାଉଥିଲା । ତା' ସ୍ୱର ଉଚ୍ଚ ଥିଲା- ବୋଧେ ଅନେକ ଲୋକ ଶୁଣୁଥିଲେ । ମନେ ହେଲା, ପାହାନ୍ତିଆ ପହରରେ ସତେ ଯେପରି ସୁନ୍ଦର ସୁନେଲି ପକ୍ଷୀଟିଏ ଉଡ଼ି ବୁଲୁଛି । ଡେଣା ପିଟି ଉଠୁଛି ଉପରକୁ, ଉପରକୁ, ଆହୁରି ଉପରକୁ । ଏପରି ଗୀତ ମୁଁ ଆଗରୁ କେବେ ଶୁଣି ନ ଥିଲି । ସଙ୍ଗୀତର ମୂର୍ଚ୍ଛନା ବଢ଼ି ଉଠି ତା' ପରେ ସମାପ୍ତିର ରାଗିଣୀ । ସେଥିରେ ଥିଲା କାହ୍ନୁର ନିଜସ୍ୱ କଳାତ୍ମକ ପରିବେଷଣ, ଏକ ଉଚ୍ଚତର ମୂର୍ଚ୍ଛନା ପରେ ପରେ ତାଳଲୟର ସମାହାରରେ ଘୂରି ଘୂରି ଓହ୍ଲେଇ ଆସିଲା ପରି ସମାପ୍ତି !

ଗୀତଟିର ବିଷୟବସ୍ତୁ ଜଣେ ମାତାଲ୍ ଉତ୍‌ଶୃଙ୍ଖଳ ଚରିତ୍ରକୁ ନେଇ ରଚିତ ହୋଇଥିଲା । କିନ୍ତୁ କଳାତ୍ମକ ଗାୟନରେ ମୁହୂର୍ତ୍ତଟି ସ୍ମରଣୀୟ ହୋଇଗଲା, ସବୁ ଦିନ ପାଇଁ ମନରେ ରହିବ । ଆଉ ଯେତେବେଳେ ମୁଁ ଜାଣିବି ଯେ ମୋର ମରଣ ପାଖେଇ ଆସିଲାଣି, ସେତେବେଳେ ଏଇଟିକୁ ପୁଣି ମନେ ପକାଇବି । କାହ୍ନୁର ଏଇ ପ୍ରଭାତୀ ସଙ୍ଗୀତ ଏକ ସ୍ମୃତି ।

ଏବେ ଆମର ବାସ୍କେଟ୍‌ବଲ୍ ଖେଳ ଶେଷ ହୋଇଛି । ତେଣୁ ଆମେ ସଙ୍ଗୀତର ଭିନ୍ନ ଭିନ୍ନ ବାଦ୍ୟଯନ୍ତ୍ର ଶିକ୍ଷା ହାତକୁ ନେଇ ପାରିବୁ । ଏହାର ସଙ୍ଗୀତ ମୂଲ୍ୟ ଅପେକ୍ଷା ସାମାଜିକ ପ୍ରଭାବ ଅଧିକ । ଏଇଟା ସର୍ବବାଦୀ ସମ୍ମତ । କହିବା ବାହୁଲ୍ୟ, କିଛିଟା ସଙ୍ଗୀତ ଆମ ଭିତରେ ଯେମିତି ସଂଚରି ଯାଇଛି । ତେବେ ଏଇ ବର୍ଷ ଆମେ ଅଧିକ କିଛି ଉନ୍ନତ ସଙ୍ଗୀତ ଶିଖି ନେବୁ । ପ୍ରତ୍ୟେକ ବିଷୟ ତ କୌଣସି ନା କୌଣସି ସ୍ଥାନରେ ଆରମ୍ଭ ହେବା ଦରକାର । ଏଇଟା ସେମିତି ଏକ ଆରମ୍ଭ ।

ମୁଁ ଯେଉଁ ପିଲାମାନଙ୍କୁ ଶିକ୍ଷା ଦିଏ, ସେମାନଙ୍କ ପ୍ରେମରେ ପଡ଼ିଯାଏ- ସେମାନଙ୍କୁ ସତେ ଯେମିତି ବିଭା ହୋଇପଡ଼େ । ଗତବର୍ଷ ଯେତେବେଳେ ବାଦ୍ୟଯନ୍ତ୍ର ବଜେଇବା ଆରମ୍ଭ କଲି, ସେତେବେଳେ ଏଇଟା ଜାଣିପାରିଲି । ସେମାନେ ଯାହା କରନ୍ତୁ ବୋଲି ମୁଁ କରିବାକୁ ଚାହୁଁଥିଲି, ତାହା ସେମାନଙ୍କୁ ମୋ ପରି ଗଢ଼ିବାକୁ ଦରକାର ପଡୁଥିଲା । ତା'ଠାରୁ ଅଧିକ ମଧ୍ୟ ଆଶା ଥିଲା । ସେମାନେ ମୋ ନିଜର ଅଙ୍ଗ ପ୍ରତ୍ୟଙ୍ଗ ହୋଇଯାଆନ୍ତେ । ଶିକ୍ଷାଦାନ ଆଗେଇ ଚାଲିବା ସଂଗେ ସଂଗେ ମୋତେ ମଧ୍ୟ ବହୁତ କିଛି ଶିଖିବାକୁ ମିଳିଲା । ସଫଳ ସଙ୍ଗୀତ କାର୍ଯ୍ୟକ୍ରମ ପାଇଁ ଆମେ ସଭିଏଁ 'ଏକ' ହୋଇଯିବା ଦରକାର ବୋଲି ମୁଁ ବୁଝିପାରିଲି । ଗୋଟିଏ ଅଙ୍ଗ- ଶାରୀରିକ ଦୃଷ୍ଟିରୁ

ପ୍ରତ୍ୟେକେ ଅନ୍ୟର ଆଉ ମୋର ନିକଟତର ହେବା ଉଚିତ ଥିଲା । ଆମେ ସଭିଏଁ ମିଶି ପିଆନୋ ଚାରିପାଖରେ ଗୋଟିଏ ବିଡ଼ା ପରି ଗଦେଇ ହୋଇ ପଡ଼ିବା ଦରକାର ଥିଲା । "ଆମର ହେବା ଦରକାର ଥିଲା" ବୋଲି ମୁଁ କହିଛି, କିନ୍ତୁ ସେପରି ହେଲା ନାହିଁ । ମୁଁ ସେମାନଙ୍କୁ ଯେ କୌଣସି ପ୍ରକାରେ ଗଢ଼ିବାକୁ ଚେଷ୍ଟା କଲେ ସୁଦ୍ଧା ସେମାନେ ମୁଁ ପିଆନୋ ବଜେଇବା ବେଳେ ମୋତେ ଘେରି ଯାଉଥିଲେ । ଯାହା ହେଉ, ମୁଁ ସେମାନଙ୍କ ବସିବା ସ୍ଥାନ ଠିକ୍ କରିଦେଲି, ଯେପରି ସେମାନେ ଦର୍ଶକମାନଙ୍କ ମୁହାଁମୁହିଁ ହୋଇ ରହିବେ, ଆଉ ପ୍ରତ୍ୟେକ ପିଲାଙ୍କୁ ଦର୍ଶକ ଯେପରି ଦେଖି ପାରିବେ । କହିବା ବାହୁଲ୍ୟ ଗୀତ ଗାଇବା ଶେଷ ହେଲା ବେଳକୁ ସଭିଏଁ ଯେମିତି ସଭିଏଁଙ୍କୁ ବିଭା ହୋଇ ପଡ଼ିଛନ୍ତି- ପ୍ରେମରେ ପଡ଼ି ଯାଇଛନ୍ତି ! ଆଉ, ମୁଁ ଯେପରି ସବୁରି ଭିତରେ, ସବୁରି ଘେରରେ ଛନ୍ଦି ହୋଇଯାଇଛି ।

ଯେତେବେଳେ ସରଳ ସୁନ୍ଦର ଭାବରେ ଶ୍ରୋତାମାନଙ୍କୁ ମୁହାଁମୁହିଁ ହୋଇ ବାଜା ବଜା ଯାଏ, ଏବଂ ଗୀତ ଗାଇହୁଏ, ସେତେବେଳେ ସବୁଠାରୁ ଭଲ ଧ୍ୱନି ବାହାରେ, ଆଉ କଣ୍ଠରୁ ସବୁଠୁଁ ମଧୁର ଗୀତ ଝରି ଆସେ । ଏମିତି ଗୋଟେ ନିୟମ ରହିଛି । ହେଲେ, ଏଇଟା ମୁଁ ବୁଝି ପାରି ନଥିଲି । ଯେତେବେଳେ ମୁଁ ନିଜେ ଶୁଣିଲି.... ମାଓରି ମଶାଣି (ସମାଧି)ରେ ଯୁବକ ଦଳର ସେ ଶୋକ-ସଙ୍ଗୀତ... ଭେରେପାରିତାଙ୍କ ଯାଆଁଳା ଛୁଆଙ୍କ ସମାଧିରେ.... ସେତେବେଳେ ମୁଁ ଏହା ବୁଝିଲି । ସେମାନେ ଦର୍ଶକମାନଙ୍କୁ ମୁହେଁଇବାକୁ ଭାରି ଲାଜ କରୁଥିଲେ । ସେଇଟା ତାଙ୍କର ସହଜାତ ପ୍ରବୃତ୍ତି । ସେମାନେ ଗୋଲାକାର ହୋଇ ବସିଥିଲେ- କେବଳ ନିଜ ଦଳର ପରସ୍ପରକୁ ଦେଖୁଥିଲେ । ମୋ କଥା କହିବାକୁ ଗଲେ, ସେଇ ଥରକରୁ ମୁଁ ସବୁଦିନ ପାଇଁ ଶିଖିଗଲି । ଏବେ ମୁଁ ସେ କଥା ଜାଣି ଯାଇଛି ।

ମୁଁ କେଉଁଠି ଥିଲି ? ମୁଁ ମୋର ବାଦ୍ୟ ମଣ୍ଡଳୀକୁ ବିଭା ହୋଇ ପଡ଼ିଥିବା କଥା କହୁଥିଲି । ଏବେ ମୁଁ ନିଶ୍ଚିତ ଯେ, ଏ ଯାଏଁ ଯାହା କିଛି ଶିଖି ପାରିଛି, ସେ ସବୁ କେବଳ ସଙ୍ଗୀତ ଜରିଆରେ, ଆଉ କୌଣସି ମାଧ୍ୟମରେ ନୁହେଁ । ମାତ୍ର ଏବେ ମୁଁ ଅନ୍ୟ ସବୁ କ୍ଷେତ୍ରରେ ବି ସେଇଆ ଦେଖୁଛି, ଆଉ ଜାଣି ପାରୁଛି । ଏତେ ଦିନ ଧରି ଛୁଆଙ୍କୁ ପଢ଼େଇ ଶିଖେଇବା ଭିତରେ ବି ମୁଁ ଏ କଥା ଅନୁଭବ କରି ପାରି ନ ଥିଲି । ମୋ ଶିଶୁ ଶ୍ରେଣୀରେ ମଧ ଅଜାଣତରେ ସେଇ ଘଟଣା ଘଟୁଛି, ସୁନ୍ଦର ଭାବେ ସମସ୍ତଙ୍କୁ ଛୁଉଁଛି । ସେମାନେ ଯାହା କରନ୍ତୁ ବୋଲି ମୁଁ ଚାହେଁ, ତାହା ସେମାନଙ୍କ ଦ୍ୱାରା କରେଇବାକୁ

ହେଲେ, ସେମାନଙ୍କୁ ମୁଁ ପାଖକୁ ଆଣେ- ପାଖକୁ, ଆହୁରି ପାଖକୁ.... ଦେହରେ ଆଉ ପ୍ରାଣରେ..... ଅତି ପାଖକୁ । ସେମାନେ ଏ କଥା ଜାଣି ପାରନ୍ତି ନାହିଁ, ମାତ୍ର ମୁଁ ଜାଣେ । ସେମାନେ ମୋ ସହିତ ମିଶି ଏକାକାର ହୋଇଯାଆନ୍ତି- ମୋ ଦେହର ଅଂଶ ପରି, ପ୍ରେମିକ ପରି । ପାଖେଇ ପାଖେଇ ମିଶି ଯାଇ ଏକ ହୋଇଯିବାରେ, ଟିକିଏ ଟିକିଏ ଅଲଗା ଡାଞ୍ଚା ରହିଛି । ପହିଲେ ସନ୍ଦେହ ମିଶା ପଚାରିଲା ପଚାରିଲା ପରଖ, ପରେ ପରେ ଆଦରି ନେବାର ଢଙ୍ଗ; ଆଉ ତା' ପରେ, ଧୀରେ ଧୀରେ କିମ୍ବା ହଠାତ୍ ପାଖେଇ ଆସିବା.... ପାଖକୁ ଲାଗି ଯାଇ କ୍ରମେ ଏକ ହୋଇଯିବା... ଆଉ ତେଣିକି, ସମ୍ପୂର୍ଣ ଏକୀଭୂତର ଦୀପ୍ତି.... ତେଜିୟାନ ଶାନ୍ତି ।

ଆଉ, ଜନ୍ମ କ'ଣ ହୋଇପାରେ ? ମିଳିତ ବାଜଣା (Orchestra)ରେ ସେଇଟା ସଙ୍ଗୀତ ଏବଂ ଶିଶୁ ଶ୍ରେଣୀରେ ସେଇଟା କାମ । ଜନମ ହେବା ଲାଗି ରହିଛି ଯେମିତି... ଏକ ଦୀର୍ଘ, ଅନବଚ୍ଛିନ୍ନ, ଚିରନ୍ତନ ପ୍ରକାଶ ଲାଭ ହିଁ ତ ଜନ୍ମ.... ପ୍ରତିଟି ପ୍ରଭାତରେ ସେଇ ପ୍ରସବ ବେଦନାର ଆରମ୍ଭ, ଆଉ, ସେଇ ବେଦନା ଭିତରେ ହିଁ ବିଶ୍ରାନ୍ତି, ପ୍ରତିଟି ସନ୍ଧ୍ୟାରେ ।

ଏବେ ଯେତେବେଳେ ମୁଁ ଏହାକୁ ଏକ ବିବାହ ରୂପରେ ଦେଖିପାରିଲି, ସେତେବେଳେ ଏହାର ରୁକ୍ଷ-କଠୋର- କଣ୍ଟକିତ ଆଉ ଅଜ୍ଞାତ ପଥ ମୋ ପାଇଁ ସରଳ-ସୁନ୍ଦର ହୋଇ ଉଠିଲା । କେଡ଼େ ସରଳ ଆଉ ସହଜ ସତେ !

ବଡ଼ ବଡ଼ କଥା ! ବର୍ଣ୍ଣୁଆ ଶବ୍ଦାବଳୀ, ସୁନ୍ଦର ପଦ-ବିନ୍ୟାସ । କିନ୍ତୁ ଏ ସବୁର ତଳେ ମଧ୍ୟ ରହିଛି ଏକ ଗଭୀର ଅର୍ଥ । ତାହା ହିଁ ହେଉଛି ମୋ ଜୀବନର ଏକୀଭୂତ ସଂହତି । ସେମାନଙ୍କ ପାଇଁ ମଧ୍ୟ ସେଇ ଏକାକାର ସଂହତି ।

ପ୍ରେମ-ପରିଣୟର ସବୁ ନୀତିନିୟମ ଏଇ ଆତ୍ମିକ ଓ ବୌଦ୍ଧିକ ଏକୀକରଣ ପ୍ରକ୍ରିୟା ପ୍ରତି ପ୍ରଯୁଜ୍ୟ । କିନ୍ତୁ ଏଥିରେ ଦୁଇଟି ପକ୍ଷ ହିଁ ରହିବା ଦରକାର । ଯେତେବେଳେ କୌଣସି ତୃତୀୟ ପକ୍ଷର ନିଷ୍ଠା ପ୍ରବେଶ କରେ, ପ୍ରେମ-ବନ୍ଧନ ସଂଗେ ସଂଗେ ତୁଟିଯାଏ । ନିଷ୍ଠା ତ ପ୍ରେମର ପରିପନ୍ଥୀ । ଯେତେବେଳେ ମୋ ପାଖରେ ପଢୁଥିବା ପିଲାଟି ଅନ୍ୟ ଦିଗକୁ ଟାଣି ହୋଇଯାଏ କିମ୍ବା ମୋ'ଠାରୁ ମୁହଁ ବୁଲାଏ, ମୁଁ ସେତେବେଳେ ତା'କୁ ପଢ଼େଇ ପାରେ ନାହିଁ । ଅବଶ୍ୟ ପଢ଼େଇବା କହିଲେ ଯାହା ବୁଝାଏ, ତାହା ସେଇ ପ୍ରକୃତ ଶିକ୍ଷାଦାନ । ଏ କ୍ଷେତ୍ରରେ ଆଗେ ମୁଁ ମୋ ଚେଷ୍ଟା ଚଳେଇ ରଖି ପାଠ ପ୍ରତି ଓ ମୋ ପ୍ରତି ପିଲାକୁ ଟାଣି ଆଣିବାକୁ ଚେଷ୍ଟା କରୁଥିଲି ।

କିନ୍ତୁ ତା'ର ଫଳ ହେଉଥିଲା: ବିରକ୍ତି, ବିବାଦ ଏବଂ ଘୃଣା । ସେତେବେଳେ ମୁଁ ଏହା ଜାଣି ପାରି ନଥିଲି । ଏବେ କିନ୍ତୁ ମୁଁ ବୁଝି ପାରିଛି । ତେଣୁ ଏବେ ଆମ (ଶିକ୍ଷକ ଓ ଛାତ୍ର) ଭିତରେ ପ୍ରେମ ତୁଟିଗଲେ, ମୁଁ ତା'କୁ ସୁଧାରିବାକୁ ପିଲା ପଛରେ ଗୋଡ଼େଇ ଯାଉନି । ମୁଁ ନୀରବରେ ବସିଯାଏ, ଦୁଃଖ ପାଏ । କିନ୍ତୁ ପ୍ରତିବାଦ କରେନାହିଁ । ପୁଣି ନୂଆ ପିଲାଙ୍କୁ ନେଇ ବାଟ ଚାଲିବା ପର୍ଯ୍ୟନ୍ତ ମୋତେ ଏଇ ବେଦନା ଭୋଗିବାକୁ ପଡ଼େ ।

ଏ ସବୁ କଥା ଭାବିଲାବେଳେ ଅତୀତର କେତେ ବିସ୍ମୟକର ସଫଳତା ମନେ ପଡ଼ୁଛି । କିନ୍ତୁ ସେତେବେଳେ ସେ ସବୁ ମୁଁ ବୁଝି ପାରି ନ ଥିଲି । ଏବେ ମନେ ପଡ଼ୁଛି, 'କ' ଦଳ ସହ କଥାଭାଷାରେ ମୁଁ କେତେ ଯେ ସମୟ ବିତେଇ ଦେଇଛି । ଶୀତ ଦିନର ଶୀତଳ ପରିବେଶରେ ନିଜ ଘର ଭିତରକୁ ସେମାନଙ୍କୁ ଡାକି ଆଣିଥିଲି । ମସିଣା ପକେଇ ମୋ ଆଗରେ ସେମାନଙ୍କୁ ବସେଇ କିମ୍ବା ଛୋଟ ଛୋଟ ଚୌକୀ ଓ ମେଜରେ ବସେଇ ଭଲ ଭଲ ସୂଚନା, ବଡ଼ ବଡ଼ କ୍ରୀଡ଼ା କୌଶଳ, ବ୍ୟବହାର, ପୋଷାକ ପତ୍ର ଏବଂ ଖେଳ ପଡ଼ିଆର ଚାଲି-ଚଳଣି ଆଦି କାର୍ଯ୍ୟ କ୍ଷେତ୍ରରେ କିପରି ହେବାକୁ ହେବ ବୋଲି ଅସରନ୍ତି ଆଲୋଚନା କରି ଚାଲିଥିଲି । ତଥାପି ସେତେବେଳେ ମୁଁ ଠିକ୍ ବୁଝି ପାରି ନ ଥିଲି- ଯଦିଓ ନିବିଡ଼ ଭାବରେ ସେଇ ବିବାହ ବନ୍ଧନର ପ୍ରେମରେ ମୁଁ ବୁଡ଼ି ରହିଥିଲି ! ଏପରିକି ମୋ ପିଲେ ସଫଳତାର ସହିତ ଖେଳି ଖେଳି ରାଜ୍ୟସ୍ତରର ଶୀର୍ଷରେ ପହଞ୍ଚି ଥିଲାବେଳେ ମଧ୍ୟ ମୁଁ ଜାଣି ପାରିନଥିଲି, ମୁଁ କଣ କରୁଥିଲି ! କିନ୍ତୁ ଏବେ ମୁଁ ଜାଣି ପାରିଛି । ଏବେ ମୁଁ ବୁଝି ପାରିଛି !!

ସଂହତି (ଓତଃପ୍ରୋତ ଭାବେ ଜଡ଼ିତ ହୋଇ ଏକ ହୋଇଯିବା ।)..... ଏଇ ଶକ୍ତିଶାଳୀ ଆଉ ସକ୍ରିୟ ଶବ୍ଦଟି ମାନସିକ ସ୍ତରରେ ପ୍ରବେଶ କରି ଜୀବନକୁ ଯେପରି ଉଚ୍ଚରୁ ଉଚ୍ଚତର ସ୍ତରକୁ ଉଠେଇ ନିଏ । ନିଜର ପରିବେଶର ଜୀବନ ସହିତ ବିବାହ । ସେ ସମାଜର ପରିସର ଅତି ସଂକୀର୍ଣ୍ଣ କିମ୍ବା ଅତି ବିସ୍ତୀର୍ଣ୍ଣ ହୋଇଥାଉ । ଉପସ୍ଥିତ ସାମାଜିକ ପରିବେଶ ମନ ଆଉ ପ୍ରାଣର ବିସ୍ତୃତିରେ ଅତି ନଗଣ୍ୟ ପ୍ରଭାବ ପକେଇଥାଏ । "ଘଟଣା କ୍ରମେ ମିଳିଥିବା ବାସସ୍ଥାନ ମଣିଷ ଆତ୍ମାର ପରିସରକୁ ନିୟନ୍ତ୍ରଣ ଓ ସୀମାବଦ୍ଧ କରି ପାରେ ନାହିଁ ।" ସ୍ଥାନ ନିର୍ବିଶେଷରେ ଜୀବନର ସ୍ୱରୂପ ଓ ଗୁଣଧର୍ମ ସବୁଠାରେ ଗୋଟିଏ ପ୍ରକାରର । ସବୁଠାରେ ତ ଠିକ୍ ସେଇ ଈର୍ଷା- ଦୟା, ଘୃଣା– ସହାନୁଭୂତି, ଆନନ୍ଦ-ମୃତ୍ୟୁ, ଶ୍ରମ ଆଉ ଶାନ୍ତି !! ଏକ ସଂକୀର୍ଣ୍ଣ ସୀମିତ



ପରିବେଶରେ ଯେପରି, ଅନ୍ୟ ଏକ ବିସ୍ତୃତ ବିଶାଳ ପରିବେଷ୍ଟିନୀରେ ମଧ୍ୟ ଠିକ୍ ସେପରି ବଞ୍ଚିଲା ପରି ବଞ୍ଚିବା, ଜୀବନ ପକ୍ଷରେ ସମ୍ଭବ । ସମ୍ପର୍କ ନ ଥିଲେ ମଧ୍ୟ ଫ୍ଲାଉବର୍ଟ୍ (Flaubert)ଙ୍କ ବିଷୟ ମନକୁ ଆସୁଛି । ସେଇଥିପାଇଁ ବୋଧହୁଏ ସେ ଅଳ୍ପ ବୟସରେ ସନ୍ୟାସ (ମୂର୍ଚ୍ଛାରୋଗ) ରୋଗରେ ପ୍ରାଣ ହରାଇଲେ । ସେ ଯାହା ଲେଖିଥିଲେ ଏବଂ ଯେଉଁ ନୂଆ ଭାବଧାରା ସୃଷ୍ଟି କରିଥିଲେ, ତାହା ତାଙ୍କର ଜନ୍ମସ୍ଥାନ ସହରର ସୀମା ଅତିକ୍ରମ କରି ଦୂର ଦୂରାନ୍ତରେ ପ୍ରସାର ଲାଭ କରିଥିଲା । ଏହାର ଉତ୍ତରରେ ଆପଣ ବୋଭାରୀ ମହାଶୟା (Madam Bovary)ଙ୍କ କଥା ଉଠେଇ ପାରନ୍ତି । ଏଇ ଲେଖାର ପ୍ରଭାବ ନର୍ମାଣ୍ଡିର ବୌଦ୍ଧିକ ପରିସର ଅତିକ୍ରମ କରି ବହୁଦୂର ପ୍ରସାରିତ ହୋଇଥିଲା ତ ! ଏ ସବୁ ସହିତ ତାଙ୍କର ଅନ୍ୟ ଏକ ରଚନା 'ସଲାଂବୋ' (Salammbo)ରେ ଥିବା ସଂହତି-ହୀନତା ମଧ୍ୟ ବିଚାରକୁ ନେବା ଉଚିତ ହେବ । ତେବେ, ଠିକ୍ ଅଛି....

ପରିଶେଷରେ ଏତିକି ଜାଣି ପାରିଥିବାରୁ ମୁଁ ଆନନ୍ଦିତ,- ଶିକ୍ଷା ଦେବାକୁ ହେଲେ ବିଭା ହେବାକୁ ପଡ଼ିବ (ନିବିଡ଼ ପ୍ରେମରେ ଶିକ୍ଷକ ଓ ଶିକ୍ଷାର୍ଥୀ ଏକାକାର ହୋଇଯିବେ) । ଏଇ ସିଦ୍ଧାନ୍ତରେ ପହଞ୍ଚିଲାପରେ ମୁଁ ଦେଖୁଛି ମୋର ସହଯୋଗୀମାନେ ଅବାଞ୍ଛନୀୟ ନୁହଁନ୍ତି । ଆନ୍ଦ୍ରେଗାଇଡ୍ (Andr'e Gide)ଙ୍କ କଥା

ମନେ ପଡ଼େ: ''ମୁଁ ଯେତେବେଳେ ଏକୁଟିଆ ଥାଏ, ମୋ ଜୀବନ ସରି ଆସିଲା ପରି ମୋତେ ଲାଗେ,- ସବୁ ଯେମିତି ବନ୍ଦ ହୋଇଯିବ ଏବଂ ସତେ ଯେମିତି ବଞ୍ଚି ରହିବାର ଶେଷ ଅବସ୍ଥାରେ ମୁଁ ପହଞ୍ଚି ଯାଇଛି । ସହାନୁଭୂତିରେ କେବଳ ମୋ ହୃଦ୍-ସ୍ପନ୍ଦନ ଚାଲୁ ରହେ, ମୁଁ କେବଳ ଅନ୍ୟମାନଙ୍କ ଜରିଆରେ ବଞ୍ଚି ରହେ- କହିବାକୁ ଗଲେ, ଅନ୍ୟମାନଙ୍କୁ ସମ୍ପୂର୍ଣ ଭାବରେ ନିଜର କରି ଏବଂ ବିବାହ କରି । ଅନ୍ୟ ସହିତ ଥିଲାବେଳେ ନିଜକୁ ପୂରାପୂରି ତାଙ୍କ ଭିତରେ ହଜେଇ ଦେଇ ମୁଁ ଜୀବନର ପୂରା ସୁଆଦ ଯେପରି ଉପଭୋଗ କରିଥାଏ - ସେ ଅନ୍ୟ ଲୋକ ଯିଏ ହେଉ ପଛେ, ସେଥିରେ କିଛି ଯାଏ ଆସେନା ।''

ଫ୍ଲାଉବର୍ଟ୍ (Flaubert) ହେଉଛନ୍ତି ୧୯ଶ ଶତାବ୍ଦୀର ଫ୍ରାନ୍‌ସର ଜଣେ ବିଶିଷ୍ଟ କଳାକାର । 'ମାଡ଼ାମ ବୋଭାରୀ' ତାଙ୍କର ଏକ ବିଖ୍ୟାତ ରଚନା । ଏଥିରେ ସେ ଫ୍ରାନ୍‌ସର ବୁର୍ଜୁଆ ସମାଜର ଯଥାର୍ଥ ଚିତ୍ରଣ କରିଥିଲେ ।

କବି ୟିଟ୍‌ସ (Yeats) ମଧ୍ୟ ସେଇ ସିଦ୍ଧାନ୍ତରେ ତାଙ୍କର ବିଶ୍ୱାସ ପ୍ରକାଶ କରିଛନ୍ତି । ନୂଆ ଆୟାର୍‌ଲେଣ୍ଡ୍ ଗଠନରେ ତାଙ୍କର ଜଣେ ସହଯୋଗୀ କର୍ମୀ ବନ୍ଧୁଙ୍କୁ ସେ ଲେଖିଛନ୍ତି, ''ଜଣେ ବ୍ୟକ୍ତିଙ୍କର ବ୍ୟକ୍ତିତ୍ୱର ପରୀକ୍ଷା ହେଉଛି, ସେ କେତେ ଭିନ୍ନ ଭିନ୍ନ ମତବାଦକୁ ନିଜସ୍ୱ ମତ ସହିତ ଯୋଡ଼ି ଏକାକାର କରି ପାରିଛନ୍ତି- ସେତେବେଳେ ସମନ୍ୱୟ ଭିତରେ ସମସ୍ତଙ୍କ ସହିତ ସାମଞ୍ଜସ୍ୟ ଦେଖାଯିବ । ତୁମେ ଆୟାର୍‌ଲେଣ୍ଡ୍‌କୁ ଓ ତା'ର ଦୁଃଖକୁ ପୂର୍ଣତଃ ନିଜ ଭିତରେ ଅନୁଭବ କର- ତୁମେ ହୋଇଉଠିବ ଜନସାଧାରଣଙ୍କ କବି, ଗଣକବି, ନୂଆ ଜାଗରଣର କବି ।''

କବିଙ୍କର ''ନିଜ ଭିତରେ ଅନୁଭବ'' କରିବା 'ବିବାହ' ପଦ ପରି ସମାନ ଅର୍ଥ ପ୍ରକାଶ କରେ । (absorb, marry)

ଆଉ, ଜର୍ମାନର ବୁବର୍ (Buber) ଶିକ୍ଷାଦାନକୁ ''ତାତ୍ତ୍ୱିକ ସଂଭୋଗ'' (Pedagogical intercourse) ବୋଲି କହନ୍ତି ।

ଏ ମହାନ ବ୍ୟକ୍ତିମାନେ ନିଜ ନିଜ ଦୃଷ୍ଟିକୋଣକୁ ଭିନ୍ନ ଭିନ୍ନ ଢାଞ୍ଚାରେ କେବଳ ପ୍ରକାଶ କରିଛନ୍ତି । କିନ୍ତୁ ମୋ ନିକଟରେ ସେ ସବୁ ଭାବଧାରାର ସାରମର୍ମ ସେଇ ଗୋଟିଏ । ମୁଁ ବିବାହ ମାଧ୍ୟମରେ ହିଁ ଶିକ୍ଷା ଦିଏ ।

ମୋର କହିବା ପାଇଁ ଏତେ ବିଷୟ ରହିଛି ଯେ, କହିବା ବନ୍ଦ କରିବାକୁ ମୁଁ ଚେଷ୍ଟା

କରୁଛି । ଏହା ସବୁ ଏଇ ଦିନଲିପିର ଶେଷ ଭାଗ । ଏସବୁ ଯେମିତି ମୋ ମୁଣ୍ଡ ଭିତରୁ ସୀମା ପାରି ହୋଇ ଉଛୁଳି ପଡୁଛି ।

ଯେଉଁ ଉଦ୍ଦେଶ୍ୟ ନେଇ ଏ ସବୁ ଲେଖୁଥିଲି, ତାହା ମୋର ସଫଳ ହୋଇ ସାରିଛି । ଶିକ୍ଷାଦାନକୁ ବୃତ୍ତି ରୂପରେ ନେଇ ମୁଁ ଏକୁଟିଆ ହୋଇ ଯାଇଥିଲି । ମୁଁ ଉତ୍କର୍ଷତା ସହିତ ନିବିଡ଼ ଭଲ ବୁଝାମଣା ଆଶା କରୁଥିଲି । ତା' ମୁଁ ପାଇଛି । ବୃତ୍ତିରେ ମୁଁ ଏବେ ଆଉ ଏକାକିନୀ ନୁହେଁ ।

ଏଇ ଲେଖା ବନ୍ଦ କରିବା ପୂର୍ବରୁ ଗଲା କେତୋଟି ସପ୍ତାହ ଭିତରେମୋ ବୃତ୍ତିଗତ ଜୀବନର ଯେଉଁ ସବୁ ଗୁରୁତ୍ୱପୂର୍ଣ ରଚନାତ୍ମକ ପ୍ରଣାଳୀ ପରଖ କରିଛି, ସେ ସବୁର ବିବରଣୀ ଦେବାକୁ ଚେଷ୍ଟା କରିବି । ଘଟଣାଗୁଡ଼ିକ ସବୁବେଳେ ଏମିତି ସମୟରେ ଘଟିଥାଏ, ଯେତେବେଳେ ସେ ସବୁ ଲେଖି ରଖିବାକୁ ଆମର ସମୟ ନ ଥାଏ । ତେଣୁ ତାହାର ଏକରେଖା ଚିତ୍ର ଦେବାକୁ ଚେଷ୍ଟା କରିବି । ମୋ ମାନସ ପଟରେ ସେ ସବୁ ଭାବଧାରା ସଞ୍ଚିତ ହୋଇ ପ୍ରକାଶ ପାଇବା ପାଇଁ ଅପେକ୍ଷା କରିଛି । ଭିତରୁ ଠେଲି ହୋଇ ଆସୁଛି । ସେଇଥି ପାଇଁ ସେଇ ଭାବନାଗୁଡ଼ିକ ତା' ଅନୁସାରେ ସଜେଇ ହେବ । ସେ ଭିତରେ ଆବେଗର ଗୁରୁତ୍ୱ ରହିଛି, ତା'କୁ ନେଇ ସାଜସଜ୍ଜା ।

ଜଗତର ବହୁତ ଘଟଣା ପ୍ରଭାବ ପକାଏ । କିନ୍ତୁ ସେ ସବୁ ଭିତରେ ଶ୍ରୀଯୁକ୍ତ ଟ୍ରେମେଇନ୍‌ଙ୍କ କଥା ମୋ ପକ୍ଷରେ ସବୁଠାରୁ ଅଧିକ ଶକ୍ତିଶାଳୀ । ଗତ ସପ୍ତାହରେ ସେ ମୋ ଶିଶୁ ଶ୍ରେଣୀକୁ ଆସିଥିଲେ । ଧୀର ସ୍ୱରରେ ସେ ମୋତେ କହିଲେ, ''ମୁଁ ଚାହେଁ, ଆପଣ କହନ୍ତେ ଆଉ ମୁଁ ଶୁଣନ୍ତି ।'' ସବୁ କିଛି କୋଳାହଳ ଭିତରେ ମୁଁ ଏତିକି ଶୁଣିଛି । ଗୁରୁବାର ସଂଜର ସଙ୍ଗୀତ ଭିତରେ ମୁଁ ଏହା ଶୁଣିଛି । ସେ ଗୁରୁବାର ଉପରବେଳା ଆସିଥିଲେ । ଆଉ ସାଙ୍ଗରେ ଆଣିଥିଲେ ବିଶ୍ୱବିଦ୍ୟାଳୟର ସମ୍ମାନାସ୍ପଦ ପ୍ରଫେସର........., ଏବଂ ସେଇ ସ୍ତରର ମାନନୀୟ ଡଃ.......... । ମୋତେ ସାକ୍ଷାତ କରିବା ପାଇଁ ସେମାନଙ୍କୁ ଆଣିଥିଲେ । କିନ୍ତୁ ସେ ସବୁ ଭିତରେ ଶ୍ରୀଯୁକ୍ତ ଟ୍ରେମେଇନ୍‌ଙ୍କ ସେଇ ଭଦ୍ର ବାକ୍ୟଟି କେବଳ ମୋର ଗଭୀର ଚିନ୍ତା ଜଗତରେ ଦୃଢ଼ ହୋଇ ରହିଥିଲା । ଚେତନାରେ ମୋର ତାହା ଏକ ଶକ୍ତିଶାଳୀ ଆଲୋଡ଼ନ ।

ଆଗନ୍ତୁକମାନଙ୍କ ପରିଚୟ ସେ ମୋତେ ଦେଇ ନଥିଲେ । ସେମାନେ ମୋ ମାଓରି ପାଠ୍ୟ ପୁସ୍ତକ ଦେଖିବାକୁ ଆସିଥିଲେ । ମୋ ସହିତ ବେଶ୍ କଥାଭାଷା ହେଲା । ଶ୍ରୀଯୁକ୍ତ ଟ୍ରେମେଇନ୍ ମଧ୍ୟ ଏଥିରେ ଭାଗ ନେଇଥିଲେ । ମୁଁ ମୋ ଶିଶୁ ଶ୍ରେଣୀର ଟେବୁଲ୍

ପାଖରୁ ଭାଷଣ ଦେଇଥିଲି । ନିକଟରେ କରିଥିବା ପରୀକ୍ଷା ନିରୀକ୍ଷାର ଫଳାଫଳ ସହିତ ପ୍ରମାଣିତ ସିଦ୍ଧାନ୍ତଗୁଡ଼ିକୁ ସେମାନଙ୍କ ହୃଦ୍‌ବୋଧ ପାଇଁ ମୁଁ ଯୁକ୍ତିସମ୍ମତ ଭାବେ· ଉପସ୍ଥାପିତ କରିଥିଲି- ଦୃଢ଼ ଧାରଣା ଦେବାକୁ ମୁଁ ନିଷ୍ଠାପର ଭାବେ ମୋର ସବୁ ଶକ୍ତି ପ୍ରୟୋଗ କରିଥିଲି । ମୋର ଅସଲି ପଦ-ତାଲିକା (Key vocabulary), ତା'ର ପ୍ରୟୋଗ ଓ ସଫଳତା ବୁଝାଇଥିଲି । ସେ ସବୁର ବିବରଣୀ ମୁଁ ଏଠାରେ ଆଉ ଲେଖୁନି । ତାହାସବୁ ମାଓରି ପିଲାଙ୍କ ପାଠ୍ୟ ଯୋଜନା (Maori Infant Reading Scheme) ପୁସ୍ତକରେ ବିସ୍ତୃତ ଭାବେ ଲେଖା ଯାଇଛି । ସେ ପୁସ୍ତକ ଏବେ ପ୍ରକାଶକଙ୍କ ଅପେକ୍ଷାରେ ।

ତା'ପର ଦିନ ସକାଳେ ଆମ ପୁରୁଣା କୋଠାର ବୈଠକ ଘରେ ଶ୍ରୀଯୁକ୍ତ ଟ୍ରେମେଇନ୍‌ଙ୍କ ସହ ଚାଁ ପିଉଥିଲି । ମୁଁ ଅଭିଯୋଗ କଲି, ''ଆପଣ ଏପରି ଭାବେ ଏଠାକୁ ଆସି ପହଞ୍ଚି ଯାଉଛନ୍ତି, ମୋତେ କିଛି କହିବାକୁ ବାଧ୍ୟ କରି ଦେଉଛନ୍ତି । ମୁଁ ମଧ୍ୟ ଘଣ୍ଟାଏ ସମୟ ସମସ୍ତଙ୍କୁ ଭାଷଣ ଶୁଣାଉଛି । ପରେ କିନ୍ତୁ ସେଥିପାଇଁ ମତେ ନିଜକୁ ଲାଜ ମାଡୁଛି ।''

ଉପଭୋଗ କଲାପରି ସେ ମୁରୁକି ହସା ଦେଲେ । ''ମୁଁ ସବୁବେଳେ ଦେଖୁଛି, ଯେତେବେଳେ ନୀରବ ରହେ, ମୁଁ ସେତେବେଳେ କିଛି ଶିଖେ ।'' ସେ ଆମକୁ କହିଲେ ।

''ଆପଣମାନେ ବିଶିଷ୍ଟ ଲୋକ ତ ନୁହଁନ୍ତି ନା ?'' ମୁଁ ସେ ଅତିଥିମାନଙ୍କୁ ପଚାରିଲି ।

''ଏଁ ନା, ନାହିଁ ।''

''ହଉ, ତେବେ ମୁଁ ଜାଣିଥିଲେ, ସେ ଅନୁସାରେ ଚା' ଦେଇଥାନ୍ତି । ଯାହାହେଉ, ଶ୍ରୀଯୁକ୍ତ ଟ୍ରେମେଇନ୍, ବିଶିଷ୍ଟ ଲୋକଙ୍କୁ ଆମର ଏଠାକୁ ଆକସ୍ମିକ ଭାବେ ଆଣିବାରେ ଆପଣଙ୍କ କଳା-କୌଶଳକୁ ମୁଁ ଭଲ ପାଏ । କିନ୍ତୁ ସେମାନେ ଆସୁଛନ୍ତି ବୋଲି ଆଗରୁ ଜାଣିଥିଲେ, ମୁଁ ଏଠାରେ ନ ଥାନ୍ତି ।''

ସେ ଉଚ୍ଚ ସ୍ୱରରେ ହସି ଉଠିଲେ । କାହିଁକି ଯେ ସେ ଏପରି ହସିଲେ ତା'ର· କାରଣ ମୁଁ ବୁଝି ପାରିଲିନି, ଆଶ୍ଚର୍ଯ୍ୟ ହେଲି । ହୁଏ ତ ମନ ଭିତରେ କୌଣସି କଥାର ଭିନ୍ନ ଅର୍ଥ କରି ହୋଇ ଥାଇପାରେ । କିନ୍ତୁ ସେଠାରୁ ବିଦାୟ ନେଇ ଯେତେବେଳେ ସେ ମୋ ସହିତ ହାତ ମିଳାଇଲେ ସେତେବେଳେ ମୁଁ କହିଲି, ''ମାଓରି ଶିଶୁ ଅପରାଧ ବୃତ୍ତି ବିରୁଦ୍ଧରେ ବି ମୁଁ ମୋର ଲଢ଼େଇ ଚଳାଇଛି ।''

"ଆପଣ ଯାହା ସବୁ କାମ କରୁଛନ୍ତି, ସେଥିପାଇଁ ଆପଣଙ୍କୁ ଧନ୍ୟବାଦ।" ସେ ଉତ୍ତର ଦେଲେ। "ଆପଣଙ୍କ କଥା ଶୁଣି ମୁଁ ବିଶେଷ ଆନନ୍ଦିତ।"

ସେଇ ଦିନ ମୁଁ ତାଙ୍କୁ ମୋର ମାଓରି ପଠନ ଯୋଜନା ପୁସ୍ତିକାଟିଏ ଦେଲି। ବାହାରେ ସେଇ ଥଣ୍ଡାରେ ସେ ପଢ଼ିଲେ। ସେ ତାଙ୍କର ଲମ୍ବା କୋଟ୍ ଯୋଗୁଁ ଆହୁରି ଉଚ୍ଚା ଓ ବଡ଼ ଦେଖା ଯାଉଥିଲେ। ପୃଷ୍ଠା ପରେ ପୃଷ୍ଠା ଓଲଟାଇ ସେ ପଢ଼ି ଚାଲିଥିଲେ ଏବଂ ମୋ'ପାଁସାଙ୍କର ମଧୁର ଭାବଧାରା ପଢ଼ିଲାବେଳେ ଅଟକି ରହି ଚିନ୍ତା କରୁଥିଲେ। ମୋ ପୁସ୍ତକର ପ୍ରଥମ ପୃଷ୍ଠାରେ ମୁଁ ଇହାକା (Ihaka)ର ଚିତ୍ରଟିଏ ଦେଇ ପଠନ ଯୋଜନାକୁ ଆରମ୍ଭ କରିଥିଲି। ସେଇଠି ଆଙ୍ଗୁଠି ରଖି ସେ ବେଶ୍ କୋମଳ ସ୍ୱରରେ କହିଲେ, "ଏଇଟାକୁ ଦେଖନ୍ତୁ।" ଆଃ, ସରଳ ମଧୁର ଭାବରେ ମୋ ଯୋଜନାର ଉପଲବ୍ଧି ଦେଖି ମୋର ଶ୍ରମ ସାର୍ଥକ ବୋଲି ମନେ କଲି। ସକାଳର ସେଇ ଶୀତଳ ପରିବେଶ। ମୋ ପରିଶ୍ରମର ଏଇ ପୁରସ୍କାର। ଆତ୍ମ-ସନ୍ତୋଷରେ ଉଲ୍ଲସିତ ହୋଇ ଉଠିଲି। ଭାଷାରେ ବର୍ଣ୍ଣନା କରି ହେବନି ସେ ପୁରସ୍କାରର ସନ୍ତୋଷକୁ।



# ସ୍ମୃତିଚାରଣ

-ଗୋଟିଏ କାହାଣୀ

କଅଣ ହେଲା, କ'ଣ ହେଲା କିରେ ? କୁନି ପୁଅ ?

ମୁଁ ତା' ସମାନେ ଆଣ୍ଠେଇ ପଡ଼ିଲି । ତା' ଥୋଡ଼ିକୁ ଟେକି ଧରିଲି । ତା'ର ବଡ଼ ବଡ଼ ମାଟିଆ ଆଖି ଦୁଇଟାରୁ ଥପ୍ ଥପ୍ ହୋଇ ଲୁହ ବୋହି ପଡ଼ିଲା । ମୁହଁ ଉପର ଦେଇ ତଳକୁ ନିଗିଡ଼ି ଗଲା ।

*କାହିଁକି ନା, କିଏ ସବୁ ବିନା କାରଣରେ ମୋ ଘର (ଗଡ଼) ଭାଙ୍ଗି ଦେଲା । କିଏ ସବୁ... । ଅଶୁଦ୍ଧ ଇଂରାଜୀ ଉକ୍ତିଟି ହେଉଛି : That's why somebodies they broked my castle for notheen, Somebodies.*

ମୋର ସେଇ ରୁଆ-ଖଙ୍ଗା ଶିଶୁ ଶ୍ରେଣୀର ଛୋଟ ଚଉକି ଉପରେ ବସି ପଡ଼ିଲି । ତା'କୁ ମୋ ଆଣ୍ଠୁ ଉପରକୁ ଆଉଜେଇ ଆଣିଲି । ତା' କଳାକଳା ବାଳରେ ଭରି ରହିଥିବା ମୁଣ୍ଡ ଉପରେ ମୋ ଥୋଡ଼ି ରଖି ଆଉଁସି ଦେଲି;

ହେଇ...ହେଇ, ସେଇଠିକୁ... ଦେଖେ ତ ମୋର ଗେଲ୍ହା ପୁଅ ।

ହେଲେ, ସେଇଟା ଏବେ ଅତୀତର ଗୋଟେ ସ୍ମୃତି । ବର୍ଷେ ପୁରୁଣା ।

''ଶ୍ରୀଯୁକ୍ତ ହେଣ୍ଡରସନ୍ ଘରେ ଅଛନ୍ତି କି ?'' ଫୋନ୍‌ରେ ଜଣେ ପୁରୁଷ ପଚାରିଲେ । ଏଇଟା ବର୍ଷେ ପରର ଘଟଣା । ମୁଁ ଇସ୍ତଫା ଦେଇ ସାରିଥିଲି ।

''ନା', ଆଜ୍ଞା, ସେ ସ୍କୁଲରେ ଅଛନ୍ତି ।'' ମୁଁ ଉତ୍ତର ଦେଲି । ''ସେ ନଅଟା ବେଳକୁ ଫେରିବେ । କିଛି କହିବାର ଥିଲେ ଜଣାନ୍ତୁ । ମୁଁ ତାଙ୍କ ପତ୍ନୀ ଶ୍ରୀମତୀ ହେଣ୍ଡରସନ୍ କହୁଛି ।''

''ଓଃ, ମୁଁ ଏବେ ନୂଆ ଶିଶୁ ଶ୍ରେଣୀର ମୋର ଚଟାଣ କଥା ଭାବୁଥିଲି; ଶ୍ରୀମତୀ ହେଣ୍ଡରସନ୍ ।''

''ଓଃ । ଆପଣ ତେବେ କ'ଣ ନୂଆ ଶିଶୁ ଶ୍ରେଣୀ କୋଠରୀଗୁଡ଼ିକର ଚଟାଣ ତିଆରି କରୁଥିବା ସେଇ ଲୋକ ?''

''ହଁ । ମୋ ନାଆଁ ରାଣ୍ଡାଲ୍ ।''

''ଆଚ୍ଛା, ସେଇଟା କିନ୍ତୁ ଏବେ ବି ଶୁଖି ନାହିଁ । ମିଃ. ରାଣ୍ଡାଲ୍, ଏଇଟା ଅବଶ୍ୟ ମୁଁ ଯେତିକି ଶୁଣିଛି । ପିଲାଏ ଆଜି କୋଠରୀ ଭିତରକୁ ଯାଇ ନାହାନ୍ତି । ପ୍ରଧାନ ଶିକ୍ଷକ

ସେମାନଙ୍କୁ ଭିତରକୁ ଛାଡ଼ି ପାରିଲେ ନାହିଁ । ଚଟାଣଟା ତ ଏବେ ମଧ୍ୟ ଅଠାଳିଆ ରହିଛି । ଆପଣ ଯେଉଁ ପରସ୍ତେ ବୋଳ ଦେଇଛନ୍ତି, ତା' ଏବେ ବି ଶୁଖିନି ।''

''ପିଲାଏ ଭିତରକୁ ଯାଇ ପାରିଲେନି ? ଏବେ ବି ଶୁଖିନି !''

''ପ୍ରଧାନ ଶିକ୍ଷକ ଆଜି ସକାଳ ଛଅଟା ବେଳୁ ଦୁଇଟା ନୂଆ ଷ୍ଟୋଭ୍ ଜାଳି ରଖିଛନ୍ତି । ପବନ ଗରମ ରହିବ ବୋଲି । କିନ୍ତୁ ସେଇଟା ଏବେ ବି ଅଠାଳିଆ ରହିଛି । ଅବଶ୍ୟ ଶିକ୍ଷକମାନେ ମୋଜା ପିନ୍ଧି ଭିତରକୁ ଯାଇଥିଲେ । ମୋଜା ପିନ୍ଧା ଗୋଡ଼ କ'ଣ ଚଟାଣଟିର କ୍ଷତି କରିବ ?''

''ନା, ନା, ମୋଜା ପିନ୍ଧି ଚାଲିଲେ ତା'ର କ୍ଷତି ହେବନି । ଆପଣ ତ ଦେଖୁଛନ୍ତି, ଏବେ ପାଗ ଯେପରି ହୋଇଛି, କିଛି ହେଲେ ତ ଶୁଖୁ ନାହିଁ । ସେ ଲୋକେ ତ ମୋତେ କହୁଥିଲେ, କେତେ ଦିନ ତଳେ ଦିଆଯାଇଥିବା ରଙ୍ଗ ଏବେ ମଧ୍ୟ ଶୁଖିନି । କିଛି ହେଲେ ତ ଶୁଖୁନି । ଅବଶ୍ୟ ପିଲାଏ ଭିତରକୁ ଯାଇ ପାରୁ ନ ଥିବା ଅତି ଦୁଃଖର ବିଷୟ ।''

''ସତ କହିବାକୁ ଗଲେ, ଆପଣ ଯେତେ ଦୂର ଭାବୁଛନ୍ତି, ତା' ଠାରୁ ଅବସ୍ଥା ଅଧିକ ଖରାପ ହୋଇଚି । ଆସନ୍ତା ଗୁରୁବାର ଓ ଶୁକ୍ରବାର ଦିନ ନିରୀକ୍ଷକମାନେ ସ୍କୁଲ ପରିଦର୍ଶନ କରିବାକୁ ଆସୁଛନ୍ତି । ଆଉ ସେଇଥିପାଇଁ ଯୁବ ଶିକ୍ଷକମାନେ ନୂଆ କୋଠରୀଗୁଡ଼ିକୁ ସଜେଇବା ଅପେକ୍ଷାରେ ବ୍ୟତିବ୍ୟସ୍ତ ହୋଇ ପଡ଼ିଛନ୍ତି । କୋଠାଟି ଏପରି ବିଶେଷ ଭାବେ ବଦଳି ଯାଇଛି ଯେ ନୂଆ ବଖରାଗୁଡ଼ିକରେ ଉପକରଣ ଆଦି ରଖା ଥିଆକରି, ସେଠାରେ କାମ ଆରମ୍ଭ କରିବା ଆଗରୁ ପୂରାପୂରି ନୂଆ ଢାଞ୍ଚାରେ ସାଜସଜା କରିବାକୁ ପଡ଼ିବ । ଏଣେ ପୁଣି ସେମାନେ ପିଲାଙ୍କୁ କୋଠରୀ ଭିତରକୁ ଛାଡ଼ି ପାରୁନାହାଁନ୍ତି ।''

''ଏସବୁ କେବଳ ସେଇ ଗୋଟିଏ କାରଣରୁ, ଶ୍ରୀମତୀ ହେଣ୍ଡରସନ୍ । କିଛି ହେଲେ ତ ଶୁଖୁନି । ଏଇ ପାଗ ଏପରି ହୋଇଛି ଯେ କିଛି ଶୁଖୁନି ।''

''ମୁଁ ଅବଶ୍ୟ ବେଶ୍ ଭଲ ଭାବେ ଜାଣେ ଯେ କିଛି ହେଲେ ଶୁଖୁନି । ମୋ ଲୁଗାପଟାଗୁଡ଼ିକୁ ତ ମୁଁ ଏଇ କିଛିଦିନ ହେଲା ସେମିତି ଝୁଲେଇ ରଖିଛି । ଶେଷରେ ଏବେ ଭାବୁଛି, ସେଗୁଡ଼ିକୁ ଘର ଭିତରକୁ ଆଣି ଶୁଖେଇବାକୁ ହେବ ।''

''ସବୁବେଳେ ଅସୁବିଧାଗୁଡ଼ିକ ଗୋଟେ ସମୟରେ ଆସି ଯାଆନ୍ତି, ଏବେ ଯେମିତି ହେଇଚି ।''

''ଅବଶ୍ୟ, ମିଃ ରାଣ୍ଡାଲ୍ । ମୁଁ ଅବଶ୍ୟ ଜାଣେନି, ପ୍ରଧାନ ଶିକ୍ଷକ ଆଉ ସବୁ ଶିକ୍ଷକମାନଙ୍କ ସହିତ କଥା ହୋଇ କି ବ୍ୟବସ୍ଥା କରିବାକୁ ଯାଉଛନ୍ତି । କିନ୍ତୁ ଯେତେଦୂର

ସମ୍ଭବ, ଆସନ୍ତା କାଲି ସକାଳେ ଘର ଭିତରକୁ ଯିବାକୁ ସେମାନେ ସବୁ ଠିକ୍ ଠାକ୍ କରିଛନ୍ତି । ଆଉ, ଟିକି ଟିକି ପିଲାମାନେ ଯେପରି ଆସନ ପକେଇ ବସି ପାରିବେ ।''

''ପିଲାଏ ମୋଜା ପିନ୍ଧି ଭିତରକୁ ଯାଇପାରିବେ ।''

''ମୋଜା ? ସେଇଟା ତ ସମସ୍ୟା । ସେମାନଙ୍କ ପାଖରେ ଅଧ-ଡଜନରୁ ଅଧିକ୍ ମୋଜା ଥିବ କି ନାହିଁ, ମୋର ସନ୍ଦେହ । ଖାଲି ପାଦ କ'ଣ କ୍ଷତି କରିବ ?''

''ନାହିଁ, ଖାଲି ପାଦ କ୍ଷତି କରିବ ନାହିଁ ।''

''ଆଜି ଭିତରକୁ ସେମାନେ କିଛି ଉପକରଣ ନେଇଛନ୍ତି । କିଛି ଚଉକି ଆଉ ଟେବୁଲ୍ ।''

''ଏଁ ? ଆପଣ ଜାଣନ୍ତି, ପିଲାଏ କିପରି ତାଙ୍କର ଚୌକୀକୁ ଘୋଷଡ଼ା ଘୋଷଡ଼ି କରନ୍ତି ?''

''ପିଲାଏ ଯେତେ ଦୂର ସମ୍ଭବ ତାଙ୍କର ମସିଣା ଆସନରେ ବସିବେ ।''

''ହଁ, ହଁ, ସେମାନେ ମସିଣାରେ ବସି ପାରନ୍ତି ।'' ସକାଳେ, ବିଶେଷ ଭାବରେ ମୁଁ, ନାଇଲନ୍ ମୋଜା ପିନ୍ଧି ନ ଥାଏ । ସତ କହିବାକୁ ଗଲେ, ଏମିତି କେତୋଟି ଅଭ୍ୟାସ ମୁଁ ଛାଡ଼ି ଦେଇଛି । ଅନ୍ୟ ମହିଳାମାନେ ଚପଲ ପିନ୍ଧି ଇସ୍ତ୍ରୀ ଆଦି କାମ କରିବାକୁ ଗଲାବେଳେ ମୁଁ ମୋର ନାଇଲନ୍ ମୋଜା ପିନ୍ଧି ସ୍କୁଲକୁ ଯାଉଥିଲି । ମାତ୍ର ଆଜି ସକାଳେ ସେପରି କଲି । ମୁହଁରେ ପାଉଡ଼ର ଲଗେଇ ରିବନ୍‌ରେ ବାଳ ବାନ୍ଧି ଦେଲି । ବର୍ଷେ ତଳେ ଯେପରି ପ୍ରଧାନ ଶିକ୍ଷକ ଘରୁ ସ୍କୁଲ ଯିବାର ଘଣ୍ଟାଏ ପରେ ତାଙ୍କୁ



ସାହାଯ୍ୟ କରିବାକୁ ମୁଁ ଯାଉଥିଲି, ଆଜି ଠିକ୍ ସେପରି ବାହାରିଲି । ନୂଆ ଶିଶୁ ଶ୍ରେଣୀର କୋଠରୀଗୁଡ଼ିକରେ ମୋର ଟିକି ଟିକି ପିଲାଙ୍କୁ ଦେଖିବାକୁ ମୁଁ ଚାହୁଁଥିଲି, ମୋଜା ପିନ୍ଧି ଥାଆନ୍ତୁ କି ବିନା ମୋଜାରେ ଥାଆନ୍ତୁ ଏବଂ ମୋ ସହିତ ହେଉ କିମ୍ବା ମୁଁ ନ ଥିବା ଭିତରେ । ସେମାନଙ୍କୁ ଦେଖିବାକୁ ପହଞ୍ଚିଲା ବେଳକୁ ସେମାନେ ସବୁ ପ୍ରାର୍ଥନା ସଭାରେ ଥିଲେ । ମୁଁ ମଧ୍ୟ ଦୁଆର ମୁହଁରେ ଜୋତା ରଖି ଦେଲି ଏବଂ ମୋଜା ପିନ୍ଧା ଗୋଡ଼ରେ ଭିତରକୁ ଗଲି । ଚଟାଣଟା ଚମତ୍କାର ଦିଶୁଥିଲା ।

ଆପଣ ଏ ନୂଆ ବଖରାଗୁଡ଼ିକ ଦେଖିବା ଉଚିତ । ମୋର ମନ ହେଲା, ସତେ ଯେପରି ବର୍ଷେ ତଳେ ମୋ ଟିକି ଟିକି ପିଲାମାନେ ଆଙ୍କୁଥିବା ଚିତ୍ର ଭିତରୁ ଏ ସବୁ ଯେମିତି ସିଧା ଖସି ଆସିଛି । ଏତିକି ମାତ୍ର ପ୍ରଭେଦ ଥିଲା ଯେ: ଏ ଘରଗୁଡ଼ିକର ଗୋଡ଼ ନ ଥିଲା ! ଓ୍ୱିକୀ ଆଉ ମୋହି ସବୁବେଳେ ତାଙ୍କ ଘରର ଗୋଡ଼ ଅଙ୍କନ କରୁଥିଲେ । ସବୁଠି ରଙ୍ଗ ! ବାହାର ପାଖରେ ମଧ୍ୟ । ଇଆଡ଼େ ଗୋଟିଏ ଭାଗ ପୂରା ହଳଦିଆ, ତା' ଉପରକୁ ନୀଳ, ଲାଲ ରଙ୍ଗର ଦୁଆର କବାଟ.... ଆପଣ କ'ଣ ବିଶ୍ୱାସ କରିପାରିବେ ? ସତେ, କିପରି ଟିକି ପିଲାଙ୍କର ସେଇ ରଙ୍ଗୀନ୍ କଳ୍ପନା ଓ ଧାରଣା, ଜଣେ ସ୍କୁଲ ଘର ନିର୍ମାତା ସ୍ଥପତିର ରୁକ୍ଷ ବାସ୍ତବ ମସ୍ତିଷ୍କରୁ ଏପରି ରୂପ ଲାଭ କରିଛି । ଘର ଭିତରେ ପିଲାଏ ରଖିବା ପାଇଁ ଥାକ, ଆଉ ସବୁ ରଙ୍ଗୀନ୍ । କେତେ ରଙ୍ଗ !! କାନ୍ଥଗୁଡ଼ିକ ମଧ୍ୟ ସୁନ୍ଦର ଭାବେ ରଙ୍ଗୀନ୍- ସତେ ଯେମିତି ପାଞ୍ଚ ବରଷିଆ ମାଓରି ପିଲେ ରଙ୍ଗ ଦେଇଛନ୍ତି ! କାନ୍ଥ କଳାପଟାର ଉପରେ ଗୋଟିଏ ପାଖରେ କାନ୍ଥ-କାଗଜ (Wall-paper) ମଡ଼ାଇ ସେଥିରେ ନାନା-ବାୟା ଗୀତ ସବୁ ଲେଖା



ହେଇଚି, ଆଉ ଆର ପାଖରେ ଗାଈଆଳ ଟୋକା, ଲୋହିତ ଭାରତୀୟ ଆଦି ଚିତ୍ର । ଭାବି ଦେଖନ୍ତୁ,- ଶିଶୁ ଶ୍ରେଣୀ କୋଠରୀର କାନ୍ଥରେ ଏ କାଗଜ ଏବଂ ଗାଈ-ଜଗିବା ପିଲା ଓ ଲୋହିତ ଭାରତୀୟ ଚିତ୍ର ! ଛାତରେ ଫିକା ହଳଦିଆ ରଙ୍ଗର ଆଲୁଅ, ମଝିରେ ମଝିରେ ଗୋଲାପୀ ରଙ୍ଗର ଆଭା । ଉତ୍ତର ଦିଗର କାନ୍ଥ ପୂରା ଗୋଟେ କାଚ ବାଡ଼... ସେ ପାଖରେ ଥିବା ୱାଲ୍‌ନଟ୍ ଗଛ ବେଶ୍ ଦେଖାଯାଉଛି.... ସ୍ଥପତି ତ ଗଛଟିକୁ ନ କାଟିବା ପାଇଁ ଆରମ୍ଭରୁ ଠିକ୍ କରି ନେଇଥିଲେ । ନିଶ୍ଚୟ ସେ ନିର୍ମାତା ସ୍ଥପତି ଛୁଆଙ୍କ ଛବି ପୁସ୍ତକରୁ ସବୁତକ ଭାବନା ଉଠେଇ ନେଇଛନ୍ତି ! ନ ହେଲେ, ଛୁଆଙ୍କ ମନର ଭାବନାଗୁଡ଼ିକର ସହାୟତା ନେଇ ରୂପ ଦେଇଛନ୍ତି ! ସେଇ ନିର୍ମାତାଙ୍କ ପ୍ରତି ମୋ ମନ ଭିତରେ ସମ୍ମାନ ଉଛୁଳି ଉଠିଲା !!

''ପିଲାଏ ଏଇଟାକୁ ଭଲ ପାଆନ୍ତି । ଆଉ ମୁଁ ଭଲ ପାଏ ।'' ନିକଟରେ ସେହି ସ୍ଥପତି ପ୍ରଧାନ ଶିକ୍ଷକଙ୍କୁ କହୁଥିଲେ । ଆଉ ଅଧିକା ଭଲା କ'ଣ ଦରକାର ?

ମାତ୍ର, ସେ ଚଟାଣ ? ତା' ତଳେ କ'ଣ ଦର୍ପଣ ରହିଛି ? ସବୁ ସେଥିରେ ପ୍ରତିଫଳିତ ହେଉଛି, ଉପର ଭାଗ ମଧ୍ୟ । ଲକ୍ଷେ ରଙ୍ଗର ସମାବେଶ, ଆଉ ସମନ୍ୱୟ । କାଲି ରାତିରେ ସେ ଯେଉଁ ଭଦ୍ର ଲୋକ ଫୋନ୍‌ରେ କଥା ହେଉଥିଲେ.... କି ଚମତ୍କାର କଳାକାର ସତେ । ଏଇ ଚଟାଣଟି ତ ତାଙ୍କର ପ୍ରିୟତମ କଳାକୃତି !!

ପ୍ରାର୍ଥନା ସଭାରୁ ମୋର କୁନି କୁନି ପିଲାମାନଙ୍କ ଫେରିବା ବାଟକୁ ମୁଁ ଆତୁର ହୋଇ ଅପେକ୍ଷା କରିଥିଲି । ବହୁତ, ବହୁତ ଦିନ ହେଲା ମୁଁ ସେମାନଙ୍କୁ ଦେଖିନି । ସେମାନଙ୍କୁ ଅପେକ୍ଷା କରୁଥିବା ଭିତରେ ମୁଁ ମନ୍ତ୍ର-ମୁଗ୍ଧ ଭାବେ ଚଟାଣରେ ଚାଲିବୁଲି ପାଖ କୋଠରୀ ଭିତରକୁ ପଶିଗଲି । କାଚ କାନ୍ଥ ଦେଇ ଆର ପାଖକୁ ଚାହିଁଲି । ପୂରା କାନ୍ଥଟା ତ ଗୋଟେ ଝରକା । ଆର ପାଖରେ ସେଇଠି ପିଲାଙ୍କ କର୍ମଶାଳା ଥିଲା । ସେଇଠି ଗଦାଏ ମାଟି ଯେମିତି ଏବେ ବିଛେଇ ହୋଇ ପଡ଼ିଛି, ଚାରି ପଟୁ ଘାସ ମାଡ଼ି ଆସୁଛି ।

ମନ ଭିତରେ ପୁଣି ଝଲସି ଉଠିଲା, ମୋର ସେଇ ଦଦରା କର୍ମଶାଳା । ଖୁଅ କେତୋଟି ଉପରେ ଗଢ଼ା ହୋଇଥିବା ଛାତଟି ଭାଙ୍ଗିରୁଜି ଫାଟି ପଡ଼େ, ଯେତେବେଳେ ଜମି ରହିଥିବା ବରଫ ବସନ୍ତ ଋତୁରେ ତରଳି ଯାଉଥାଏ । ଖୁଅ ଉପରୁ ଶାମୀ ଗେଣ୍ଡା ଆମରି ଉପରକୁ ଖସି ପଡୁଥିଲେ । ଖୋଲା ଝରକା ଦେଇ ଚଟାଣ ଉପରେ ସୂର୍ଯ୍ୟ କିରଣ ବିଛେଇ ପଡୁଥିଲା- ପିଣ୍ଡା ବାଡ଼ର ଜାଲି ଆରପଟେ ଉଡୁଥିବା ଧୂଳି ଭିତର

ଦେଇ । ଆଉ ନୂଆ ପି଼ଢ଼ିର ଟିକି ଟିକି ଉତ୍ତରାଧିକାରୀମାନେ ଘୁରି ବୁଲୁଥିଲେ ସେଇ ଝାଟି ମାଟିର ଶ୍ରେଣୀ ବଖରା ଭିତରେ.... ଅହରହ ଚାଲି ବୁଲୁଥିଲେ, ଅହରହ କହି ଚାଲିଥିଲେ- ଏ କୋଣରୁ ସେ କୋଣ ଯାଏଁ, ଏ କାନ୍ଥରୁ ସେ କାନ୍ଥ ଯାଏଁ- ଚଟାଣ ଉପରେ ଯେମିତି, ଟେବୁଲ ଉପରେ ସେମିତି । ପ୍ରାଣ-ପ୍ରାଚୁର୍ଯ୍ୟ ଭରା ଥିଲା ଟୁଆଁ-ଟୁଇଁଙ୍କର ସେ କର୍ମଶାଳା ଆଉ ଶ୍ରେଣୀ-କକ୍ଷ ।



ଶ୍ରେଣୀ ବଖରାର ପୂରା-କାନ୍ଥ ତଳୁଆ କଳାପଟା ଉପରେ ଦଶ ଦଶ ଜଣ ଏକାଠି ଆଙ୍କି ଚାଲୁଥିଲେ ତାଙ୍କ ମନର ଛବି- କେଉଁଠି ଆକାଶଛୁଆଁ ଉଚ୍ଚା ଦୁର୍ଗ.... ଆଉ କେତେ ରଙ୍ଗ... ରଙ୍ଗର ଅସୁମାରି ରୂପ... ମନର ଅସୁମାରି କଳନାର ରୂପ-ରଙ୍ଗ !! ମନ ଉଲାସରେ ନାଚି ଉଠୁଥିବା ମଣିଷର ଛବି... ମାଟି ତିଆରି କେତେ ଚଢ଼େଇ... ସେଇ ମାଟିଆ ମାଟିଆ ଆଙ୍ଗୁଠିରେ ଆବେଗରେ ରୂପ ପାଉଥିବା ବାଲି ତିଆରି କବରଖାନା... ପାଣି ନାଳ ଆଉ ନଈ ମୁହାଣ... କଳାପଟାରେ ଗର୍ଜି ଉଠି ବୋମା ବରଷୁଥିବା ଉଡ଼ାଜାହାଜ... ଆଉ ତା' ସହିତ କେତେକ 'ପଦ'ର ଅଶୁଦ୍ଧ କିନ୍ତୁ ମଉଜିଆ ଉଚ୍ଚାରଣର ରୂପ !! ମିଶି ରହିଥିଲା ଏ ସବୁ ସାଥିରେ କେତେ ଗୀତ, କଳିଗୋଳ, ଗାମ୍ଭୀର୍ଯ୍ୟ.... ଆଉ ହସ, କାରଣ ନ ଥାଇ ହସ, ତା' ପୁଣି ଡ଼ିଆଁ ରୋଗ ପରି ସବୁରି ମୁହଁରେ । ସେଇ ପରି କାନ୍ଦ.. ଅକାରଣ କାନ୍ଦ, ଡିଆଁ ରୋଗ ମାଡ଼ିଲା ପରି ସଭିଏଁ କାନ୍ଦି ଉଠୁଥିଲେ ।.... ମନେ ପଡ଼େ:

ୱାଇଓ୍ୱିନୀର ଛୋଟ ଭାଇ କାନ୍ଦି କାନ୍ଦି ମୋତେ କହୁଥିଲା, ''କାରଣ ନଥାଇ କିଏ ସବୁ ମୋର ଗଡ଼ (ଦୁର୍ଗ) ଭାଙ୍ଗି ଦେଲା... ।'' ଆଉ କେତେ ଜଣଙ୍କର ଛାତି ପୋଡ଼ି ଯାଉଥିଲେ ବି ମୁହଁରେ ହସ ଫୁଟୁଥିଲା- ଦୁଃଖରେ ଛାତି ଭିତର ଯେପରି ଆଘାତରେ ରକ୍ତାକ୍ତ ଥିଲା, ଅଥଚ ମୁହଁରେ ହସ- ସତେ ଯେମିତି ଛାତିରୁ ମୁଣ୍ଡଟା ଅଲଗା !! ଟାମୋଟିମାନଙ୍କର କୁକୁରଟି ସମସ୍ତଙ୍କ ପାଖରେ ଘୂରି ବୁଲୁଥିଲା । ବିଲେଇଟିଏ ବେଶ୍ ଖୁସିରେ ଆମ ଭିତରେ ବୁଲି ଯାଉଥିଲା । ଆଉ ସେ ଢିଂକର କୁକୁଡ଼ାଟା ମଝିରେ ମଝିରେ ପଇଁତରା ମାରି ଏଠି ସେଠି ଖୁମ୍ପି ବୁଲୁଥିଲା ।

ମାଓରି ଗାଆଁ (ପା') ସଂସ୍କୃତିର ଛବି ଭିତରେ ତାଙ୍କ ବିରାଟ ସଭାଘର ଗାଆଁ, ଭୂତ ଆଉ ବଡ଼ ବଡ଼ ପାଦ ଥିବା ଲୋକ ପରସ୍ପରକୁ ଚୁମ୍ବନ ଦେଉଥିବା ଅଙ୍କନ ସହିତ ଖାପ ଖୁଆଇ ପଦେ ଅଧେରେ କେତେ ଲେଖା । ସେଥିରେ ବିଅର୍ (ମଦ), କବରଖାନା, ବାର୍‌ହା ଇତ୍ୟାଦିର ଚିତ୍ର; ଆଉ ତା ସାଥିରେ ମନର ଭାବନାକୁ ନେଇ ଲେଖାଲେଖି ଏବଂ ହୋ-ହଲ୍ଲାଃ ମାଓରି ଓଠରୁ ଝଡ଼ି ପଡୁଥିବା ମନର କଥା, ଲେଖା ସହିତ ଉଚ୍ଚ ସ୍ୱରରେ କଥା ଭାଷା, ଯୁକ୍ତି ତର୍କ, ପଡ଼ାପଡ଼ି, ହସ-ଗୀତ ସହିତ ସେମିତି ଉଚ୍ଚ ସ୍ୱରର କାନ୍ଦ-ବୋବାଳି ! ତା' ଭିତରେ ଲାଗି ରହିଥାଏ ପରସ୍ପର ଭିତରେ କୁଶଳ-ସମ୍ଭାଷଣ ଆଉ କେତେ ମଧୁର ଆଳାପ-ଆଲୋଚନା !

ଆଉ ଆମର ସେଇ ଚଟାଣ ! ଆପଣ ଦେଖିବା ଦରକାର ସେ ଚଟାଣ ! ଦଶ ଦଶ ଜଣିଆ ପିଲାଙ୍କର ସେଇ ବଡ଼ ଲମ୍ବା କାନ୍ଥ କଳାପଟା ଚିତ୍ର-ପଟରେ ରଙ୍ଗଦେଲାବେଳେ ଝରି ପଡୁଥିବା କେତେ ରଙ୍ଗର ସମ୍ଭାର... ଗ୍ରାମ୍ୟ ପ୍ରକୃତି ଠାରୁ ଆହୁରି ଅଧିକ ସୁନ୍ଦର । ସତେ ଯେମିତି ଶରତ ଋତୁ ଦେହ ଧରି ନିଜେ ଚାଲି ଯାଇଛି ସେ ବାଟରେ ! ଆଉ ତା'ର ସହଜ ସରଳ ଚଳଣିରେ ଆଙ୍କି ଯାଇଛି ସେ ଛବି ତା' ନିଜ ତୂଳୀ ଚଳେଇ ! ଗାଇ ଉଠିଛି ତା' ନିଜ ମନର ରୂପ-ରସ-ଗନ୍ଧର ସଙ୍ଗୀତ !!

ଆଉ, କୋଳାହଳ... ହୋ ହଲ୍ଲା ! ସତେ ଯେମିତି ଦଦରା ନାଆଟି ସମୁଦ୍ରର ଗରଜି ଉଠୁଥିବା ବଡ଼ ବଡ଼ ଲହରୀରେ ଫିଙ୍ଗି ଫୋପାଡ଼ି ହୋଇ ଉଠୁଛି !!

''କଅଣ ହେଲା, କ'ଣ ହେଲା କିରେ, କୁନି ପୁଅ ??'' ମୁଁ ନିଜର ସେଇ ଆତୁର ଆବେଗଭରା ଆଳାପ ଯେପରି ପୁଣି ଶୁଣୁଚି !!

''କାହିଁକି ନା, ବିନା କାରଣରେ କିଏ ସବୁ ମୋର ଘର (ଗଡ଼) ଭାଙ୍ଗି ଦେଲା । କିଏ ସବୁ.... ।''

''ହେଇ... ହେଇ.... ସେଇଠିକି.... ଦେଖେ ତ ମୋର ସୁନା ପୁଅ ।''

ହେଇ, ସେମାନେ ଆସିଗଲେ । ଦୁଆର ମୁହଁରେ ଯୁବତୀ ଶିକ୍ଷୟିତ୍ରୀ ଠିଆ ହୋଇଛନ୍ତି । ନିଜସ୍ୱ ମନର ସ୍ପଷ୍ଟ ଅଭିବ୍ୟକ୍ତି ତାଙ୍କର, ନିଜସ୍ୱ ମୁଖଭଙ୍ଗୀ, ନିଜସ୍ୱ ଶୈଳୀ ଓ ସ୍ୱରରେ ବ୍ୟକ୍ତିତ୍ୱର ଛାପ । ଏକ ପରିପୂର୍ଣ୍ଣ ତଥା ସଂହତି-ସମ୍ପନ୍ନ ବ୍ୟକ୍ତିତ୍ୱ ନେଇ ସେ ଠିଆ ହୋଇଛନ୍ତି । ପାଦରେ ତାଙ୍କର ଚପଲ ରହିଛି ।

(ପିଲାଳିଆ ଅଶୁଦ୍ଧ ଇଂରାଜୀର ମାଓରି ଉଚ୍ଚାରଣ)

ସିଏ କହୁଛନ୍ତି: ଏବେ, ଯାହାର ଜୋତା ଅଛି, ସିଏ ଏଇଠି ଜୋତା ଖୋଲି ଦେଇ ରଖି ଦିଅ । ଯାଅ, ସମସ୍ତେ ଚୁପ୍‌ଚାପ୍ ଭିତରକୁ ଧୀରେ ଧୀରେ ଯାଅ । ଚଉକୀ ଆଉ ଟେବୁଲ ଘୁଞ୍ଚାଅ ନାହିଁ । ତମେମାନେ ଏ ଚଟାଣକୁ ଘଷରା କରି ଦେବ । ତମେ ସବୁ ତମର ମୁଣା ଆଉ ଜୋତାକୁ ଏଇ ବାଟେ ସେ ପିଣ୍ଡାକୁ ନିଅ । ରହ, ସେ ସବୁ କେଉଁଠି ରଖିବ, ମୁଁ ଦେଖେଇ ଦଉଚି ।

ନୂଆ ଷ୍ଟୋଭ୍ ପାଖରେ ମୁଁ ପଛେଇ ଠିଆ ହୋଇଚି । ସେମାନେ ଭିତରକୁ ଆସିବା ଦେଖୁଛି । ସେ ସମସ୍ତେ ନୂଆ, ଏବକାର ନୂଆ ଛୁଆ । ପ୍ରଧାନ ଶିକ୍ଷକ ମୋତେ ଏ କଥା କହି ନ ଥିଲେ । କେବଳ ଯେଉଁ ମାଓରି ପିଲେ ଆମଦାନୀ ହୋଇଥିବା ପୁସ୍ତକ ସବୁ ପଢ଼ି ପାରିଲେ ନାହିଁ, ସେଇମାନେ ଏ ଛୁଆଙ୍କ ମେଳରେ ଅଛନ୍ତି । କିନ୍ତୁ ପିଣ୍ଟ, ବ୍ଲୋଜମ୍, ବ୍ଲିଡ଼ିଂ ହାର୍ଟ ଆଉ ନୁକୁ, ଗଲେ କୁଆଡ଼େ ? ପିଲେ ଧାଡ଼ି ବାନ୍ଧି ଠିଆ ହେଉଛନ୍ତି : ମୁଁ ଦେଖୁଛି ! ପୁଷି ବିଲେଇ ଏବେ କେତେବେଳେ ଆସି ପହଞ୍ଚିବ । ହାଜିରା ଖାତାରେ ତ ତା' ନାଆଁ ଥିଲା । ଟାମାଟିର କୁକୁର କାହିଁ ? ଆଦର ଟିକିଏ ପାଇବା ପାଇଁ ସେ କ'ଣ ଆଉ କୁଆଡ଼େ ପଳେଇଚି ? ଆଉ ସେଇ ଜିଂଜର କୁକୁଡ଼ା.... ସିଏ ସ୍କୁଲ ଛାଡ଼ି ଗଲାଣି ବୋଲି ମୋତେ ଦୟାକରି କହନ୍ତୁ ନାହିଁ !! ଆଉ, ଏଇ ଆଧୁନିକ ଯୁଗର ନୂଆ ଛାତ ଦେଖି ସେଇ ଶାମୀ ଗେଣ୍ଡା କଅଣ ଭାବୁଥିବ କେଜାଣି ! ପିଲେ ଧାଡ଼ି ହେଇ ଚାଲିଲେ । ମୁଁ ସେମାନଙ୍କ ପଛେ ପଛେ ଚାଲିଲି । ପାଦରେ ମୋର ମୋଜା ଥାଏ । ଏଇ ଚଟାଣ ଗଢ଼ିଥିବା ସେଇ ଲୋକ.... କାଲି ଯିଏ ମୋତେ ଫୋନ୍ କରିଥିଲେ.... ଆମକୁ ନେଇ ଗର୍ବ ଅନୁଭବ କରୁଥିବେ ନିଶ୍ଚୟ !!

ଶ୍ରେଣୀ କୋଠରୀର ନିକଟରେ ଶିକ୍ଷୟିତ୍ରୀ ଛୋଟ ଛୋଟ ଚିତ୍ରଥିବା ପରିଚୟ ପତ୍ର ପିଲାଙ୍କ କୋଟ୍‌ରେ ଲଗେଇ ଦେଲେ । ମୁଁ ବିଶେଷ ଆତୁରତା ସହିତ ସେଗୁଡ଼ିକ ଦେଖିଲି । ମାଙ୍କଡ଼, ପହଁରୁଥିବା ବାଳକ, ନାନା ଜୀବଜନ୍ତୁ ଏବଂ ଗୋରା ଚମଡ଼ାର ପିଲା- ପିଲାଙ୍କ ପାଦରେ ଜୋତା, ସୁନ୍ଦର କେଶ ସଜ୍ଜା ଆଉ ଯତ୍ନର ସହିତ ଇସ୍ତ୍ରୀକରା

ପୋଷାକ । ମୁଁ ଉଦ୍‌ବେଗର ସହିତ ସେ ଚିତ୍ର ସବୁ ଭିତରେ ଖୋଜୁଥିଲି ମାଓରି ଗାଆଁ, ତାଙ୍କ ସଭା ଘର, ନାନୀ ବାର୍‌ହା ଆଉ ସେ ମାଟିଆ ପିଲାଙ୍କ ଖାଲି ପାଦ, କଳା ବାଳ... ।

ମୁଁ ନୀରବରେ ଆଗକୁ ଚାଲିଲି- ମୋହରି ଭୂତଠାରୁ ଆହୁରି ଧୀରେ ଧୀରେ ଶିଶୁ ଶ୍ରେଣୀର ଉପର ଶ୍ରେଣୀ କୋଠରୀକୁ-ସେଇଠି ଏବେ ଦି'ଜଣ ଶିକ୍ଷକ ଆଉ ଦରକାର ଅନୁସାରେ ଦୁଇଟି ଅଧିକ ବଖରା ।.... ଏଇଠି ମୁଁ ନିଶ୍ଚୟ ପାଇବି ମୋର ବର୍ଷେ ତଳର ପ୍ରିୟ ଟିକି ଟିକି ଛୁଆଙ୍କୁ ! ମୁଁ ଖୋଜିଲି । ସବୁ ବଡ଼ ବଡ଼ ! କିନ୍ତୁ କାହିଁ ? ସେମାନେ ଧାଇଁ ଆସୁନାହାନ୍ତି କାହିଁକି ମୋ ପାଖକୁ ? ମୋ ବେକକୁ ଭିଡ଼ି ଧରି କାହିଁ ଆଦରରେ ହାତ ଗୁଡ଼େଇ ପକାଉ ନାହାନ୍ତି ତ ! ମୋ ଟେବୁଲରୁ କଲମ, ରଙ୍ଗୀନ୍ ଚକ୍‌ଖଡ଼ି, ଆଦି ନେଇ ଯାଉନାହାନ୍ତି କାହିଁକି ? ୱାଇଓ୍ୱନୀର ଭାଇ ତ କାଇଁ କାନ୍ଦି କାନ୍ଦିକା ଅଳି କରୁନି କିଏ ସବୁ ତା' ଗଡ଼ ଅକାରଣରେ ଭାଙ୍ଗି ଦେଇଚି ବୋଲି ! କିଏ ସବୁ.... !! ପିଲାଏ ନୀରବରେ ଏକାଠି ଉଠି ଠିଆ ହେଲେ । 'ସୁପ୍ରଭାତ, ଶ୍ରୀମତୀ ହେଣ୍ଡରସନ୍ ।'

''ଆଉ, ଏବେ, ୱିକୀ !'' କିଶୋରୀ ଶିକ୍ଷୟିତ୍ରୀ ଜଣକ ବେଶ୍ ନରମ ସ୍ୱରରେ କହୁଛନ୍ତି, ''ତମେ ଆମକୁ ଏବେ ଦେଖେଇ ଦବଟି, କିପରି ତମେ ଚଟାଣରେ ଚଉକୀକୁ ନ ଘୋଷାରି ବସି ପାରୁଛ ।''

ସେଇ ଚିତ୍ର-ପଟକୁ ସେମାନେ କେଉଁଠି ରଖିବାକୁ ଯାଉଚନ୍ତି ? ମୁଁ ଛାନିଆ ହୋଇ ଦେଖୁଛି । ସେ ବାଲି କୁଆଡ଼େ ଗଲା ? ତା' ହେଲେ, ପାଣିକୁଣ୍ଡ ଧରି ପିଲେ ଭିତରକୁ ଆସିଲେ କିମିତି କଣ କରିବେ ? କିଶୋରୀ ଶିକ୍ଷୟିତ୍ରୀ ତ ପଦ-ତାଲିକାଗୁଡ଼ିକୁ ଆଗରୁ କାନ୍ଥରେ ଝୁଲାଇ ଦେଇଛନ୍ତି ! ଲେଖାଗୁଡ଼ିକ ଛପା ହେଇଚି, ଚମତ୍‌କାର ଭାବେ ସୁନ୍ଦର, ଅକ୍ଷର କ୍ରମରେ ସଜା ହେଇଚି- ଏଇ ଆମଦାନୀ ହୋଇଥିବା ପୁସ୍ତକରୁ ପଦସବୁ ଆସିଛି । ମୁଁ ଆତୁର ହୋଇ ସେ ଭିତରୁ ଖୋଜୁଛି: ''ପି' ଅକ୍ଷରରୁ ପା' ପଦ, (PରେPa') ବ୍ୟସ୍ତ ହୋଇ ପଢୁଛି ମୁଁ, ମନ ଭିତରେ ସେଇ ପଦଗୁଡ଼ିକ... ହେଲେ କାହିଁ ? ନାଇଁ ତ । 'ଏମ୍'ରେ ମିଟିଂ ହାଉସ୍' (ସଭାଘର).... ନା. ସେଇ ପଦ ନାଇଁ । ଏନ୍ ? ନାନ୍ନି (Nanny) ତ ନାଇଁ ' 'କେ'ରେ କିସ୍ (ଚୁମା), ଆଉ 'ଜି' ଅକ୍ଷରରେ ଘୋଷ୍ଟ (ଭୂତ) କାଇଁ ? ନା, ସେମାନଙ୍କ ତାଲିକାରେ ଭୂତ ନାହିଁ !! ଆମର ସେ ଭୂତ ଏଇଠି ନାହିଁ । ଭୂତ : ମାଓରି ମନରେ ବସା ବାନ୍ଧି ଯିଏ ରହି ଆସିଛି, ଆଉ

କେଉଁ କାଳରୁ ମାଓରି ଗାଆଁରୁ ମାଓରି ଦିଆଁ ଦେବତାର ପୂଜା ଥାନ ଯାଏଁ.... ସବୁଠି ଯିଏ ମାଓରି ମନକୁ ଜାବୁଡ଼ି ଧରି ତା'ର ଚଳଣି ଓ ଆବେଗରେ ମିଶି ରହିଛି.... କାହିଁ ? ନା, ଭୂତ ପଦ ନାହିଁ !... ଓ୍ୱାନ୍ ପିଣ୍ଟ୍ ଓ ବ୍ଲିଡ଼ିଂ ହାର୍ଟ୍ ତ ଏବେ ତାଙ୍କ ନିଜର ରଚନାତ୍ମକ ପଦ-ତାଲିକା ଲେଖି ଶିଖୁ ଥାଆନ୍ତେ । ତା' ହୋଇଥିଲେ, ସେମାନେ ଏବେ ପଢ଼ି ପାରୁଥାଆନ୍ତେ !! ହେଲେ, ଏ ସବୁ କେଡ଼େ ସଫା ଆଉ ସୁନ୍ଦର ଛପା ପଦ !! ଯାହାହେଉ.... !! ଆଉ ଯେତେ ଯେମିତି ଢାଞ୍ଚାରେ ପଢ଼େଇଲେ ବି ପିଲେ ଯେତିକି ଶିଖି ପାରିଥାଆନ୍ତେ, ତା'ଠାରୁ ତ ଏବେ ଢେର୍ ଢେର୍ ଭଲ ଭାବେ ଶିଖି ପାରିଛନ୍ତି !!

ନୀରବରେ ଧୀରେ ଧୀରେ ପାଦ ପକେଇ ବାହାରି ଆସିବା ଆଗରୁ ଶେଷଥର ପାଇଁ ସେଇ ଶିଶୁ ଶ୍ରେଣୀ ଉପରେ ଆଖି ବୁଲେଇ ଆଣିଲି । ଝୁଲେଇ ଥିବା ଛବି-ମଲାଟରୁ ଶିକ୍ଷୟିତ୍ରୀ ଜଣକ ଏବେ ବି ପିଲାଙ୍କୁ ପରିଚିତ କରେଇବାରେ ଲାଗିଛନ୍ତି । ଏବେ ଏଇଟା ହିଁ ଚାଲିଯିବା ସମୟ । ଝଲମଲ ହୋଇ ଝଟକୁଥିବା ଚଟାଣ ଆଡ଼କୁ ସେଇ ପୂରା କାନ୍ଥ ଆବରି ଗଢ଼ା ହୋଇଥିବା ଝରକାବାଟେ ଚାହିଁଲି- ଓ୍ୱାଲ୍‌ନଟ୍ (ଆଖ୍‌ରୁଟ୍) ଗଛ ପାରି ହୋଇ ଦେଖିଲି- ଯେଉଁଠି ପହିଲେ ଶିଶୁ ଶ୍ରେଣୀର ଘର ଥିଲା । ସତ କହିଲେ, ପ୍ରକୃତରେ ସେଇଟା ଆଉ ସେଇଠି ନାହିଁ । ସେଇଟା ଯାଇଛି- ସେଇଠି ଆଉ ତାର ଚିହ୍ନ ବର୍ଣ ନାହିଁ । ତଥାପି ସେଇ ରୁଅ ତିଆରି ମୋର ଜୀର୍ଣ ଶୀର୍ଣ ଦୁର୍ଗ- ଝରି ପଡୁଥିଲା ତା' ଉପରୁ ତରଳି ଯାଉଥିବା ତୁଷାର- ସୁରକ୍ଷିତ ରଖିଥିଲା ମୋର ସେଇ କୋଳାହଳରେ ଭରି ରଖିଥିବା ଟିକି ଟିକି ସାଥିମାନଙ୍କୁ- ଆଉ, ସେଇଠି ସ୍ୱତଃସ୍ଫୁର୍ତ୍ତ ଭାବରେ ଆତ୍ମ-ପ୍ରକାଶ କରି ଗଢ଼ି ଉଠିଥିଲା ମୋର ଅସଲି ରଚନାତ୍ମକ ପଦ-ତାଲିକା, ଯେମିତି ସେଇ ଟିକି ଟିକି ପିଲେ ନିଜ ନିଜକୁ ପ୍ରକାଶ କରୁଥିଲେ ସ୍ୱତଃସ୍ଫୁର୍ତ୍ତ ଭାବେ । ସେଇ ଦୁର୍ଗର ବିପଦସଙ୍କୁଳ କକ୍ଷ ପରେ କକ୍ଷ, ଗମ୍ଭୁଜ ପରେ ଗମ୍ଭୁଜ, ତା'ର ଦ୍ୱାର, ତୋରଣ ଆଉ ସିଡ଼ି- ସୁରକ୍ଷିତ ଥିଲା- ତୋପ ଦ୍ୱାରା ସୁରକ୍ଷିତ;- ଆଉ ଏବେ, ଆଧୁନିକ ଚହଟ ଚିକ୍‌କଣ ଝରକା ଦେଇ ମୁଁ ଦେଖୁଛି : କେବଳ ଘାସ ଆଉ ଘାସ, ତା' ମଝିରେ କିଛି ମାଟି, ଭୂଇଁ !!

ଛାତି ଭିତରୁ ମୁଁ କେବଳ ମୋର ଏକ ଐତିହାସିକ ଦୀର୍ଘଶ୍ୱାସ ଛାଡ଼ି ଫେରି ଆସୁଛି । ସବୁ ବେଶ୍ ସୁଛ ସୁନ୍ଦର, ନୀରବ, ନିସ୍ତବ୍ଧ । ଆଉ ସେଇ ଚଟାଣ । ମୁଁ ଚେଷ୍ଟା କରୁଛି କିଛି ନା କିଛି କହିବାକୁ । ଯେତେହେଲେ ବି ମୁଁ ପ୍ରଧାନ ଶିକ୍ଷକଙ୍କ ପତ୍ନୀ, ଆଉ

ଶିଶୁ ଶ୍ରେଣୀର ପୂର୍ବତନ ଶିକ୍ଷୟିତ୍ରୀ । ଟିକିଏ ଭାବନ୍ତୁ ତ, କ'ଣ ଆଉ କିପରି ଭଲା କିଛି ଉପଯୁକ୍ତ ଏବଂ ଉତ୍ସାହଦାୟକ ବିଷୟ ମୁଁ କହି ପାରିଥାନ୍ତି ! ଟିକି ପିଲାମାନେ ଏବେ ମଧ୍ୟ ତାଙ୍କର ଝୁଲୁଥିବା ଛବିଗୁଡ଼ିକୁ ଏପଟ ସେପଟ କରୁଛନ୍ତି, ତାଙ୍କର ସୁନ୍ଦର ଆଉ ପାରିବାର ଶିକ୍ଷୟିତ୍ରୀ ତାଙ୍କୁ କିଛି କହି ଚାଲିଛନ୍ତି । ମୁଁ ସତରେ କିଛି କହିବାକୁ ଚେଷ୍ଟା କରୁଛି । କିନ୍ତୁ ମୋ ଗଳା ଯେପରି ସେମିତି ଫୁଲି ଉଠୁଛି- ଯେମିତି ମାଟିଆ ମାଟିଆ ଆଖିଗୁଡ଼ାକୁ ଦେଖିଲେ କିଏ ସବୁ ଅକାରଣରେ ତାଙ୍କର ଦୁର୍ଗଗୁଡ଼ିକୁ ଭାଙ୍ଗି ଦେଇଛି, କିଏ ସବୁ । ଗଳାରୁଦ୍ଧ ହୋଇ ଯାଉଛି, ମୁଁ ତା'କୁ କାମ କରେଇ ପାରୁନି । ସେଇଥିପାଇଁ ମୁଁ ବାହୁଡ଼ି ଆସୁଛି, ଦୁଆର ଆଡ଼କୁ ଚାଲୁଛି, ଜୋତା ପିନ୍ଧୁଛି, ଆଉ ଫେରି ଆସୁଛି- ଓଦା ପଡ଼ିଆ ଦେଇ ଫେରୁଛି, ଚାରିପଟେ ରଙ୍ଗୀନ ଗଛ.... ଧ୍ୱଂସ ଲୀଳା ଭିତରେ ଶରତ ଋତୁର ବର୍ଣ ସମ୍ଭାର.... ସତେ ଯେମିତି ମୋର ଟିକି ଟିକି ପିଲାମାନେ ରଙ୍ଗରେ ରଙ୍ଗେଇ ଦେଇଛନ୍ତି !

ଘରେ ପହଞ୍ଚି ସବୁଦିନିଆ ଅଭ୍ୟାସ ଅନୁସାରେ ରୋଷେଇ ଘରକୁ ଯାଇ ବିଜୁଳି ଚୁଲି ଲଗେଇ ଦେଇଛି, ଆଉ ଅଜାଣତରେ ଦର୍ପଣ ଆଗକୁ ଯାଇ ମୁଣ୍ଡର ବାଳକୁ ଦେଖି ନେଉଛି- ସକାଳେ ଯଦିଓ ମୁଣ୍ଡ ଧୋଇଚି ! ପାଞ୍ଚ ବରଷିଆ ପିଲାମାନଙ୍କର ଶାରଦୀୟ ମୁଖ ମଣ୍ଡଳରୁ ଟୋପା ଟୋପା ଲୁହ ଝରି ପଡୁଛି !!

ସେଇଥିପାଇଁ ''କିଏ ସବୁ ଅକାରଣରେ ମୋ ଦୁର୍ଗ ଭାଙ୍ଗି ଦେଇଚି, କିଏ ସବୁ....''

*ତୁମର ସବୁ ଲୁହ ସେଥିରୁ ଗୋଟିଏ ପଦ ବି ଧୋଇ ଲିଭେଇ ପାରିବନି....*

# ମାନବିକ ପ୍ରୟୋଗଶାଳା

ଶିକ୍ଷା ଓ ବିଜ୍ଞାନ..... ଆଜିର ମଣିଷ ହାତରେ ଦୁଇଟି ବଳିଷ୍ଠ ଓ ଯାଦୁକାରୀ କାଉଁରି କାଠି । ଏହାର ପରଶରେ ମଣିଷ ପୃଥିବୀକୁ 'ସ୍ୱର୍ଗ' କରି ଦେଇପାରିବ । କିନ୍ତୁ ଏହି ଚାବିକାଠିକୁ ହାତରେ ଧରି ବି ସେ ଆଜି ଚିନ୍ତାରେ ବୁଡ଼ି ରହିଥିଲା ପରି ମନେ ହେଉଛି । ଏହାର କାରଣ କ'ଣ ? ଏହାର ସଦୁପଯୋଗର ଉପଯୋଗିତା ସେ ବୃହତ୍ ଅର୍ଥରେ ବୁଝିପାରିନାହିଁ । ଏ ଦିଗରେ ଆମ ସମାଜରେ ଯେଉଁ ଭାବ ଓ ରୁଚିର ଅଭାବ ରହିଛି, ତା' ହେଉଛି– *ମାନବିକତା* । ଆମେ ସମସ୍ତେ ଅନୁଭବ କରିଛେ ଯେ, ଜଣେ ମଣିଷର ମାନବିକ ବିଚାରଧାରା ଓ ଆଚରଣ ବି ତା' ଚାରିପାଖରେ ସ୍ୱର୍ଗୀୟ ସୁରଭି ଭରି ଦେଇପାରେ । ଅତଏବ, ଜଣେ ଜଣେ କରି ଅଧିକରୁ ଅଧିକ ସାଥି ଏହି ଭାବକୁ ଆପଣାଇଲେ, ସମାଜ ସଫଳ ହେବାକୁ ବାଧ ହେବ । ଏହି ବିଚାର ଓ ବିଶ୍ୱାସକୁ ପୁଞ୍ଜି କରି ମାନବିକ ପରିବାର ଗୋଟିଏ ତୁଳସୀ ଗଛ ପରି ଶିକ୍ଷା ଓ ବିଜ୍ଞାନର ଅସଲ ମହକକୁ ଖେଳାଇ ଚାଲିଛି ।

ଗଛଟି ଚେର ଧରିଛି ଓଡ଼ିଶାର କେନ୍ଦ୍ରସ୍ଥଳ-ଆଦିବାସୀଙ୍କ ଇଲାକା.... ଫୁଲବାଣୀର ମାଳଭୂମିରେ । ଏହାର ସ୍ରଷ୍ଟା ହେଉଛନ୍ତି ଅଜଣା, ଅଶୁଣା ଓ ନୀରବ ଭାବରେ ଶିକ୍ଷାର ବିକାଶରେ ଲାଗିଥିବା ଜଣେ ବିପ୍ଳବୀ *ଲୋକଶିକ୍ଷକ* ଓ ଏକ ଆଗ୍ରହୀ ସାଥିଦଳ । ତାଙ୍କ ପାଇଁ ଶିକ୍ଷା, ଶ୍ରେଣୀର ଚାରିକାନ୍ଥ ଭିତରେ ବା ଶୃଙ୍ଖଳା ଡିଗ୍ରୀରେ ଆବଦ୍ଧ ନୁହେଁ । ଏହା ହେଉଛି ମଣିଷ ତିଆରିର ଏକ କାଇଦା.... ଜୀବନକୁ ସରସ, ସୁନ୍ଦର ଓ ରଚନାତ୍ମକ କରିବାର ଏକ କଳା । ତା' ବି ପୁଣି ଶ୍ରେଣୀର କିଛି ପିଲାଙ୍କ ପାଇଁ ନହୋଇ ପୂରା ଇଲାକାଟିରେ ଅସଲ ଶିକ୍ଷା ଓ ବିଜ୍ଞାନର ଏକ ଉପଯୋଗୀ ପରିବେଶ ଗଢ଼ି ତୋଳିବା ଦିଗରେ ଉଦ୍ଦିଷ୍ଟ । ତାଙ୍କର କାମ ଭିତରେ ରହିଛି : ପ୍ରତ୍ୟେକ ଶିକ୍ଷାର୍ଥୀଙ୍କୁ ତାଙ୍କ ରୁଚି ଅନୁସାରେ ଫୁଟି ଉଠିବା ପାଇଁ ଆବଶ୍ୟକୀୟ ଉପାଦାନ ଯୋଗାଇଦେବା, ମାଗଣା ହୋମିଓପାଥି ଚିକିତ୍ସା ମାଧ୍ୟମରେ ଏକ ସାମାଜିକ ସହଯୋଗ ଓ ସମ୍ପର୍କ ବଢ଼ାଇବା, ସମାଜକୁ କଳୁଷିତ କରି ପକାଉଥିବା ରକ୍ଷଣଶୀଳତାର କଳଙ୍କ ବିରୁଦ୍ଧରେ ସ୍ୱର ଉଠାଇବା ଓ ଦଳବଳକୁ ବଢ଼ାଇବା, ଆଜିର ଶିକ୍ଷାର ମୂଳ ଶତ୍ରୁ ଟ୍ୟୁସନ୍ ଓ ଦୁର୍ନୀତିକୁ ବିରୋଧ କରିବା ଏବଂ ସର୍ବୋପରି ବିଜ୍ଞାନର ଅସଲଧାରାକୁ ପ୍ରସାର କରାଇବା ।

ଏହି ଧାରାରେ 'ମାନବିକ' ଏବେ ଶିକ୍ଷା, ସ୍ୱାସ୍ଥ୍ୟ ଓ ବିଜ୍ଞାନ କ୍ଷେତ୍ରରେ ଏକ *ଖୋଲା ପ୍ରୟୋଗଶାଳା* । ଏଥିରେ ରୁଚି ରଖୁଥିବା ଯେ କୌଣସି ସାଥି ଏହାର ବିଭିନ୍ନ କାର୍ଯ୍ୟକ୍ରମରେ ସକ୍ରିୟ ଭାବରେ ଭାଗ ନେଇପାରିବେ ।

